# କୁଆଁରୀ ପାଟଣା

KUAARI PATANA



ଲେଖକ

ଶ୍ରୀ କୋକିଳ ମେହେର

# KUAARI PATANA

Writen by : Sri Kokila Meher
Line Par, Patnagarh
Dist.- Bolangir (Orissa)
Ph. (06658) 222965

Publisher : Sri Murali Meher
Binka
Dist. - Sonepur (Orissa)
Ph. (06654) 283112

Printed by : Jayashree Printers, Bolangir

D.T.P. by : Suvam Grafics, Patnagarh

Rs. 45/- (Rupees Forty Five ) only

# କୁଆଁରୀ ପାଟଣା

ଲେଖକ : ଶ୍ରୀ କୋକିଳ ମେହେର
ଲାଇନ୍ ପଡ଼ା, ପାଟଣାଗଡ଼
ଜିଲ୍ଲା - ବଲାଙ୍ଗିର (ଓଡ଼ିଶା)
ଫୋ.- (୦୬୬୫୮) ୨୨୨୯୬୫

ପ୍ରକାଶକ : ଶ୍ରୀ ମୁରଲୀ ମେହେର
ବିନିକା
ଜିଲ୍ଲା - ସୁବର୍ଣ୍ଣପୁର
ଫୋ. - (୦୬୬୫୪) ୨୮୩୧୧୨

ଛାପା କାମ : ଜୟଶ୍ରୀ ପ୍ରିଣ୍ଟର୍ସ, ବଲାଙ୍ଗିର

କମ୍ପ୍ୟୁଟର କାମ : ଶୁଭମ୍ ଗ୍ରାଫିକ୍ସ, ପାଟଣାଗଡ଼

ମୂଲ୍ୟ : ଟ. ୪୫/- (ପଇଁଚଳିଶ ଟଙ୍କା) ମାତ୍ର

## ଲେଖକଙ୍କ କଲମରୁ .....

କୁଆଁରୀପାଟଣାର ମନଲୋଭା କାହାଣୀସବୁ ମୋର ସ୍ୱର୍ଗତ ପିତା (୰ ବାଞ୍ଛାନିଧି ମେହେର)ଙ୍କ ଠାରୁ ମୁଁ ଛୋଟ ଥିବା ବେଳେ ଶୁଣିଛି । ସେହି ବାଲ୍ୟାବସ୍ଥାରେ ପାଟଣାଗଡ଼ର ମାଟି ପୃଥିବୀର ଶ୍ରେଷ୍ଠ ବୋଲି ମନେକରି ସେହିପରି ଏକ ପବିତ୍ର ମାଟିରେ ମୁଁ ଜନ୍ମଲାଭ କରିଥିବା ହେତୁ ନିଜକୁ ଧନ୍ୟ ମନେ କରୁଥିଲି । ଏହି ସବୁ କିମ୍ବଦନ୍ତୀ ଓ ୰ ରାମଚନ୍ଦ୍ର ମଲ୍ଲିକଙ୍କର ପ୍ରଦତ୍ତ ଐତିହାସିକ ତଥ୍ୟକୁ ପିତାଙ୍କ ମୁଖରୁ ଶୁଣିଛି । କିନ୍ତୁ ବଡ଼ହେଲା ପରେ ସେହିସବୁ କିମ୍ବଦନ୍ତୀକୁ ମାନ୍ୟତା ଦେଲାପରି କୌଣସି ଆଧାର ପ୍ରଶ୍ନବାଚୀ ହୋଇ ରହିଲା ।

ତଥାପି ପିତାଙ୍କର ମହାନ ପ୍ରେରଣା ହିଁ ଦିନେ ମୋତେ ତୂଳୀ ଧରିବାରେ ଅଗେଇ ନେଲା ଏବଂ ମୁଁ "କୁଆଁରୀ ପାଟଣା"ର ଶିରୋନାମାରେ ଲେଖିବା ଆରମ୍ଭ କଲି । "କୁଆଁରୀ ପାଟଣା" ଲେଖିବାରେ "ସଇତାନ" ସାପ୍ତାହିକୀର ସଂପାଦକ ଶ୍ରୀଯୁକ୍ତ ପ୍ରହଲ୍ଲଦ ପାଢ଼ୀ ପ୍ରୋତ୍ସାହିତ କଲେ । ମୁଁ ଯାହାସବୁ ଲେଖିଗଲି ସେ ତାଙ୍କ "ସଇତାନ"ର ସୀମିତ ଗର୍ଭରେ ସ୍ଥାନ ଦେଇ ରହିଲେ । ମୋର ଲେଖାଟି ସମଗ୍ର "ସଇତାନ"ର ଏକ ଅଷ୍ଟମାଂଶ ସ୍ଥାନ ଅଧିକାର କରି ରହିଥିଲେ ମଧ ଶ୍ରୀଯୁକ୍ତ ପାଢ଼ୀ ଅକୁଣ୍ଠିତ ଚିତ୍ତରେ ସ୍ଥାନ ଦେଲେ । ପାଠକଙ୍କର ଆଦର ମଧ ମୋତେ ଉତ୍ସାହିତ କଲା । ମୁଁ ମୋର ଶିକ୍ଷକତାରୁ ଅବଶିଷ୍ଟ ସମୟକୁ "କୁଆଁରୀ ପାଟଣା"ର ଅନ୍ୱେଷଣରେ ବିନିଯୋଗ କରି ରହିଲି । ସଂଘଟିତ ଘଟଣାର ପ୍ରକୃଷ୍ଟ ସ୍ଥାନର ପ୍ରତ୍ୟକ୍ଷ ଭ୍ରମଣ ଓ ବିଭିନ୍ନ ବ୍ୟକ୍ତିବିଶେଷଙ୍କ ସହ ପରାମର୍ଶ କରିବାରେ ମୁଁ ଅନେକ ସମୟ ବିନିଯୋଗ କରୁଥିଲି । ଗୋଟିଏ ଗୋଟିଏ ଲେଖାପାଇଁ ମୋତେ ତିନିରୁ ଚାରିଦିନ ସମୟ ଦେବାକୁ ପଡୁଥିଲା ।

ତେଣୁ ଛୋଟ ବଡ଼ ସମସ୍ତଙ୍କୁ ମୁଁ ପଚାରିଲି, ସାଙ୍ଗହେଲି ଏବଂ ବନ୍ଧୁତା ରଖିଲି । ଅନେକ ମୋତେ ଏଥିପାଇଁ ବିପରୀତ ଓ ଆପତ୍ତିଜନକ ଟିକ୍ପା ଟିପ୍ପଣୀ ମଧ କଲେ । ପରଶ୍ରୀକାତର ବ୍ୟକ୍ତି ବିଶେଷ ଶିକ୍ଷିତ ବୋଲାଉଥିଲେ ମଧ ହୁତ ଐତିହାସିକତାର କିମ୍ବଦନ୍ତୀ ସମୁହକୁ ଏକତ୍ରିତ କଲାବେଳେ ମୋତେ କୁଆଁରୀପାଟଣାର ମାନ୍ୟତା ନାହିଁ ଏବଂ ଲେଖାବନ୍ଦକର ବୋଲି ସିଧାସଳଖ କଟୂ ମନ୍ତବ୍ୟ ସହ ମନା କଲେ । ଯଦି ସାଧାରଣ ପାଠକଙ୍କୁ ମୋର ତୂଳି ଆନନ୍ଦ ଦେଇ ସେମାନଙ୍କର ଜନ୍ମିତ ମାଟିର

ବିସ୍ମୃତିରୁ ସାଉଁଟି ପାରିଲା, ତେବେ ସେତେବେଳେ ନିଜକୁ ଭାଗ୍ୟବାନ ମନେକରିବା ସ୍ୱାଭାବିକ ନିଶ୍ଚୟ । ଏହି ସବୁଲେଖା ପାଇବାକୁ ସାଧାରଣ ପାଠକ ଯେତେବେଳେ ସାପ୍ତାହିକ "ସଇତାନ"କୁ ଆଗ୍ରହର ସହ ଅପେକ୍ଷା କରୁଥିଲେ, ମୋତେ ସେସବୁ ପ୍ରେରଣ ଦେଉଥିଲା ମଧ୍ୟ । ଯେଉଁସବୁ ବନ୍ଧୁ "କୁଆଁରୀ ପାଟଣା" ପଢ଼ି ଚିଠି ଦେଉଥିଲେ ଓ ଉତ୍ସାହିତ କରୁଥିଲେ, ସେମାନଙ୍କୁ ମୁଁ ଧନ୍ୟବାଦ ନ ଦେଇ ରହି ପାରୁନାହିଁ ।

ସେ ଯାହାହେଉ, ମୁଁ ସବୁକୁ ପଛେଇ ଦେଇ ଆଗେଇଲି ଏବଂ କି ଦିନ କି ରାତି ଅକଥନୀୟ ପରିଶ୍ରମରେ "କୁଆଁରୀ ପାଟଣା"ର କଳେବର ବୃଦ୍ଧି କରିଚାଲିଲା । ଶ୍ରୀଯୁକ୍ତ ଅଭିମନ୍ୟୁ ସିଂଦେଓଙ୍କର ସାହାଯ୍ୟ, ଶ୍ରୀଯୁକ୍ତ ଉଦୟନାଥ ଚନ୍ଦନଙ୍କ ପ୍ରୋତ୍ସାହନ, ଅଗ୍ରଜ ସମ ସର୍ବଶ୍ରୀ ନବୀନ କିଶୋର ସାହୁ, ଡଃ ପଞ୍ଚାନନ ମିଶ୍ର, ବିରଞ୍ଚି ନାରାୟଣ କୁଅଁର ରାମଚନ୍ଦ୍ର ଭୋଇ ଆଦିଙ୍କର ଶ୍ରଦ୍ଧା ଏବଂ ବନ୍ଧୁ ସର୍ବଶ୍ରୀ ଭୁବନେଶ୍ୱର ପଣ୍ଡା, ନଟବର ଥନାପତି, ମୀନକେତନ ସିଂହ ଆଦିଙ୍କର ସହଯୋଗ ଭୁଲିବାର ନୁହେଁ ।

ମୋର ସହଧର୍ମିଣୀ ଶ୍ରୀମତି ସୁପ୍ରଭା ମେହେରଙ୍କର ଲେଖନୀ ଚାଳନାରେ ଇଂଧନ ଯୋଗାଣ, ସାନଭାଇ ଶରତ, ପୁଅ ଅମ୍ବୁଜ ଓ ଝିଅ ରଶ୍ମିର ସହଯୋଗ ଅବିସ୍ମରଣୀୟ ନିଶ୍ଚୟ । "କୁଆଁରୀ ପାଟଣା"ର ପ୍ରକାଶକ ବିନିକା ନିବାସୀ ଶ୍ରୀ ମୂରଲୀ ମେହେରଙ୍କୁ ମୁଁ ସେଇଥି ପାଇଁ ଧନ୍ୟବାଦ ଦେବି ଯେ ସେ ଏହି ମାଟି (ଘୁମେର)ରେ ଜନ୍ମ ହୋଇ ନିଜ ମାଟିର ହୃତଗୌରବ ଉଦ୍ଧାରରେ ସହାୟକ ଦେବାପାଇଁ ପ୍ରକାଶନର ଦାୟିତ୍ୱ ନେଲେ ।

କୁଆଁରୀ ପାଟଣାର ଐତିହାସିକତା ଅନେକ ଦିନର ବାସିପଖାଳ ପରି ହୋଇଥିବାରୁ ବିସ୍ମୃତି ଗର୍ଭରେ ତାହା ବିଲୁପ୍ତପ୍ରାୟ ହୋଇ ସାରିଛି । କିମ୍ବଦନ୍ତୀ ଆକାରରେ ଯାହା ସବୁ ଅଛି, ସେହି ସବୁ ଅବଶିଷ୍ଟାଂଶର ମଧ ମାନ୍ୟତା ପ୍ରଶ୍ନବାଚୀ ପରିସରକୁ ଆସି ସାରିଛି । କାରଣ ଯେତେବେଳେ ଏହିସବୁ ଉପସ୍ଥାପନ କରିବା ଆବଶ୍ୟକ ଥିଲା, ସେତେବେଳେ ଏମାଟିର ସନ୍ତାନଙ୍କର ନିଦ୍ରାଭଙ୍ଗ ହୋଇ ନଥିଲା ।

ଶ୍ଳୀଳତା ଓ ଅଶ୍ଳୀଳତା ମଧରେ ବୌଦ୍ଧଯୁଗୀୟ ତନ୍ତ୍ରସାଧନା ଆତ୍ମକେନ୍ଦ୍ରୀକତା ଆଡ଼କୁ ଗତି କରୁଥିବାବେଳେ ଏହି ସବୁ ଘଟଣା ଘଟିଥିଲା ଏବଂ କୁଆଁରୀ ପାଟଣା ମଧ କିମ୍ବଦନ୍ତୀ ପରିସରକୁ ଟାଣି ହୋଇଥିଲା ପରି ମନେ ହୁଏ । କେଉଁ ରାମାୟଣ ଯୁଗରୁ ଶ୍ରୀରାମଚନ୍ଦ୍ରଙ୍କ ମାତା କୋଶଳ ନରେଶଙ୍କ କନ୍ୟା "କୌଶଲ୍ୟାଙ୍କ ବିବାହ"

କୁଆଁରୀ ପାଟଣା ପରିସର ଭୁକ୍ତ କାହିଁକି ହେଲା ତା'ର ଯୁକ୍ତାମ୍ଳଜ ଯୁକ୍ତ ତୂଳୀ ଆଖିରେ ଦିଶିଥିଲା ବେଳେ ପାପକ୍ଷୟ ଘାଟଠାରୁ ଆରମ୍ଭ କରି ଦୂର ଦୂରାନ୍ତରର କିମ୍ବଦନ୍ତୀ ପ୍ରସୁତ ଜନମୁଖ ଓ ତାଳପତ୍ର ଗର୍ଭସ୍ଥ କଥା ସବୁର ଉଦବୋଲ୍ଲାସକୁ ମଧ୍ୟ ଗର୍ଭଗତ କରିଛି ତାହା ଆନନ୍ଦର ବିଷୟ ଅଟେ । ସର୍ବପରି "ମହା କୋଶଳ"ରୁ ସ୍ଖଳିତ ଦକ୍ଷିଣ କୋଶଳର ଶେଷାଂଶ "କୋଶଳର ରାଜଧାନୀ କୁଶାବତୀ ନଗରୀରୁ ପତ୍ତନଗଡ଼କୁ ସ୍ଥାନାନ୍ତରିତ ହେବା ଓ ଚୌଷଠୀ ଯୋଗିନୀଙ୍କର ପ୍ରାୟ ସମୂଚ ମୂର୍ତ୍ତି ଉପବେଶନାବସ୍ଥାର ସାଧିକା ରୂପଠାରୁ ଆରମ୍ଭକରି ସ୍ୱର୍ଗତ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କର ଅମ୍ଳାନ ବ୍ୟକ୍ତିତ୍ୱ ପର୍ଯ୍ୟନ୍ତ ମୋର ତୂଳୀ କାଗଜରେ ଘସି ହୋଇ ଚାଲିଲା ବେଳକୁ ଅନେକ ବାଧା ବିଘ୍ନ ଆସିଛି ।

ତେବେ ସାହାଯ୍ୟ, ସହଯୋଗ, ପ୍ରୋତ୍ସାହନ, ପ୍ରେରଣା, ଆନ୍ତରିକତା ଏବଂ ସୌହାର୍ଦ୍ଦ୍ୟତା ଦେଇଥିବା ସମସ୍ତଙ୍କୁ ହୃଦୟର ଗଭୀରତମ ପ୍ରଦେଶରୁ ଧନ୍ୟବାଦ ଦେଉଛି ଏବଂ ଆଶା କରୁଛି ପାଠକଙ୍କୁ ଏହି ବିସ୍ମୃତଭାବ ବହନକାରୀ ପୁସ୍ତକ ଆନନ୍ଦଦାୟୀ ହେବ ।

**କୋକିଳ ମେହେର**

ପାଟଣାଗଡ଼

ସତପୁତ୍ରର ଜନନୀ ଶତାୟୁ ପ୍ରାୟା ମୋର ଗର୍ଭଧାରିଣୀ ମାତା

ଶ୍ରୀମତୀ ହେମମାଳା ମେହେରଙ୍କୁ

ତାଙ୍କ ଆଦରର "କୁଆଁରୀ ପାଟଣା" ଅର୍ପଣ କଲି ।

ପୁତ୍ର

କୋକିଳ

କୁଆଁରୀ ପାଟଣା "ସଇତାନ"ରେ ନିୟମିତ ପଢୁଥିଲି । ସବୁକୁ ମିଶାଇ ଏକ ପୁସ୍ତକ କରିଦେଲେ ଭଲ ହେବ ଭାବି ଦିନେ ମୁଁ ପ୍ରସ୍ତାବ ଦେଲି । ଶ୍ରୀଯୁକ୍ତ କୋକିଳ ମେହେର ମୋର ପ୍ରସ୍ତାବରେ ରାଜି ହେଲେ ଏବଂ ମୁଁ ପ୍ରକାଶକ ହେବାକୁ ପ୍ରତିଶ୍ରୁତି ଦେଲି ।

ପାଟଣାମାଟିର ଅତୀତରେ ଘଟିଯାଇଥିବା ଐତିହାସିକ କିମ୍ବଦନ୍ତୀର ମାନ୍ୟତା ଯାହା ଥାଉନା କାହିଁକି ପାଠକମାନେ କୁଆଁରୀ ପାଟଣାକୁ ଆଦରରେ ପଢ଼ି ମାନ୍ୟତା ଦେଇ ସାରିଛନ୍ତି । ପାଠକର ମାନ୍ୟତା ହିଁ ପରିପୂରକ ନିଶ୍ଚୟ । ତେଣୁ ଅତୀତର କିମ୍ବଦନ୍ତୀକୁ ପୁସ୍ତକ ଆକାରରେ ସାଇତି ରଖିବାକୁ ମୋର ଅଭିଳାଷ ସାର୍ଥକ ହେବ ।

ଅତୀତର ଇତିହାସ କିମ୍ବଦନ୍ତୀ ହୁଏ ସେତେବେଳେ ଯେତେବେଳେ କି ତା'ର ଲିଖିତ ସ୍ୱରୂପର ଅଭାବ ହୁଏ । ପୁଣି ତନ୍ତ୍ରପୀଠ ହେତୁ ଏଠାକାର ଲୋକଙ୍କର ସାହିତ୍ୟ ପ୍ରତି ସ୍ପୃହାର ସ୍ୱଳନ ହେବା ସ୍ୱାଭାବିକ ଅଟେ । ତେଣୁ ପାଟଣାଗଡ଼ ଲୋକଙ୍କର ଅନାଗ୍ରହ ଲେଖକଙ୍କୁ ନିରୁତ୍ସାହିତ କରୁଥିବାବେଳେ ମୁଁ ତାଙ୍କୁ ପ୍ରୋତ୍ସାହନ ଦେବା ପାଇଁ ଏବଂ କୋଶଳାଞ୍ଚଳରେ ସେମାନଙ୍କର ଅତୀତର ଦେବିପ୍ୟମାନ କର୍ମ ପ୍ରବଣତା କୁ ଇନ୍ଧନ ଯୋଗାଇବାକୁ ଏହି ପୁସ୍ତକର ଆବଶ୍ୟକତା ଉପଲବ୍ଧି କରି ପ୍ରକାଶ କରୁଛି ।

**ମୁରଲୀ ମେହେର**
ବିନିକା
ପ୍ରକାଶକ, କୁଆଁରୀ ପାଟଣା

**ସହାୟକ ପୁସ୍ତକ :**

୧. କୋଶଳ ଇତିହାସ - ୰ ରାମଚନ୍ଦ୍ର ମଲ୍ଲିକ
୨. ସେଠିଆ ଗୁରୁଙ୍କ ତାଳପତ୍ର ପୋଥୀ
୩. ୰ ବାଞ୍ଛାନିଧି ମେହେରଙ୍କର ବିଭିନ୍ନ ପାଣ୍ଡୁଲିପି

**ସହାୟକ ବ୍ୟକ୍ତି ବିଶେଷ :**

ଶ୍ରୀଯୁକ୍ତ ଉଦୟନାଥ ଚନ୍ଦନ, ଶ୍ରୀଯୁକ୍ତ ଅଭିମନ୍ୟୁ ସିଂହଦେଓ, ଶ୍ରୀଯୁକ୍ତ ନଟବର ଥାନାପତି, ଶ୍ରୀଯୁକ୍ତ ମୀନକେତନ ସିଂହ, ଶ୍ରୀଯୁକ୍ତ କଳାହାଣ୍ଡୁ ସାହୁ, ଶ୍ରୀଯୁକ୍ତ ଭୁବନେଶ୍ୱର ପଣ୍ଡା, ଶ୍ରୀଯୁକ୍ତ ଭାଗୀରଥି ପାତ୍ର

# ସୂଚୀପତ୍ର



# ମହାକୋଶଳ

ଭଗବାନ ରାମଙ୍କର ଶାସନକୁ ଭାରତର ସର୍ବୋତ୍କୃଷ୍ଟ ବୋଲି କୁହାଯାଇଛି । ପ୍ରଜାବତ୍ସଳ ବୋଲାଉଥିବା ପୁରୁଷୋତ୍ତମ ଶ୍ରୀରାମଙ୍କୁ ତାଙ୍କ ଅନୁଜମାନେ ପିତୃତୁଲ୍ୟ ଭକ୍ତି କରୁଥିବା କଥା ରାମାୟଣରେ କୁହାଯାଇଛି । ତାଙ୍କର ଶାସନକାଳ ମଧ୍ୟରେ ସେ ଅପ୍ରତିଦ୍ୱନ୍ଦୀ ଭାତୃତ୍ୱର ଅଧିକାରୀ ଥିଲେ - ବ୍ୟବହାରରେ ସମସ୍ତଙ୍କର ହୃଦୟକୁ ଜିଣିଥିଲେ । ସମଗ୍ର ପୃଥିବୀରେ ଜ୍ୟେଷ୍ଠ ପୁତ୍ରହିଁ ଶାସନ ଡୋରି ସମ୍ଭାଳିବା ବିଧି ବର୍ଣ୍ଣିତ ହୋଇଥିଲେ ମଧ୍ୟ ସେ ତାଙ୍କର ସମସ୍ତ ଭୂଖଣ୍ଡକୁ ଚାରିଭାଇଙ୍କ ଆଠ ଯମଜ ପୁତ୍ରଙ୍କ ମଧ୍ୟରେ ଭାଗ କରି ଦେବାର ଇଚ୍ଛା ପୋଷଣ କରିଥିଲେ ଓ ତାହା କୁଳଗୁରୁଙ୍କ ଦ୍ୱାରା ସ୍ୱୀକୃତ ହେଲା, କାର୍ଯ୍ୟକାରୀ ମଧ୍ୟ ହେଲା ।

ପ୍ରତ୍ୟୁଷରେ ରାମଚନ୍ଦ୍ର ସରଯୁ କୂଳରେ ସ୍ନାନସାରି ଉଦୟମାନ ସୂର୍ଯ୍ୟଙ୍କୁ ପ୍ରତୀକ୍ଷା କରିଥାନ୍ତି । ସୂର୍ଯ୍ୟ ନମସ୍କାର ପରେ ତାଙ୍କର ପ୍ରତିଦିନର କାର୍ଯ୍ୟକ୍ରମ ଆରମ୍ଭ ହେଉଥିବାରୁ ଅନ୍ୟମାନେ ତାହା ସ୍ୱାଭାବିକ ବୋଲି ମନେ କରିଥିଲେ । କିନ୍ତୁ ସେ ଅନ୍ୟ ସମସ୍ତ ଭାଇଙ୍କୁ ଡାକି ପାଖରେ ବସିବାକୁ ଇଙ୍ଗିତ ଦେଲେ । କୁଳଗୁରୁଙ୍କୁ ମଧ୍ୟ ପାଖରେ ବସିବାର ଅନୁରୋଧ ଥାଏ । ଇଚ୍ଛା କାର୍ଯ୍ୟକାରୀ ହେଲା ପରେ ରାମଚନ୍ଦ୍ର କୁଳଗୁରୁଙ୍କ ଉଦ୍ଦେଶ୍ୟରେ କହି ଉଠିଲେ - ଆମ ଚାରି ଭାଇଙ୍କର ଆଠ ପୁଅ । ପୈତୃକ ସଂପତ୍ତି ଉପରେ ଯେହେତୁ ଆମର ଭୋଗ କରିବାର ଅଧିକାର ଅଛି, ଭାଗ ନେବାର ଅଧିକାର ନାହିଁ । ଏହା ଆମର ନ ହୋଇ ଆମ ସନ୍ତାନ ମାନଙ୍କର ହେବା ବିଧେୟ । ତେଣୁ ମୋର ଶେଷ ଇଚ୍ଛା - ଆମ ଚାରି ଭାଇଙ୍କର ଆଠପୁତ୍ରଙ୍କ ମଧ୍ୟରେ ରାଜ୍ୟର ଆନୁପାତିକ ଭାଗ କରିବା ଦାୟୀତ୍ୱ ନିଅନ୍ତୁ । ଆପଣ ସମସ୍ତ ଆଠ ପୁଅଙ୍କ ମଧ୍ୟରେ ହିଁ ଅଯୋଧ୍ୟା ଭାଗ କରି ଦେବେ ।

ଶ୍ରୀରାମଙ୍କର ଇଚ୍ଛା କାର୍ଯ୍ୟକାରୀ ହେବାର ନିର୍ଭର ପ୍ରତିଶ୍ରୁତି କୁଳଗୁରୁ ଦେଲା ପରେ ଅନ୍ୟାନ୍ୟ ଆବଶ୍ୟକୀୟ ଗୁରୁତ୍ୱପୂର୍ଣ୍ଣ ନିର୍ଦ୍ଦେଶ ଦିଅନ୍ତି । କୁଳଗୁରୁ



ମନେ କରି ଏବଂ ରାଜାଙ୍କର ଗୁରୁ ହିସାବରେ ତାହା ହିଁ ତାଙ୍କର କର୍ତ୍ତବ୍ୟ ମନେ କରି ସଂପାଦନ କରିବାକୁ ନିଶ୍ଚିତ ପ୍ରତିଶ୍ରୁତି ଦେଲେ ଏବଂ ତାହା ତାଙ୍କର ପ୍ରଥମ କର୍ତ୍ତବ୍ୟ ବୋଲି କହିଲେ ।

ଶ୍ରୀରାମ ସମାଧିସ୍ଥ ହେଲେ, ମହାପ୍ରୟାଣ କଲେ । ବିଷ୍ଣୁ ସତ୍ତା ଭୂପୃଷ୍ଠରୁ ବୈକୁଣ୍ଠକୁ ପ୍ରତ୍ୟାବର୍ତ୍ତନ କଲା । ତ୍ରେତୟାର ମାନବ ଶରୀରରେ ଭଗବାନଙ୍କର ଆବିର୍ଭାବ ଲୋପ ହେଲା । କିନ୍ତୁ ଅପତ୍ୟଙ୍କ ମଧ୍ୟରେ ପୈତୃକ ସମ୍ପତ୍ତି ବିଭାଜନାରେ ଏକ ଆଦର୍ଶ ରହିଲା । ଭାଗବାନ ରାମଚନ୍ଦ୍ରଙ୍କର ନିରପେକ୍ଷ ବିଚାର ପ୍ରତିଫଳିତ ହେଲା । ତଦନୁଯାୟୀ -

ଶ୍ରୀରାମଙ୍କର ଦୁଇ ଯମଜ ପୁତ୍ରଙ୍କ ମଧ୍ୟରୁ ବଡ ପୁଅ ଲବଙ୍କ ଭାଗରେ ପଡିଲା ଉତ୍ତର କୋଶଳ-ସାକେତ (ଅଯୋଧ୍ୟା) ଏବଂ ସାନ ପୁଅ କୁଶଙ୍କ ଭାଗରେ ପଡିଲା ଦକ୍ଷିଣ କୋଶଳ ବା କାଶୀ କୋଶଳ । ଅର୍ଥାତ୍ ସମଗ୍ର କୋଶଳ ହିଁ ଭଗବାନ ରାମଚନ୍ଦ୍ରଙ୍କର ଦୁଇ ପୁଅଙ୍କ ଭାଗରେ ପଡିଥିଲା । ଉତ୍ତର କୋଶଳ ସାକେତକୁ କେନ୍ଦ୍ର କରିଥିଲା ବେଳେ ଦକ୍ଷିଣ କୋଶଳ ବା କାଶୀ କୋଶଳରେ ଛତିଶଗଡ, ମେକଲ, ମଧ୍ୟ ପ୍ରଦେଶ, ବେରାର ଆଦି ଅନ୍ତର୍ଭୁକ୍ତ ଥିଲା । ଲବଙ୍କ ରାଜ୍ୟର ରାଜଧାନୀ ଅଯୋଧ୍ୟା ହିଁ ରହିଲା ଏବଂ କୁଶଙ୍କର ରାଜଧାନୀ ତାଙ୍କ ନାମ ଅନୁସାରେ ଅର୍ଥାତ୍ କୁଶସ୍ଥଳୀ ନାମରେ ନାମିତ ହେଲା । କୁଶସ୍ଥଳୀ ପରବର୍ତ୍ତୀ ଦିନ ଗୁଡିକରେ କଅଁସିଲରେ ଅପଭ୍ରଂଶିତ ହେଲା । ଆଧୁନିକ କଅଁସିଲ, ରାଣୀପୁର ଝରିଆଲ, ବାହାବଲ, ବାଲଖମାର ଆଦି ସେହି ବିଶାଳ କୁଶସ୍ଥଳୀ ନଗରୀର ଏକ ଏକ ପଡା ମାତ୍ର । ପ୍ରତ୍ନତତ୍ତ୍ୱବିତ ମାନଙ୍କ ମତରେ ରାଣୀପୁର ଝରିଆଲ କୁ କେନ୍ଦ୍ରକରି ଥିବା ବିଶାଳ ସମତଳ ଭୂମିରେ ପୂର୍ବେ ଏକ ବିରାଟ ନଗରୀ ଥିଲା ଏବଂ ତାହାହିଁ କୁଶଙ୍କର ରାଜଧାନୀ କୁଶସ୍ଥଳୀ ଅଟେ ।

ଭରତଙ୍କର ଯମଜ ପୁତ୍ରଙ୍କ ମଧ୍ୟରୁ ବଡ ତକ୍ଷଙ୍କ ଭାଗରେ ଗାନ୍ଧାର ରାଜ୍ୟ ପଡିଥିଲା ଏବଂ ତାଙ୍କର ରାଜଧାନୀ ଥିଲା ତକ୍ଷଶିଳା । ଭରତଙ୍କର ସାନପୁଅ ପୁଷ୍କଙ୍କ ଭାଗରେ ପୁଷ୍କରାବତୀ ରାଜ୍ୟ ପଡିଥିଲା ଓ ରାଜଧାନୀ ନାମ ପୁଷ୍କରାବତୀ ହିଁ ଥିଲା ।



ଲକ୍ଷ୍ମଣଙ୍କ ଦୁଇ ଯମଜପୁତ୍ରଙ୍କ ମଧ୍ୟରୁ ଜ୍ୟେଷ୍ଠ ଅଙ୍ଗଦଙ୍କର ଭାଗରେ କାରୁଦ ରାଜ୍ୟ ପଡିଥିଲା, ଯାହାର ରାଜଧାନୀ ଅଙ୍ଗଦଙ୍କ ନାମାନୁଯାୟୀ ଅଙ୍ଗଦ ହିଁ ଥିଲା । ସାନପୁଅ ଚନ୍ଦ୍ରକେତୁର ଭାଗରେ ମଲ୍ଲ ରାଜ୍ୟ ପଡିଥାଏ ।

ସାନଭାଇ ଶତ୍ରୁଘ୍ନଙ୍କ ଦୁଇ ଯମଜ ପୁତ୍ରଙ୍କ ମଧ୍ୟରୁ ବଡ ଶତ୍ରୁଘାତିଙ୍କ ଭାଗର ବିଦିଶା ପଡିଥାଏ । ବିଦିଶାର ତାତ୍କାଳିକ ରାଜଧାନୀ ଭିଲସା ହିଁ ଥିଲା । କନିଷ୍ଠ ସୁବାହୁର ଭାଗରେ ମଥୁରା ରାଜ୍ୟ ପଡିଲା ଓ ରାଜଧାନୀ ମଥୁରା ହିଁ ଥିଲା ।

ଆଶ୍ଚର୍ଯ୍ୟ ଏତିକି ଯେ ଦଶରଥଙ୍କର ପ୍ରତ୍ୟେକ ପୁଅଙ୍କର ଦୁଇ ଦୁଇ ପୁଅ ଥିଲେ ଏବଂ ସେମାନେ ଯମଜ ହିଁ ଥିଲେ । ତେଣୁ ଭାଇ ମାନଙ୍କୁ ରାଜ୍ୟର ଭାଗ ନ ଦେଇ ସେମାନଙ୍କର ପୁଅ ମାନଙ୍କୁ ଆନୁପାତିକ ଭାଗ ଦେବା ଉଚିତ୍ ମନେ କରିଥିଲେ ସେ ।

ଚୀନ ପରିବ୍ରାଜକ ହୁଏନ୍‌ସାଂ ଭାରତର କୋଣ ଅନୁକୋଣରେ ବୁଲି ଥିବାର ଓ ଐତିହାସିକ ତଥ୍ୟ ସଂଗ୍ରହ କରିଥିବାର ଉଲ୍ଲେଖ ଅଛି । ତେଣୁ ପୁରାଣ ଅପେକ୍ଷା ହୁଏନ୍‌ସାଂଙ୍କ ବିବରଣୀକୁ ଅଧିକ ଐତିହାସିକ ମାନ୍ୟତା ମିଳିଥାଏ । ତାଙ୍କ ଅନୁସାରେ ଉତ୍ତରରେ ଉଜ୍ଜୟିନୀ ଠାରୁ ଦକ୍ଷିଣରେ ଆନ୍ଧ୍ର-କଳିଙ୍ଗ ପର୍ଯ୍ୟନ୍ତ ଏବଂ ପୂର୍ବରେ ଓଡିଶା ଠାରୁ ପଶ୍ଚିମରେ ମହାରଷ୍ଟ୍ର ପର୍ଯ୍ୟନ୍ତ ବିଶାଳ ଭୂଖଣ୍ଡକୁ ମହାକୋଶଳ କହୁଥିଲେ ।

କିନ୍ତୁ କୁଶଙ୍କର କୋଶଳର ରାଜଧାନୀ କୁଶସ୍ଥଳୀ ବା କଅଁସିଲ ବୋଲି ସ୍ୱୀକାର କରାଯିବା ସମୀଚନ ହେବ । ସେତେବେଳେ କଅଁସିଲର ଦୈର୍ଘ୍ୟ ୮ ମାଇଲ (୧୨ କି,ମି.) ଓ ପ୍ରସ୍ଥ ୮ ମାଇଲ ଥିଲା ବୋଲି ହୁଏନ୍‌ସାଂ ତାଙ୍କ ବିବରଣୀରେ ପ୍ରକାଶ କରିଛନ୍ତି । ଏହି ବିଶାଳ ନଗରୀଟି ୫ ଭଗରେ ବିଭକ୍ତ ଥାଏ ଯଥା - (୧) ରାଣୀପୁର - ଏଠାରେ ରାଣୀ ମାନଙ୍କର ଅନ୍ତଃପୁର ଥିଲା, (୨) ଝରିଏଲ - ଏଠାରେ ପାଣି ଝରୁଥିଲା ଓ ରାଜା ରାଣୀ ଆଦି ସମସ୍ତ ରାଜପରିବାର ସ୍ନାନ କରୁଥିଲେ, (୩) କଅଁସିଲ - ରାଜ ପ୍ରସାଦ ଏହିଠାରେ ଥିଲା, (୪) ବାଲ ଖମାର - ଏଠାରେ ରାଜାଙ୍କର ଖମାର ବା ଧନ ଭଣ୍ଡାର ଥିଲା, (୫) ବାହବଲ - ଏଠାରେ ରାଜାଙ୍କର ବାହୁବଳ ବା ସୈନ୍ୟ ବିଭାଗର କର୍ମଚରୀ ରହୁଥିଲେ ।



କିନ୍ତୁ ପରବର୍ତ୍ତୀ ସମୟରେ କନ୍ଧ ଅଧ୍ୟୁଷିତ ଏହି କୁଶସ୍ଥଳୀରୁ ପାଟଣାଗଡକୁ ବାଧ ହୋଇ ରାଜଧାନୀ ପରିବର୍ତ୍ତନ କରିଥିଲେ । କୁହାଯାଏ - ଏହି ରାଜା କନ୍ଧଙ୍କ ଦେବତା ଡୋମଙ୍କର ପୂଜା ନ କରି ଶିବଙ୍କର ପୂଜା କଲେ ବୋଲି ସେମାନେ ମିଳିତ ଭାବେ ଶିବଲିଙ୍ଗ ମାନଙ୍କରେ ଗୋମାଂସ ରଖି ଦେଲେ ଏବଂ ରାଜା ତାଙ୍କର ରାଜଧାନୀ ପରିବର୍ତ୍ତନ କରିବାକୁ ବାଧ ହୋଇଥିଲେ । ରାଜଧାନୀ ପରିବର୍ତ୍ତନ ହେତୁ ଏହି ବିଶାଳ କୁଶସ୍ଥଳୀ ନଗରଟି କେନ୍ଦ୍ରାଞ୍ଚଳରୁ ଉଜୁଡି ପଡିଲା । ଶେଷରେ ପୂର୍ବୋକ୍ତ ପାଞ୍ଚ ପଡା ହିଁ ରହିଗଲା ଯାହାକି ଆଜିର ପୁର୍ବୋକ୍ତ ପାଞ୍ଚ ଗ୍ରାମ ଅଟେ ।

ଅଶୋକଙ୍କ ରାଜତ୍ୱ ସମୟରେ କୋଶଳାଞ୍ଚଳ ମଧ ତାଙ୍କର ଶାସନାଧୀନ ହେଲା । ସେ ସମଗ୍ର ରାଜ୍ୟ କୁ ସୁଶାସନ ଦେବା ପାଇଁ ୫ ଭାଗରେ ବିଭକ୍ତ କଲେ । ଯଥା - ମଗଧ, ତକ୍ଷଶିଳା, ରାଜପୁତନା, କୋଶଳ ଏବଂ ବିଦିଶା । ମଗଧରେ କେନ୍ଦ୍ରୀୟ ରାଜଧାନୀ ସ୍ଥାପନ କଲେ ଏବଂ ସେ ନିଜେ ଏହାର ରାଜା ହୋଇ ରହିଲେ । ପଶ୍ଚିମସ୍ଥ ତକ୍ଷଶିଳା ରେ ପଞ୍ଜାବ, କାଶ୍ମୀର, ଆଫଗାନିସ୍ଥାନ, କାନ୍ଦାହାର, ବେଲୁଚିସ୍ଥାନ ଓ ସିନ୍ଧୁ ରହିଥିବା ବେଳେ ରାଜଧାନୀ ତକ୍ଷଶିଳାରେ ହିଁ ରହିଥିଲା । କେନ୍ଦ୍ରସ୍ଥ ରାଜପୁତୁନା ଅଧିନରେ ଗୁଜୁରାଟ, ମାଳବ କାଠିଆବାଡ ରହି ଅଶୋକଙ୍କର ଜଣେ ଭଣଜାଙ୍କୁ ଏହାର ଶାସନାଧକ୍ଷ କଲେ । ପୂର୍ବସ୍ଥ କୋଶଳ ଅଧିନରେ କଳିଙ୍ଗ, ଉତ୍କଳ ଏବଂ ତୋଶଳ ରହିଲା ଏବଂ ଏହାର ରାଜଧାନୀ କୁଶସ୍ଥଳୀରେ ରହିଲା । ବିଦିଶା ଅନ୍ୟ ଏକ ରାଜ୍ୟ ରହି ସୁଶାସନ ଦେବାକୁ ଚେଷ୍ଟା କରାଗଲା ।

ତେବେ କହିବାର ତାତ୍ପର୍ଯ୍ୟ ହେଲା ଯେ ଅଶୋକଙ୍କ ଅମଳରେ ମଧ କୋଶଳର ଆଧିପତ୍ୟ ଓ ଗୁରୁତ୍ୱ କମ୍ ନଥିଲା । ଏହାର ଅଧିନରେ କଳିଙ୍ଗ ଓ ତୋଶଳ ଥିଲା ଯାହାକି କୋଶଳର ଗୁରୁତ୍ୱକୁ ସ୍ୱୀକାର କରୁଥିଲା ।

କିନ୍ତୁ ମହାକୋଶଳରେ ଉତ୍ତର କୋଶଳ ସମେତ ମଧ ପ୍ରଦେଶ, ବେରାରର ଗଣ୍ଡୱାନା( ଛତିସ ଗଡ), ପାଟଣା, ମେକେଲ (ସୁରଗୁଜା) ଥିଲା ଓ ଏହି ସମସ୍ତ ଅଞ୍ଚଳକୁ କାଶୀ କୋଶଳ କହୁଥିଲେ । ଏଥିରେ କଳିଙ୍ଗ ଓ ଉତ୍କଳ ସମ୍ମିଶ୍ରିତ



ନ ଥିଲା  କିନ୍ତୁ ତୋଶଳ ମିଶି ଥିଲା । ପରବର୍ତ୍ତୀ ସମୟରେ ଉତ୍କଳ ଓ କଳିଙ୍ଗ ମିଶିଲେ । ଅଶୋକଙ୍କ ରାଜତ୍ୱ ଅମଳରେ କୋଶଳ, କଳିଙ୍ଗ, ତୋଶଳ ଓ ଉତ୍କଳକୁ ପୂର୍ବଖଣ୍ଡ କହୁଥିଲେ ।

ତେଣୁ ଉନ୍ନତିର ଚରମ ସୀମାରେ ପହଞ୍ଚି ପାରିଥିବା ଏହି କୋଶଳ କୌଣସି କାରଣରୁ ଉଜୁଡିଯାଇ ଘଞ୍ଚ ଜଙ୍ଗଲରେ ପରିଣତ ହେଲା । ଅଶୋକଙ୍କ ଅମଳରେ ପାଟଣାରେ କୋଶଳର ରାଜଧାନୀ ନ ଥିଲା - କୁଶସ୍ଥଳୀରେ ହିଁ ଥିଲା ।

ତେଣୁ ରାମଚନ୍ଦ୍ରଙ୍କ ପୁତ୍ର କୁଶଙ୍କ ଅମଳରୁ ହେଉ କି ହୁଏନ୍‌ସାଂଙ୍କ ପରିଭ୍ରମଣ ସମୟରୁ ହେଉ କିମ୍ୱା ଅଶୋକଙ୍କ ଅମଳରୁ ହେଉ କି ଚୌହାନ ରାଜା ରମାଇ ଦେଓଙ୍କ ଅମଳରୁ ହେଉ ପାଟଣାଗଡ ଦିନେ କୋଶଳର ରାଜଧାନୀ ଥିଲା ଓ ଉନ୍ନତିର ଚରମ ସୀମାରେ ପହଞ୍ଚି ଥିଲା - ଏଥିରେ ସନ୍ଦେହର ଅବକାଶ ନାହିଁ । ମହାକୋଶଳର ଆତ୍ମା ଏହି ପାଟଣାଗଡଠାରେ ହିଁ ବିଦ୍ୟମାନ ଥିଲା ବୋଲି କହିଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ ।





# କୌଶଲ୍ୟା ବିବାହ

ରାମାୟଣର ଉପାଖ୍ୟାନ ହିନ୍ଦୁ ହୃଦୟକୁ ସମ୍ମୋହନୀ ଶକ୍ତି ଦେଇ ଆସିଛି । କେଉଁ ତ୍ରେତୟା ଯୁଗରୁ ମର୍ଯ୍ୟାଦା ପରୁଷୋତ୍ତମ ରାମଚନ୍ଦ୍ରଙ୍କର ଜୀବନୀ ଗାଥାକୁ ପ୍ରତ୍ୟେକ ହିନ୍ଦୁ ଆଦର୍ଶ ଚରିତ୍ରିକ ଆଧାର ମନେକରି ଆସିଛି ଓ ତାକୁ ଅନୁସରଣ କରି ଆସିଛି କେ ଜାଣେ ! ତେଣୁ ମର୍ଯ୍ୟଦା ବନ୍ତ ପୁରୁଷଶ୍ରେଷ୍ଠ ଭଗବାନ ରାମଚନ୍ଦ୍ରଙ୍କୁ ଯେଉଁ ମାତା ଜନ୍ମ ଦେଇଛି ଓ ସେହି ମାଆକୁ ଯେଁଉ ମାଟି ଜନ୍ମଦେଲା ତାହାରି ଗାଥାକୁ ଶୁଣିବାକୁ ଭାରତୀୟ ପ୍ରାଣ ବ୍ୟାକୁଳ ନିଶ୍ଚୟ । ଆସନ୍ତୁ, ସେହି ରାମଜନନୀ କୌଶଲ୍ୟାଙ୍କ ବିବାହ କାହାଣୀ ସଂକ୍ଷେପରେ ଶୁଣିବା ।

କୌଶଲ୍ୟା କୋଶଳ ଦେଶର ରାଜ ନନ୍ଦିନୀ ଥିଲେ । କୋଶଳ ନରେଶ ଏକ ମାତ୍ର କନ୍ୟାଙ୍କର ସ୍ୱୟମ୍ବର ସଭାର ଆୟୋଜନ କଲେ । ସମଗ୍ର ଭାରତ ବର୍ଷର ସମସ୍ତ ରାଜନ୍ୟବର୍ଗ, ସମ୍ରାଟ, ଦେବ ଓ ଅସୁର ନିମନ୍ତ୍ରିତ ଅତିଥି ଥିଲେ । ଆତିଥ୍ୟରେ ଅବହେଳା ର ଅବକାଶ ନ ଥିଲା । କୋଶଳ ନରେଶ ବ୍ୟକ୍ତିଗତ ଭାବେ ଆତିଥ୍ୟର ଖବର ବୁଝୁଥିଲେ । ଅଗଣିତ ଦାସ-ଦାସୀ ଏହି କାମରେ ନିୟୋଜିତ ଥିଲେ ।

ସ୍ୱୟମ୍ବର ସମୟ ଆଗତ ପ୍ରାୟ ହେଲା । ଅଶାୟୀମାନେ ବର ବେଶରେ ସଭା ମଧ୍ୟରେ ନିଜପାଇଁ ଉଦ୍ଦିଷ୍ଟ ଆସନ ରେ ସଭାସ୍ଥଳକୁ ମଣ୍ଡନ କଲେ । ନରେଶଙ୍କ ମଧ୍ୟରେ ଅଯୋଧ୍ୟା ନରେଶ ଦଶରଥ ଓ ରାକ୍ଷସଙ୍କ ମଧ୍ୟରେ ଲଙ୍କାର ରାଜା ରାବଣ ଆକର୍ଷଣର କେନ୍ଦ୍ର ବିନ୍ଦୁ ଥିଲେ । ଦେବଗଣ ମଧ୍ୟ ଉପସ୍ଥିତ ଥିଲେ । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର, ନାରଦଙ୍କ ସହ ଶୂନ୍ୟରେ ଥାଇ ସ୍ୱୟମ୍ବର ଶୋଭାକୁ ଉପଭୋଗ କରୁଥିଲେ । ବିଧାତା ବିଧିର ବିଧାନ ହିସାବ ନିକାଶ କରୁଥିଲେ ।

ଯଥା ସମୟରେ କୌଶଲ୍ୟା ଦାସୀ ଗହଣରେ ବରମାଲ୍ୟ ସହ ସଭା ମଧ୍ୟରେ ପ୍ରବେଶ କଲେ । ତାଙ୍କର ଚକ୍ଷୁ ଦେବ ଗଣରୁ ଓହ୍ଲାଇ ଆସି ମାନବ ମଧ୍ୟରେ ବିଚରଣ କଲାବେଳେ ଅଯୋଧ୍ୟା ର ଯୁବ ନରେଶ ଙ୍କ ଠାରେ ସାମାନ୍ୟ ଅଟକିଗଲା



ଓ ପୁଣି ରାକ୍ଷସ ମଣ୍ଡଳୀ ଉପରେ ବୁଲି ଆସିଲା । ସେ ମନେ ମନେ କାହାକୁ ପତିରୂପେ ବରଣ କରି ତାଙ୍କ ଜୀବନର ସଂଗିନୀ ହେବେ ତାହାହିଁ କଳନା କରୁଥିଲେ ।

ହଠାତ୍ ପୁଣି ତାଙ୍କ ଚକ୍ଷୁ ନିବଦ୍ଧ ହେଲା ଦଶରଥଙ୍କ ଉପରେ । ଘଟୁକାର ଦାସୀ ମୁହଁରୁ ଦଶରଥଙ୍କର ବଳବୀର୍ଯ୍ୟର ଗୁଣାବଳୀ ବର୍ଣ୍ଣନା ତ ଆଗରୁ ଶୁଣିଥିଲେ । ହୃଦ୍‌ସ୍ପନ୍ଦନ ସ୍ୱତଃ ଦ୍ୱିଗୁଣିତ ହେଲା । ଧିରେ ଧିରେ ତାଙ୍କ ଅଜାଣତରେ ସେ ଚାଲିବାକୁ ଆରମ୍ଭ କଲେ । ମନ, ବୁଦ୍ଧି ଓ ବିବେକ ନିରପେକ୍ଷ ଥିଲେ ସେତେବେଳେ । କୌଶଲ୍ୟା ବିଧି ନିର୍ଦ୍ଦେଶରେ ଚାଲୁଥିଲେ ମଧ୍ୟ କିଛି ଉପଲବ୍ଧି କରିପାରୁ ନଥିଲେ; ନିରୁପାୟ ଥିଲେ । ସେ ନିୟତି ଆୟତ୍ତାଧିନ ଥିଲେ । ଶେଷରେ କୋଶଲ୍ୟା ପହଞ୍ଚିଲେ ଅଯୋଧ୍ୟା ନରେଶ ଦଶରଥଙ୍କ ନିକଟରେ । ବରଣମାଳା ଦେବାକୁ ଉଦ୍ୟତ ହେଲାରୁ ଦେବ ଗଣ ପୁଷ୍ପ ବର୍ଷଣ କଲେ ।

କିନ୍ତୁ ରାକ୍ଷସରାଜାରାବଣର ହଠାତ୍ ବିପ୍ଳବାତ୍ମକ ଧ୍ୱନୀରେ ସଭା ପ୍ରକମ୍ପିତ ହେଲା । ଅନ୍ୟ ରାକ୍ଷସ ବୃନ୍ଦ ମଧ୍ୟ ରାବଣକୁ ସମର୍ଥନ କଲେ । ରାବଣ ସଭା ମଧ୍ୟକୁ ଲମ୍ଫ ପ୍ରଦାନ କଲା ଏବଂ କୌଶଲ୍ୟାକୁ ବିବାହ ସେ ହିଁ କରିବ ବୋଲି ଦମ୍ଭୋକ୍ତିରେ ଆସ୍ଫାଳନ କଲା । ରାବଣର ଏତାଦୃଶ ଆନ୍ଦୋଳନାତ୍ମକ ଧ୍ୱନୀ ସହ ବିତସ୍ପୃହ କେତେକ ନରେଶ ମଧ୍ୟ ସ୍ୱର ମିଳାଇଲେ । ଉର୍ଦ୍ଧ୍ୱରେ ଉପଭୋଗ କରୁଥିବା ଦେବଗଣ ଚିନ୍ତିତ ହୋଇ ପଡିଲେ ଓ ବିଧାତାଙ୍କ ଆଡକୁ ପ୍ରଶ୍ନବାଚୀ ଦୃଷ୍ଟିରେ ମୌନ ନିବେଦନ କଲେ ।

ହଠାତ୍ ବ୍ରହ୍ମା ସ୍ୱୟମ୍ବର ସଭାରେ ଉପସ୍ଥିତ ହୋଇ ରାବଣକୁ ବୁଝାଇବାରେ ଲାଗିଲେ। ବିଧାତାଙ୍କ ଚେଷ୍ଟା ନିଷ୍ଫଳ ହେଲା । ରାବଣ ବ୍ରହ୍ମାଙ୍କର କୌଣସି କଥା ଶୁଣିବାକୁ ପ୍ରସ୍ତୁତ ନଥିଲା । ସେ ବଳପୂର୍ବକ କୌଶଲ୍ୟାକୁ ସଭା ମଧ୍ୟରୁ ଉଠାଇ ନେବାର ଧମକ ଦେଲା ।

ବିଧାତା ସୃଷ୍ଟିର ବିଧାନର କଥା ରାବଣକୁ କହିଲେ – ରାବଣ ! ଦଶରଥ ସହ କୈଶଲ୍ୟା ର ବିବାହ ବିଧିସମ୍ମତ ଅଟେ । ଦଶରଥଙ୍କ ପାଇଁ କୌଶଲ୍ୟା ବିଧାନ ଅଟେ । ବିଧାନ ଉପରେ କାହାରି କର୍ତ୍ତୃତ୍ୱ ନାହିଁ । ଏଣୁ ଦଶରଥହିଁ



କୌଶଲ୍ୟାଙ୍କୁ ବିବାହ କରିବେ ଏବଂ କୌଶଲ୍ୟାଙ୍କର ଗର୍ଭରୁ ହିଁ.ରାମ ଅବତାର ନେବେ-ସୃଷ୍ଟିର ସଂରକ୍ଷଣ କରିବେ ।

ତଥାପି ରାବଣ ନିଜ ଜିଦ୍‌ରେ ଅଟଳ ରହି କୌଶଲ୍ୟାଙ୍କୁ ବିବାହ କରିବାକୁ ଅଡ଼ି ବସିଲା ଓ ତାଗିଦ୍ ମଧ୍ୟ କଲେ । ଫଳରେ ବ୍ରହ୍ମାଙ୍କ ମୁହଁରୁ ସ୍ୱତଃ ବାହାରି ଆସିଲା, "ରାବଣ ! ଯଦି ତୁ ବିଧାନକୁ ଅସ୍ୱୀକାର କରୁ, ତେବେ କୌଶଲ୍ୟା ଓ ଦଶରଥଙ୍କର ବିବାହ ଏହି ମୁହୂର୍ତ୍ତରେ ହେବ, ଏହି ମୁହୂର୍ତ୍ତରେ ରାମ ଜନ୍ମ ନେବେ ଓ ତୋତେ ମାରିବେ । ଯେହେତୁ ରାବଣକୁ ରାମହିଁ ମାରିବାରେ ବିଧିର ବିଧାନ, ତେଣୁ କୌଶଲ୍ୟାକୁ ଦଶରଥହିଁ ବିବାହ କରିବେ, ରାବଣ ନୁହେଁ ।"

ବିଧିବାଣୀରେ ରାବଣର ମନରେ ଭୟ ସଞ୍ଚାର ହେଲା । ସେ ସଭାଛାଡି ପଳାୟନ କଲା । ଦଶରଥଙ୍କ ଗଳାରେ କୌଶଲ୍ୟା ବରମାଲ୍ୟ ଦେଲେ । ବିବାହ କାର୍ଯ୍ୟ ଯଥାରୀତି ଯଥା ସମୟରେ ସଂପନ୍ନ ହେଲା । ଦେବ ଗଣ ପୁଷ୍ପବୃଷ୍ଟି କଲେ । ତ୍ରିଦେବ ଆଶୀର୍ବାଦ ଦେଇ ଚାଲିଗଲେ ।

ବିବାହ ପରେ କୋଶଳ ନରେଶ ବରକନ୍ୟାଙ୍କୁ ବିଦା କଲେ । କିନ୍ତୁ ଦଶରଥ କୌଶଲ୍ୟା ସହ ସସୈନ୍ୟ ଅଯୋଧ୍ୟା ଫେରିବା ବେଳେ ବାଟରେ ରାବଣ ତା'ର ଦୁଷ୍ଟ ପ୍ରବୃତ୍ତି ଚରିତାର୍ଥ କରିଛି - ରାକ୍ଷସ ସୁଲଭ ଗୁଣରେ । ରାବଣ ଅତର୍କିତ ଆକ୍ରମଣ କରି ବନ୍ଦୀକଲା ଉଭୟ ପତିପତ୍ନୀଙ୍କୁ । ଉଭୟ ଦଶରଥ ଓ କୌଶଲ୍ୟାଙ୍କୁ ସ୍ୱତନ୍ତ୍ର ମଞ୍ଜୁଷାରେ ପୁରାଇ ଦଶରଥଙ୍କୁ ମହାନଦୀ ଓ କୌଶଲ୍ୟାଙ୍କୁ ତେଲନଦୀର ଖର ସ୍ରୋତରେ ଭସାଇ ବିଧିର ବିଧାନକୁ ତାଚ୍ଛଲ୍ୟ ମନୋଭାବରେ ଆହ୍ୱାନ କଲା । ଅନ୍ୟ ସୈନ୍ୟକୁଳ ସମସ୍ତଙ୍କୁ ରାବଣର ଶରଘାତେ ମୃତ୍ୟୁବରଣ କରିବାକୁ ପଡିଥିବାରୁ ସେମାନେ ଏ ଦୃଶ୍ୟ ଦେଖି ଖବର ଦେବାକୁ ଆଉ କେହିଁ ରହିଲେ ନାହିଁ ।

ତଥାପି ବିଧାତାଙ୍କ ବିଧାନ ତା'ର ଗତିରେ ଆଗେଇଲା । ଦଶରଥ ଓ କୌଶଲ୍ୟାଙ୍କ ମଞ୍ଜୁଷା ଭାସି ଭାସି ଆସିଲେ ଉଭୟ ନଦୀରେ ସୁବର୍ଣ୍ଣମେରୁ ମହାଦେବ ସ୍ଥଳ ପର୍ଯ୍ୟନ୍ତ । ସୁବର୍ଣ୍ଣମେରୁ ମହାଦେବ (ସୁବର୍ଣ୍ଣପୁର) ଠାରେ ଉଭୟ ମହାନଦୀ ଓ ତେଲନଦୀର ମିଳନ ସ୍ଥଳରେ ଦଶରଥ ଓ କୌଶଲ୍ୟାଙ୍କର ମଞ୍ଜୁଷା



ମିଳିତ ହେଲା । ସେମାନେ ଦୈବଶକ୍ତି ବଳରେ ମଞ୍ଜୁଷାରୁ ମୁକୁଳି ଅଯୋଧାରେ ପ୍ରବେଶ କଲେ । ତେଣୁ ସମସ୍ତ ଶକ୍ତିର ଉର୍ଦ୍ଧ୍ୱରେ ଥିବା ଦୈବଶକ୍ତି ନିକଟରେ ପାର୍ଥିବ ଆସୁରୀ ଶକ୍ତି ନ୍ୟୁନ ମନେ ହେଲା । ଦଶରଥ ଓ କୌଶଲ୍ୟାଙ୍କର ବିବାହ କାର୍ଯ୍ୟ ସମ୍ପନ୍ନ ହୋଇଥିବା ବିଷୟ ଉନ୍ମତ୍ତ ରାବଣ କିଛି ସମୟ ପାଇଁ ଜାଣି ପାରି ନଥିଲା । ନିରାପଦରେ ଦମ୍ପତ୍ତି ଅଯୋଧାରେ ପହଞ୍ଚିଲା ପରେ ଜାଣି ପାରି ପଶ୍ଚାତ୍ତାପ କଲା ।

ତେବେ ଯେଉଁ କୌଶଲ୍ୟା ମାର୍ଯ୍ୟଦା ପରୁଷପୁଙ୍ଗବ ରାମ ଅବତାର ରାମଚନ୍ଦ୍ରଙ୍କ ଜନନୀ ଥିଲେ, ସେହି କୌଶଲ୍ୟାଙ୍କ ଜନ୍ମମାଟି ଓ ଆପଣମାନେ ବାସ କରୁଥିବା କୋଶଳ ମାଟି ଅଟେ । କହିବାର ତାତ୍ପର୍ଯ୍ୟ ଏହା ଯେ ପଶ୍ଚିମ ଓଡିଶାର ଏହି ଅଞ୍ଚଳହିଁ ରାମମାତା ଙ୍କ ପିତାଗୃହ ବା ଭଗବାନ ରାମଚନ୍ଦ୍ର ଙ୍କର ମାମୁଁଘର ଥିଲା । ଆମରି ଝିଅ ହିଁ କୌଶଲ୍ୟା ଥିଲା ଓ କୋଶଳର ରାଜଧାନୀ କଅଁସିଲ୍ ଥିଲା ଯାହାକି ୭ ମାଇଲ ଦୈର୍ଘ୍ୟ ଓ ୭ ମାଇଲ ପ୍ରସ୍ଥ ବିଶିଷ୍ଟ ଏକ ବିଶାଳ ନଗର ଥିଲା । ରାଣୀପୁର ଝରିଏଲ ଏହାର ଅଂଶ ମାତ୍ର ଥିଲା । ଆଜି ବି କୌଶଲ୍ୟା ବିବାହର ସାକ୍ଷ୍ୟ ଏଠାକାର ମାଟି ଦିଏ । ତେଣୁ କୌଶଲ୍ୟା ବାପଘର ମାଟିର ସନ୍ତାନ ବୋଲି ଓ ଭଗବାନଙ୍କ ଜନନୀଙ୍କୁ ଏ ମାଟି ଜନ୍ମ ଦେଇ ଥିବାରୁ ତା'ର ପବିତ୍ରତା ର ପ୍ରଶଂସା କରିବା । ଏହି ପବିତ୍ର ମାତୃଭୂମିହିଁ ଆମର ବନ୍ଦନୀୟା ହେବ ଏବଂ ତାହାରି କୋଳର ସ୍ପର୍ଶ ପାଇ ଆମେ ଆମର ଭବିଷ୍ୟତକୁ ଉଜ୍ଜଳମୟ କରିବାକୁ ଶପଥ ନେବା, ଆଗେଇ ଆସିବା ।





# ରାମରାଜ୍ୟର କୋଶଳ

ପୈତୃକ ସମ୍ପତ୍ତି ଉପରେ ଅଧିକାର ସାବ୍ୟସ୍ତ କରିବାକୁ ସଂପୂର୍ଣ୍ଣ ସୁଯୋଗ ଥାଇ ମଧ୍ୟ ସେତକ ନ କରି ଭବିଷ୍ୟତ ପିଢ଼ୀ ପାଇଁ ସେହି ଅଧିକାରକୁ ଗଢ଼ାଇଦେବାର ପରମ୍ପରା ସୃଷ୍ଟିକରି ଯାଇଛନ୍ତି - ତ୍ରେତୟା ଯୁଗର ଅଯୋଧ୍ୟା ର ରାଜା ଦଶରଥଙ୍କର ପୁତ୍ରମାନେ । ରାଜାଙ୍କର ଜ୍ୟେଷ୍ଠ ପୁତ୍ର ସିଂହାଂସନର ଅଧିକାରୀ ହେବାର ଭାରତୀୟ ପରମ୍ପରାରେ ପ୍ରଚଳିତ ଥିଲା । ତଥାପି ସବୁ କ୍ଷେତ୍ରରେ ଜ୍ୟେଷ୍ଠ ପୁତ୍ରମାନେ ସେହି ନିରଙ୍କୁଶ ସ୍ୱାର୍ଥ କୈନ୍ଦ୍ରୀକ ପରମ୍ପରାକୁ ଏକାକୀ ଉପଭୋଗ ନ କରି ଶାସନରେ ଅନ୍ୟ ଭାଇ ମାନଙ୍କୁ ମଧ୍ୟ ସମାନ ଅଧିକାର ଦେଇ ଆଦର୍ଶ ସୃଷ୍ଟି କରି ଯାଇଛନ୍ତି । ମର୍ଯ୍ୟାଦା ପୁରୁଷୋତ୍ତମ ଭଗବାନ ରାମଚନ୍ଦ୍ରଙ୍କ କ୍ଷେତ୍ରରେ ଏହା ଯୁଗେ ଯୁଗେ ଭାରତୀୟଙ୍କୁ ପଥ ପ୍ରଦର୍ଶନ କରୁଥିବ ନିଶ୍ଚୟ । ମହାକୋଶଳର ସମ୍ରାଟ ରାମଚନ୍ଦ୍ର ଥିଲେ ସତ, କିନ୍ତୁ ସମଗ୍ର ମହାକୋଶଳକୁ ସୁଶାସନ ଦେବାରେ ଯତ୍‌ପରୋନାସ୍ତି ଚେଷ୍ଟା କରିଥିଲେ ସେ । ଭାତୃଭକ୍ତ ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନ ଜ୍ୟେଷ୍ଠ ଭ୍ରାତାଙ୍କୁ ଦେବତୁଲ୍ୟ ଜ୍ଞାନକରି ତାଙ୍କର ଆଦେଶ ପାଳନରେ ନିଜକୁ ଧନ୍ୟ ମନେ କରୁଥିଲେ । ସୁତରାଂ ଦଶରଥ ବିଶାଳ ସାମ୍ରାଜ୍ୟକୁ ଚାରି ଭାଇଙ୍କ ମଧ୍ୟରେ ବାଣ୍ଟିବାର ଯଦିଓ ଭଗବାନ ରାମଚନ୍ଦ୍ରଙ୍କର କର୍ତ୍ତବ୍ୟଥିଲା, ତଥାପି ସେ ତାହା ନ କରି ଭାଇମାନଙ୍କର ସମ୍ମତିରେ ନିଜ ନିଜର ପୁଅମାନଙ୍କ ମଧ୍ୟରେ ବାଣ୍ଟି ଦେଇଥିଲେ । ମହାକୋଶଳ (ସାକେତ) ଦଶରଥଙ୍କ ପୀଢ଼ୀ ପରେ ଲବଙ୍କର ପୀଢ଼ୀରେ ବଣ୍ଟାଗଲା । ତେଣୁ ଚାରିଭାଇଙ୍କ ଆଠଗୋଟି ଯମଜ ସନ୍ତାନ ମଧ୍ୟରେ ରାମରାଜ୍ୟ ବଣ୍ଟଗଲା । ବିଚିତ୍ର ଯେ, ପ୍ରତ୍ୟେକ ଭାଇଙ୍କର ଦୁଇଟି ଲେଖାଏ ପୁଅ ଥିଲେ, ତାହା ପୁଣି ଯମଜ । ରାମଚନ୍ଦ୍ରଙ୍କର ଦୁଇ ପୁଅ ଥିଲେ ଲବ ଓ କୁଶ । ଭରତଙ୍କ ଦୁଇ ପୁଅ ତକ୍ଷ ଓ ପୁଷ୍କର । ଅଙ୍ଗଦ ଓ ଚନ୍ଦ୍ରକେତୁ ଲକ୍ଷ୍ମଣଙ୍କର ଦୁଇ ପୁଅ ଥିବା ବେଳେ ଶତ୍ରୁଘାତୀ ଓ ସୁବାହୁ ଶତ୍ରୁଘ୍ନଙ୍କର ।



ସେଦିନ ଥିଲା ଆଶ୍ୱିନ-ଶୁକ୍ଳ ଚତୁର୍ଦ୍ଦଶୀ ତିଥି । ରାତ୍ର ଦ୍ୱିପହର ଶେଷାର୍ଦ୍ଧ । ଜ୍ୟୋତ୍ସ୍ନା ବିଛେଇ ହୋଇ ପଡିଛି । ଅଦୂରରେ ସରଯୂନଦୀ ଢେଉରେ ଜ୍ୟୋତ୍ସ୍ନା ଲୁଚକାଳି ଖେଳୁଛି । ଆକାଶରେ ପହଁରୁଥିବା ଈଷତ୍ ଗୋଲାକାର ଚନ୍ଦ୍ରମାକୁ ଥରେ ଚାହିଁ ଭଗବାନ ରାମଚନ୍ଦ୍ର ପୃଥିବୀ ପ୍ରତି ତା'ର ଉଦାରତାକୁ କଳ୍ପନା କରୁଥିଲେ । ସେହି ଭାବନା ମଧ୍ୟରେ ତାଙ୍କର ଚେତନା ବୁଡିଗଲା । ସ୍ୱପ୍ନପରି ଉଦ୍ଭାସିତ ହେଉଥିବା ବୈକୁଣ୍ଠକୁ ସ୍ମରଣ କଲେ ସେ । ଲକ୍ଷ୍ମୀଙ୍କର ପଦ ମଞ୍ଜୀରନର ସ୍ପର୍ଶକୁ ସରଯୂ କୂଳରୁ ଅନୁଭବ କଲାପରି ହୋଇ ସିହରି ଉଠିଲେ । ଅନେକ ଦିନରୁ ସୀତା ବିସର୍ଜି ମଧ୍ୟ ସମୟ ବିଶେଷରେ କଳ୍ପନା ରାଜ୍ୟରେ ସୀତାଙ୍କର ସାନ୍ନିଧ୍ୟ ଉପଲବ୍ଧି କରୁଥିଲେ ଏବଂ ସେଦିନ ମଧ୍ୟ ସେ ବିଛେଇ ହୋଇପଡି ଥିବା ଜ୍ୟୋତ୍ସ୍ନା ସରଯୂରେ ଲୁଚଲାକି ଖେଳୁଥିବା ଓ ମସ୍‌ଗୁଲ ଥିବା ଦେଖି ପୁଣି ଥରେ ଲକ୍ଷ୍ମୀଙ୍କ ସାନ୍ନିଧ୍ୟ ଅନୁଭବ କରିବା ଅସମ୍ଭବ ନଥିଲା, ସ୍ୱାଭାବିକ ଥିଲା । ସେ ହଠାତ୍ ନିଜକୁ ଦଶରଥ ପୁତ୍ର ରୂପେ ସ୍ମରଣ କରି ସାଂସାରିକ ବନ୍ଧନରେ ବନ୍ଦୀ ଥିବା ପରି ଅନୁଭବ କରୁ ନଥିଲେ ମଧ୍ୟ ବୈକୁଣ୍ଠ ଫେରି ଯିବାକୁ ତାଙ୍କ ହୃଦୟ ଆନ୍ଦୋଳିତ ହୋଇ ଉଠିଲା । ଭାବିବାକୁ ଲାଗିଲେ- ଚାରିଭାଇଙ୍କର ଆଠଗୋଟି ପୁଅଙ୍କ ମଧ୍ୟରେ ସମଗ୍ର ସାମ୍ରାଜ୍ୟ କୁ ସମାନ ଭାବରେ ଆନୁପାତିତ ଭାଗ କରିଦେବେ । ନିଜେ ପୈତୃକ ସଂପତ୍ତିକୁ ଉପଭୋଗ କରିସାରିବା ପରେ ପାର୍ଥିବ ସଂପତ୍ତି ପ୍ରତି ବିମୋହ ହୋଇପଡିଲେ ଭଗବାନ ରାମଚନ୍ଦ୍ର । ପୁତ୍ର ମାନଙ୍କ ମଧ୍ୟରେ ବାଣ୍ଟି ଦେବାରେ ସହମତ ହେବାକୁ ଭାଇମାନଙ୍କୁ ବୁଝାଇବାର ସିଦ୍ଧାନ୍ତ ନେଲେ ସେ ।

ଅପେକ୍ଷାକଲେ ପରବର୍ତ୍ତୀ ସୂର୍ଯ୍ୟୋଦୟକୁ । ସାରା ରାତି ଉଜାଗର ସରଯୂ ଦେଖି ଥିଲା । ଆଶ୍ଚର୍ଯ୍ୟ ଏତିକି ହେଲା ଯେ ମର୍ଯ୍ୟାଦାବନ୍ତ ପୁରୁଷ ପୁଙ୍ଗବଙ୍କ ପାଇଁ ସେ ନିଜେ ପବିତ୍ର ହୋଇଛି । ମାତ୍ର ଏପରି ଉଦାସ ସେ ଆଉ କେବେ ଭଗବାନଙ୍କୁ ଦେଖି ନ ଥିଲା । ଭଗବାନଙ୍କ ମନର କଳ୍ପନା ସାମାନ୍ୟ ସରଯୂ ଯଦିଓ ପ୍ରଭୁ ପଦରଜରେ ପବିତ୍ର ହୋଇଛି କଳ୍ପନା କରନ୍ତା ବା କେତେକେ ?

ସକାଳର ସୂର୍ଯ୍ୟ ଦିଗ୍‌ବଳୟ ଚିରି ଉଙ୍କି ମାରି ଉଠିଲେ । ନିତ୍ୟକର୍ମ ଯଥା ସମୟରେ ସମାପିତ ହେଲା । ସେ ସମସ୍ତ ଭାଇଙ୍କୁ ଡକେଇ ପଠାଇଲେ । ସମସ୍ତେ ଠିଆ ଗୋଡରେ ପିତାସମ ଜ୍ୟେଷ୍ଠ ଭାଇଙ୍କ ଆଦେଶ ପାଳନ କଲେ ।



ପୁଣି ସେହି ସରଯୁ କୂଳ । ହତସ୍ତମ୍ଭ ହେଉଥାଏ ସରଯୁ । ବୁଝିବାକୁ ଚେଷ୍ଟାକରି ବୁଝିପାରୁ ନ ଥାଏ । ବିଶାଳ ଅମ୍ବ ବୃକ୍ଷ ମୂଳରେ ରାମଚନ୍ଦ୍ର ଏକ ଶିଳାରେ ଉପବେଶନ କରିଥିଲେ । ଏକାକୀ ତିନିଭାଇ ଉପସ୍ଥିତ ହେଲେ । ଯଥାରୀତି ପାରମ୍ପାରିକ ସମ୍ଭାଷଣରେ ରାମଚନ୍ଦ୍ର ସାନ ଭାଇ ମାନଙ୍କୁ କୋଳାଗ୍ରତ କଲେ ଏବଂ ନିକଟରେ ବସିବାକୁ କହିଲେ ।

ଆମ୍ବ ବୃକ୍ଷର ପବିତ୍ର ଛାଇରେ ରାଜ ପରିବାର ଉଦ୍ଦଶ୍ୟରେ ସ୍ଥାପିତ ଶିଳା ଉପରେ ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନ ବସିଲେ । ସମସ୍ତେ କୁଳଗୁରୁ ବଶିଷ୍ଠଙ୍କ ଆଗମନର ପ୍ରତୀକ୍ଷାରେ ରହିଲେ । ପୂର୍ବ ଦିଗରେ ହିଁ ଚକ୍ଷୁ ନିବଦ୍ଧ ରହିଲା ।

ବଶିଷ୍ଠ ଯଥା ସମୟରେ ବିଜେକଲେ । ରାମଚନ୍ଦ୍ର ଆଦି ସମସ୍ତେ ସାଷ୍ଟାମ ପ୍ରଣାମ କଲେ । ଗୁରୁଙ୍କର ଆସନ ଅଳଙ୍କୃତ ହେଲାପରେ ପ୍ରଶ୍ନବାଚୀ ଦୃଷ୍ଟିରେ ରାମଚନ୍ଦ୍ର ଅନାଇଲେ ।

ଜ୍ୟୋସ୍ନା ରଜନୀର ମନର କଳ୍ପନାକୁ ଗୁରୁ ସମ୍ମୁଖରେ ସବିନୟେ ଉପସ୍ଥାପନ କଲେ ଭଗବାନ ଶ୍ରୀରାମ । ଉଚିତ୍ ଚିନ୍ତା ବୋଲି ଗୁରୁ ଉଦ୍‌ଘୋଷଣା କଲେ ।

ତାପରେ -

ମହାପ୍ରୟାଣ ହେଲା ସମସ୍ତଙ୍କର । ଚାରି ଭାଇଙ୍କର ଏକ ସଙ୍ଗରେ ମହାପ୍ରୟାଣ । ଗୋଟିଏ ଯୁଗର ଅନ୍ତ ହେଲା । ଭଗବାନଙ୍କୁ ସମାଧି ହେବାର ସରଯୁ ଦେଖି ସ୍ତମ୍ଭୀଭୂତ ହୋଇ ନିର୍ବାକ ହେଲା ।

କିନ୍ତୁ ରାଜ ସିଂହାସନ ଶୂନ୍ୟ ହେବାର ନୁହେଁ । କୁଳଗୁରୁ ତାଙ୍କ କର୍ତ୍ତବ୍ୟରେ ତତ୍ପର ହୋଇଉଠିଲେ । ସେ ଭାଇମାନଙ୍କ ମଧ୍ୟରେ ଅଗ୍ରଜ ଲବଙ୍କୁ ଅଯୋଧ୍ୟା ସିଂହାସନରେ ଅଧିଷ୍ଠିତ କଲେ ।

ଏବଂ -

ସେହି ଦିନ ହିଁ ଭଗବାନ ରାମଚନ୍ଦ୍ର ଏବଂ ତାଙ୍କର ଅନୁଜ ମାନଙ୍କର ମନର ଅଭିଳାଷକୁ ରାଜାଙ୍କଠାରେ କୁଳଗୁରୁ ଉପସ୍ଥାପନ କରି ଆଦେଶଦେଲେ । ସର୍ବସମ୍ମତ ଅଙ୍ଗୀକାର ହେଲା । ତଥାପି ମହାରାଜା ଲବଙ୍କର ଅନ୍ତିମ ଆଦେଶକୁ



ଅପେକ୍ଷା କଲେ କୁଳଗୁରୁ ବଶିଷ୍ଠ । ଛଳ ଛଳ ନେତ୍ରରେ ଲବଙ୍କର ଅଞ୍ଜୁଳୀପୁଟରେ ପିତ୍ରାଜ୍ଞା ପାଳନର ପ୍ରକ୍ରିୟା ଆରମ୍ଭ ପାଇଁ ନିବେଦନ ହେଲା ଏବଂ ତାହା କାର୍ଯ୍ୟକାରୀ କରିବା ପ୍ରକ୍ରିୟା ଆରମ୍ଭ ମଧ୍ୟ କଲେ କୁଳଗୁରୁ ।

ଭଗବାନ ରାମଚନ୍ଦ୍ରଙ୍କ ଶେଷ ଇଚ୍ଛାକ୍ରମେ ତାଙ୍କର ଜ୍ୟେଷ୍ଠ ପୁତ୍ର ଲବଙ୍କ ଭାଗରେ ଅଯୋଧ୍ୟା ବା ଉତ୍ତର କୋଶଳ ପଡିଲା । କନିଷ୍ଠ କୁଶଙ୍କ ଭାଗରେ ପଡିଲା ଦକ୍ଷିଣ କୋଶଳ ବା କାଶି କୋଶଳ । ପରବର୍ତ୍ତୀ ସମୟରେ ଏହି ଦକ୍ଷିଣ କୋଶଳରେ ରାଜଧାନୀ ର ନାମକରଣ କୁଶଙ୍କ ନାମାକ୍ରମାରେ କୁଶସ୍ଥଳୀ (ଆଧୁନିକ ରାଣିପୁର ଝରିଏଲ) ରହିଲା । ଭରତଙ୍କ ଯମଜ ଦୁଇ ପୁତ୍ରଙ୍କ ମଧ୍ୟରୁ ଜ୍ୟେଷ୍ଠ ତକ୍ଷଙ୍କ ଭାଗରେ ପଡିଲା ଗାଂଧାର ଦେଶ (ଆଧୁନିକ ଆଫଗାନିସ୍ତାନକୁ ମିଶାଇ) । ତକ୍ଷଙ୍କର ନୂତନ ରାଜଧାନୀ ତାଙ୍କ ନାମାନୁସାରେ ହେଲେ ତକ୍ଷଶିଳା । କନିଷ୍ଠ ପୁଷ୍କରଙ୍କ ଭାଗରେ ପୁଷ୍କର ଦେଶ ପଡି ତାର ରାଜଧାନୀ ହେଲା ପୁଷ୍କରାବତି । ଲକ୍ଷ୍ମଣଙ୍କ ଦୁଇ ଯମଜ ପୁତ୍ରଙ୍କ ମଧ୍ୟରୁ ଜ୍ୟେଷ୍ଠ ଅଂଗଦଙ୍କ ଭାଗରେ କାରୁଜ ଦେଶ ଏବଂ ଏହାର ରାଜଧାନୀ କାରୁଜ ଥିଲାବେଳେ କନିଷ୍ଠ ଚନ୍ଦ୍ରକେତୁଙ୍କ ଭାଗରେ ପଡିଥିଲା ମେକେଲ ରାଜ୍ୟ । ଚନ୍ଦ୍ରକେତୁ ଙ୍କ ନାମାନୁଯାୟୀ ତାଙ୍କର ରାଜଧାନୀର ନାମ ଚନ୍ଦ୍ରକାନ୍ତ ନଗରୀ ହେଲା । ଶତ୍ରୁଘ୍ନଙ୍କ ଯମଜ ପୁତ୍ରଙ୍କ ମଧ୍ୟରୁ ଜ୍ୟେଷ୍ଠ ପୁତ୍ର ଶତ୍ରୁଯାତୀଙ୍କ ଭାଗରେ ବିଜିଶା ପଡି ତା'ର ରାଜଧାନୀ ଭିଲ୍‌ସା ହେଲା ବେଳେ ସୁବାହୁ ଭାଗରେ ମଥୁରା ପଡିଥିଲା ।

ସୁତରାଂ ରାମଚନ୍ଦ୍ରଙ୍କର କନିଷ୍ଠ ପୁତ୍ର କୁଶ ଭାଗରେ ପଡିଥିବା ଦକ୍ଷିଣ କୋଶଳ ହିଁ ଆଧୁନିକ କୋଶଳୀ ଭାଷାଭାଷୀ ଅଞ୍ଚଳ ହୋଇ ରହିଛି । ସେଥିରେ କିଛି ଅଂଶ ହିଁ ନିକଟ ଅତୀତର କୋଶଳାଞ୍ଚଳ ନାମରେ ଖ୍ୟାତ । ଛତିଶଗଡ, ମେକଲ, ମଧ୍ୟପ୍ରଦେଶ, ବେରାର, ବସ୍ତର ଏବଂ ଆଧୁନିକ ସୁନ୍ଦରଗଡ, ଝାରସୁଗୁଡା, ସମ୍ବଲପୁର, ଦେବଗଡ, ବରଗଡ, ବାଲଙ୍ଗିର, ସୁବର୍ଣ୍ଣପୁର, ବୌଦ, କଳାହାଣ୍ଡି, ନୂଆପଡା, ନବରଙ୍ଗପୁର ଓ ରାୟଗଡା ଜିଲ୍ଲାର କିଛି ଅଂଶକୁ ନେଇ ଭଗବାନ ରାମଚନ୍ଦ୍ରଙ୍କ କନିଷ୍ଠ ପୁତ୍ର କୁଶଙ୍କର ଦକ୍ଷିଣ କୋଶଳ ଥିଲା । ସେହି କୋଶଳର ରାଜଧନୀ କୁଶସ୍ଥଳୀ ବା କଅଁସିଲ ଥିଲା ଯାହାକି ପରବର୍ତ୍ତୀ ସମସ୍ତରେ ଅନିବାର୍ଯ୍ୟ କାରଣ ବଶତଃ ପାଟଣାଗଡକୁ ସ୍ଥାନାନ୍ତରିତ ହେଲା । ଏକଦା ଆପଣ ମାନଙ୍କର



ଏହି ପ୍ରାଚୀନ କ୍ଷୁଦ୍ର ସହର ପାଟଣାଗଡ ହିଁ ଭଗବାନ ରାମଚନ୍ଦ୍ରଙ୍କ କନିଷ୍ଠ ପୁତ୍ର କୁଶଙ୍କର କୋଶଳର ରାଜଧାନୀ ଥିଲା । ଅବଶ୍ୟ କୁଶଙ୍କ ଜୀବନାବସ୍ଥାରେ କୁଶସ୍ଥଳୀରେ ହିଁ ତାଙ୍କ ରାଜଧାନୀ ଥିଲା । ତେଣୁ ଏହି ପାଟଣାଗଡର ପ୍ରାଚୀନ ଐତିହ୍ୟ ଅତ୍ୟନ୍ତ ସୁଦୂର ପ୍ରସାରୀ ଏବଂ ମହାନ ଥିଲା ଏଥିରେ ସଂଦେହର ଆବକାଶ ନାହିଁ ।





# ପାଟଣାର ଗଡ଼ ସଂରଚନା

ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ (ପ୍ରାୟ ଖ୍ରୀ: ପୂ: ୩୬ ରୁ ୨୦) ମାଳବର ରାଜା ବିକ୍ରମାଦିତ୍ୟ ତ୍ରିକଳିଙ୍ଗ ସମେତ ସମଗ୍ର କେନ୍ଦ୍ର ଓ ପୂର୍ବ ଭାରତକୁ ନିଜ ସାମ୍ରାଜ୍ୟଭୁକ୍ତ କରି ବିଜିତ ରାଜ୍ୟମାନଙ୍କରେ ଜଣେ ଜଣେ ସାମନ୍ତ ରାଜା ନିଯୁକ୍ତ କରି ଶାସନ କରିବାରେ ଲାଗିଲେ । ସେତେବେଳେ କଳିଙ୍ଗ, ତୋଶଳ ଓ କୋଶଳକୁ ତ୍ରିକଳିଙ୍ଗ କୁହାଯାଉଥିଲା । ନିଯୁକ୍ତ ସାମନ୍ତଙ୍କର ସୁରକ୍ଷିତ ଶାସନ ନିମିତ୍ତ ରାଜଧାନୀଠାରେ ଏକ ଗଡ ନିର୍ମାଣ କଲେ ଏବଂ ବିକ୍ରମାଦିତ୍ୟଙ୍କ ନାମ ଅନୁସାରେ ଗଡର ନାମ ବିକ୍ରମଗଡ ଦେଲେ । କୋଶଳ ଏହି ତ୍ରିକଳିଙ୍ଗ ମଧ୍ୟରେ ସବୁଠାରୁ ପ୍ରଭାବଶାଳୀ ଥିବାରୁ ଓ ତା'ର ରାଜଧାନୀଠାରେ ଗଡନିର୍ମିତ ହୋଇଥିବାରୁ ଗଡର ନାମ କୋଶଳଗଡ ମଧ୍ୟ ରଖାଗଲା । ରାଜଧାନୀର ଅନ୍ୟଅର୍ଥ ପାଟଣା ହେତୁ ଏହାକୁ ପାଟଣାଗଡ ମଧ୍ୟ କୁହାଗଲା । କେହି କେହି ତ୍ରିକଳିଙ୍ଗର ରାଜଧାନୀ ପାଟଣାଗଡଠାରେ ହଠାତ୍ ସ୍ଥିରୀକୃତ ବା ପତିତ ହେବାରୁ ଏହାକୁ ପତ୍ତନଗଡ କୁହାଗଲା ଏବଂ ପରବର୍ତ୍ତୀ ସମୟରେ ଅପଭ୍ରଂଶ ହୋଇ ପତ୍ତନଗଡରୁ ପାଟଣାଗଡରେ ରୂପାନ୍ତରିତ ହେଲା ବୋଲି କହନ୍ତି । ସେ ଯାହାହେଉ, ପାଟଣାଗଡ, କୋଶଳଗଡ ଓ ବିକ୍ରମଗଡ ଏହି ତିନିଗୋଟି ନାମରେ ଏହା ନାମିତ ହୋଇଥିଲା ।

ଉକ୍ତ ଗଡଟି ଅତ୍ୟନ୍ତ ଚମତ୍କାର ଯୋଜନା (ପ୍ଲାନ) ରେ ନିର୍ମିତ ହୋଇଥିଲା । ଏହା ଯନ୍ତ୍ର ସଦୃଶ ଥିଲା । କୌଣସି ଶତ୍ରୁ ଏହା ମଧ୍ୟରେ ପ୍ରବେଶ କରିବା ସମ୍ଭବ ନଥିଲା । ଗଡର ଚତୁର୍ଦ୍ଦିଗରେ ଚାରିଗୋଟି ଦ୍ୱାର ଥିଲା, ଯଥା - ସିଂହଦ୍ୱାର, ସୋନପୁର ଦ୍ୱାର, ଘସିଏନ୍ ଦ୍ୱାର, ଗୁପ୍ତଦ୍ୱାର (ଚୁର୍ଣ୍ଣଦ୍ୱାର) । ଚୁର୍ଣ୍ଣଦ୍ୱାର ମୁଖ୍ୟ ପ୍ରବେଶ ଦ୍ୱାର ଦେଇ ପ୍ରବେଶ କରିବାର ଚେଷ୍ଟା କଲେ, ତାକୁ ତା'ର ଶିର ହରାଇବାକୁ ପଡୁଥିଲା । କିନ୍ତୁ ବିପଦ ବେଳେ ଏହି ଦ୍ୱାର ଦେଇ ରାଜ ପରିବାର ଓ ମୁଖ୍ୟ ରାଜକର୍ମଚାରୀମାନେ ହିଁ ଆତ୍ମଗୋପନ କରିବାର ବ୍ୟବସ୍ଥା ଥିଲା ।



ଏହି ଗଡଟିକୁ ସଂପୂର୍ଣ୍ଣଭାବେ ଦୁର୍ଭେଦ୍ୟ କରି ସଂରଚନା କରାଯାଇ ଥିଲା । ଗଡର ଚତୁଃପାର୍ଶ୍ୱରେ ସମପ୍ରସ୍ଥ ସମଗଭୀରତା ବିଶିଷ୍ଟ ଏକାଧିକ ଖାଇ ଘେରି ରହିଥିଲା । ଖାଇ ସର୍ବଦା ଜଳପୂର୍ଣ୍ଣ ଥିଲା ଓ କୁମ୍ଭୀର ଏବଂ ବିଷାକ୍ତ ଜଳଜୀବ ଏହା ମଧ୍ୟରେ ଛଡାଯାଇଥିଲା । ଖାଇକୁ ଲାଗି ଭିତର ପାର୍ଶ୍ୱରେ ମାଙ୍କଡା ପଥର ଓ ମାଟିରେ ନିର୍ମିତ ବଳୟାକାର ଦୁଇପୁରୁଷ ଉଚ୍ଚର ଏକ ମାଟି ଆଡି ଥିଲା ଏବଂ ତାହାରି ଉପରେ କଟଙ୍ଗ ବାଉଁଶ ଘଞ୍ଚଭାବରେ ଲଗାଯାଇଥିଲା । କଥିତ ଅଛି, ଉକ୍ତ ବାଉଁଶ ମଧ୍ୟଦେଇ ଏପରିକି ପିମ୍ପୁଡି ମଧ୍ୟ ପ୍ରବେଶ କରିପାରୁ ନଥିଲେ । ବଳୟ ଆକୃତିର ଏହି ବାଉଁଶ ବଣ ହିଁ ଗଡର ସୀମାନିର୍ଦ୍ଧାରଣ କରୁଥିଲା । ଏହି ବାଉଁଶ ବଣକୁ ଲାଗି ଭିତରେ ଆଉଏକ ଅଣଓସାରିଆ ଅଥଚ ଗଭୀର ଖାଇ ଗଡଟିକୁ ଦୁର୍ଭେଦ୍ୟ କରୁଥିଲା । ପୁଣି ଉକ୍ତ ଖାଇକୁ ଲାଗି ଏକ ଅଣଓସାରିଆ ବଳୟାକୃତି ବାଉଁଶ ବଣ ଗଡଟିକୁ ସୁଦୃଢ କରୁଥିଲା । ଏହି ଚର୍ତୁପ୍ରସ୍ଥ ବିଶିଷ୍ଟ ଅଭେଦ୍ୟ ଦୁର୍ଗର ମଝିରେ ରାଜପ୍ରାସାଦଟି ନିର୍ମିତ ଥିଲା । ନିକଟ ଅତୀତରେ ଶ୍ରୀଶ୍ରୀ କଲ୍ୟାଣ ଦାସଙ୍କ ଦ୍ୱାରା ଆହୂତ ଯଜ୍ଞ ମଣ୍ଡପର ଦକ୍ଷିଣ ପଶ୍ଚିମରେ ଏବଂ ପ୍ରବଚନ ମଣ୍ଡପକୁ ଲାଗି ଏହି ରାଜପ୍ରାସାଦ ର ମୂଳଦୁଆ ଏବେ ମଧ୍ୟ ଅଛି ଯାହାକି ତା'ର ସାକ୍ଷୀ ଦିଏ । ଏହାହିଁ ଉକ୍ତ ରାଜପ୍ରାସାଦର ଅବଶେଷ ଅଟେ । ପୁଣି ଯଜ୍ଞ ମଣ୍ଡପ ନିକଟବର୍ତ୍ତୀ ଭଗ୍ନ ଧଳା କ୍ଷୁଦ୍ରପ୍ରାସାଦଟି ସିଂହଦ୍ୱାର ଥିଲା । ବର୍ତ୍ତମାନ ଗଡଭିତର ପଡା ବା ପାଟଣେଶ୍ୱରୀ ମନ୍ଦିର ର ଉତ୍ତର-ପୂର୍ବ ଦିଗକୁ ଲମ୍ବି ଯାଇଥିବା ପଡାର ଠିକ୍ ଦକ୍ଷିଣ ପାର୍ଶ୍ୱରେ ରାଣୀ ଅନ୍ତପୁର ଥିଲା । ଏବେ ମଧ୍ୟ ଏହି ରାଣୀଅନ୍ତପୁର ସାକ୍ଷ ଦେବା ପାଇଁ ଇଟା ଓ ଚୂନ ନିର୍ମିତ ଏକ ସ୍ତମ୍ଭ ଓ ମାଟିଗଦା ମୁଣ୍ଡ ଟେକି ରହିଛି । ରାଣୀମାନଙ୍କ ସ୍ନାନ ନିମନ୍ତେ ଏକ ପୋଖରୀ ଗଡ ମଧ୍ୟରେ ଖୋଳା ଯାଇଥିଲା । ପରବର୍ତ୍ତୀ ସମୟ ମାନଙ୍କର ଶାରଦୀୟ କାର୍ଯ୍ୟ ସମ୍ପନ୍ନ ନିମିତ୍ତ ଏହି ପୋଖରୀ ବ୍ୟବହୃତ ହୋଇ ତାକୁ କୁଆଁରୀବନ୍ଧ ମଧ୍ୟ କୁହାଗଲା । କଥିତ ଅଛି ଯେ ଗଡର ପତ୍ୟେକ ଦ୍ୱାରରେ ଅହରହ କଠିଣ ପ୍ରହରା ଦେବାର ସୁବ୍ୟବସ୍ଥା ଥିଲା । ଗଡ ମଧ୍ୟରେ ଅନ୍ୟକେହି ପ୍ରବେଶ କରିପାରୁ ନଥିଲେ ।

ଅନ୍ୟପକ୍ଷରେ ସୁବର୍ଣ୍ଣରେଖା ନଦୀ ଓ ମାୟାବତୀ ନଦୀ ପାଟଣାର ପ୍ରାୟ ତିନି ପାର୍ଶ୍ୱରେ ଘେରି ରହିଅଛି । ଏହି ନଦୀ ଗଡପାଇଁ ସୁରକ୍ଷା କବଚ ରୂପେ



କାର୍ଯ୍ୟ କରୁଥିଲା । ଜଳପୂର୍ଣ୍ଣ ଥିଲାବେଳେ ନଦୀରେ ଚାରିଗୋଟି ଘାଟ ଥିଲା ଏବଂ ଉକ୍ତ ଘାଟ ଦେଇ ହିଁ ପାଟନାଗଡରେ ପ୍ରବେଶ କରିପାରିବାର ସମ୍ଭାବନା ଥିଲା । ଏହି ଘାଟମାନଙ୍କର ସୁରକ୍ଷା ଦାୟୀତ୍ୱ ଚାରି ଜଣଙ୍କଠାରେ ନ୍ୟସ୍ତଥିଲା ଏବଂ ଚାରିଗୋଟି ବିଶିଷ୍ଟ ଗ୍ରାମ ଏମାନଙ୍କୁ ଦିଆଯାଇଥିଲା । ସେହି ଗ୍ରାମ ଗୁଡିକର ନାମ କରଣ ମଧ୍ୟ ଏହି ଘାଟର ନାମାନୁଯାୟୀ ହୋଇଥିଲା । ସେହି ଘାଟ ଓ ଗ୍ରାମ ଗୁଡିକ ହେଲା - କୟା ଘାଟ୍, ମୁଦଘାଟ୍, କୁଦାଲଘାଟ୍ ଓ ଗୁଡିଘାଟ୍ । ଏହି ଗ୍ରାମ ଗୁଡିକରେ ସୁରକ୍ଷାର ପ୍ରାଥମିକ ବ୍ୟବସ୍ଥା ମଧ୍ୟ ଥିଲା ଓ ଏହା ପାଟଣାଗଡ ଠାରୁ ପ୍ରାୟ ସମାନ ଦୂରତାରେ ବୃତ୍ତାକାରରେ ଥିଲେ ।

ଖ୍ରୀ:ପୂ: ୭୧ ବେଳକୁ ପାଟଣାକୁ (ଗଡ ନିର୍ମାଣ ପୂର୍ବରୁ) କୁଆଁରୀପାଟଣା ବୋଲି କହୁଥିଲେ । ସେତେବେଳେ ପାଟଣାରେ ଜଣେ ସାମନ୍ତ ରାଜା ମାଧବ ଚନ୍ଦ୍ର ଦେବ ଶାସନ କରୁଥିଲେ । ତାଙ୍କର ଦକ୍ଷିଣ ଦେଶ ନିବସୀ ଜନୈକ ଗୁରୁ ଥିଲେ । ତାଙ୍କ ନାମ ଧନ୍ୱନ୍ତରୀ ଥିଲା । ତାଙ୍କର ସାତଜଣ ଶିଷ୍ୟା (ଜ୍ଞାନଦେଇ ମାଳୁଣୀ, ଲୁହୁରକୁଟୀ ଲୁହୁରୁଣୀ, ସୁକୁଟୀ ଚମାରୁଣୀ, ଗାଙ୍ଗୀ ଗଉଡୁଣୀ, ନିତେଇ ଧୋବଣୀ, ଶୁଆ ତେଲୁଣୀ ଓ ପତ୍ରପିନ୍ଧି ଶବରୁଣୀ) ଯାଦୁ ବିଦ୍ୟାରେ ଅତ୍ୟନ୍ତ ନିପୁଣା ଥିବାରୁ ଓ ଏମାନେ ସମସ୍ତେ କୁଆଁରୀ (ଅବିବାହିତା) ଥିବାରୁ ପାଟଣାକୁ କୁଆଁରୀପାଟଣା ମଧ୍ୟ କହୁଥିଲେ । ଏମାନେ ସମସ୍ତେ ଯାଦୁବିଦ୍ୟାରେ ନିପୁଣା ଥିଲେ ମାତ୍ର, ସାତବହନୀ ଦେବୀ ଆଦୌ ନଥିଲେ । ଏମାନଙ୍କ ଯାଦୁ ବିଦ୍ୟାର କର୍ମ କୁଶଳତା ପାଇଁ ସମଗ୍ର ଭାରତ ବର୍ଷରେ କୁଆଁରୀପାଟଣା ବିଖ୍ୟାତ ଥିଲା । ଅବଶ୍ୟ ଭୂଲକ୍ରମେ ଅନେକ ଏମାନଙ୍କୁ ସାତବାହନୀ ଆଖ୍ୟା ଦେଇ ଦେବୀ ଭାବେ ଅଧିଷ୍ଠିତା କରିବାର ଅପଚେଷ୍ଟା କରନ୍ତି ; କିନ୍ତୁ ବସ୍ତୁତଃ ଏମାନେ ମାନବୀ ମାତ୍ର ଥିଲେ, ଯାଦୁ ନିପୁଣା ଜନସେବୀ ଅବିବାହିତା କନ୍ୟା ଥିଲେ । ଏବଂ ମନ୍ତ୍ର ଶକ୍ତିରେ ସିଦ୍ଧି ଲାଭକରି ଯାହା କହୁଥିଲେ ତାହା ମନ୍ତ୍ର ହୋଇ ଯାଉଥିଲା । କିନ୍ତୁ ଏମାନେ ସମସ୍ତେ ସାଧିକା ଥିଲେ, ଦେବୀ ନଥିଲେ ।

ପୁଣି ତ୍ରୟୋଦଶ ଶତାବ୍ଦୀରେ ବସ୍ୱରାଜ ଦେଓ (୧୨୧୭-୪୭)ଙ୍କ ରାଜତ୍ୱ ସମୟରେ ପାଟଣାଗଡ ଏକ ସାମ୍ରାଜ୍ୟରେ ପରିଣତ ହୋଇସାରିଥିଲା । ଏହାର ଅଧିନରେ ବଣେଇ ଗଡ, ରାଢାଖୋଲ ଗଡ, ବେନ୍ଦ୍ରା ଗଡ, ଶକ୍ତି ଗଡ,



ବାମଣ୍ଡା ଗଡ, ଢେଙ୍କାନାଳ ଗଡ, ବସ୍ତର ଗଡ, ବୁଢାସମ୍ବର ଗଡ, ଗାଙ୍ଗପୁର ଗଡ, ଜୟପୁର ଗଡ, ଅନୁଗୁଳ ଗଡ, ବରଗଡ, ଫୁଲଝର ଗଡ, ବଉଦ ଗଡ, ଦଶପଲ୍ଲା ଗଡ, ଖେମୁଣ୍ଡି ଗଡ ଓ ପାଲହଡା ଗଡ ଆଦି ୧୮ଟି ଗଡ ଥିଲା । ଏହି ସମସ୍ତ ଗଡରେ ଜଣେଜଣେ ସାମନ୍ତ ରାଜା ଥିଲେ ଏବଂ ସବୁ ଗଡର କେନ୍ଦ୍ର ରାଜଧାନୀ ପାଟଣାଗଡ ହିଁ ଥିଲା । ବତ୍ସରାଜ ଦେଓଙ୍କୁ ମଉଡମଣି ରାଜା ବୋଲି କହୁଥିଲେ ।

ସୁତରାଂ ଆମର ଏହି ପାଟଣାଗଡ ରାଜ୍ୟର ଖ୍ୟାତି ଓ ପରମ୍ପରା ସମଗ୍ର ଭାରତବର୍ଷରେ ବିଖ୍ୟାତ ଥିଲା । ଏହି ଗଡଟି ସମଗ୍ର ଭାରତ ବର୍ଷରେ ଏକ ଅଭେଦ୍ୟ ଦୁର୍ଗ ଥିଲା ବୋଲି ଚୀନ ପରିବ୍ରାଜକ ହୁଏନ୍ ସାଂ ମଧ ତାଙ୍କର ଭ୍ରମଣ କାହାଣୀରେ ଉଲ୍ଲେଖ କରିଛନ୍ତି । ଦୁର୍ଭାଗ୍ୟର କଥା, ଖ୍ରୀ:ପୂ: ୫୪ ରେ ନିର୍ମିତ ଏହି ପାଟଣାଗଡରୁ ବଲାଙ୍ଗିରକୁ ରାଜଧାନୀ ସ୍ଥାନନ୍ତରିତ କରାଗଲା ୧୮୭୧ ବେଳକୁ । ସେତେବେଳର ଚୌହାନ ବଂଶର ରାଜାମାନେ ଦୁର୍ବଳ ହୋଇ ସାରିଥିଲେ । ତାତ୍କାଳିନ ପାଟଣାର ଚୌହାନ ରାଜା ଶୁରପ୍ରତାପ ଦେଓ (୧୮୬୬-୭୧)ଙ୍କର ଅକସ୍ମିକ ମୃତ୍ୟୁପରେ ସେହି ୭୧ରେ ହିଁ ପାଟଣାରାଜ୍ୟକୁ କୋଟ ଅପ୍ ୱାର୍ଡସ୍ କରାଗଲା ଓ ସମସ୍ତ ଶାସନ ଭାର ଇଂରେଜ ମାନଙ୍କ ହାତକୁ ଚାଲିଗଲା । ସେତେବେଳେ ଶୁରପ୍ରତାପ ଦେଓଙ୍କର ନାବାଳକ ପୁତ୍ର ୨ୟ ରାମଚନ୍ଦ୍ର ଙ୍କର ଶିକ୍ଷା ବ୍ୟବସ୍ଥା ଇଂରେଜ ସରକାର ହାତକୁ ନେଲେ ଏବଂ ତାଙ୍କୁ ନାଗପୁରଠାରେ ଶିକ୍ଷା ଦେବାର ବ୍ୟବସ୍ଥା କଲେ । ଇତି ମଧ୍ୟରେ କୋଟ୍ ଅଫ୍ ୱାର୍ଡସ୍ ବଳରେ ପାଟଣା ରାଜଧାନୀକୁ ବଲାଙ୍ଗିରକୁ ସ୍ଥାନାନ୍ତର କରିନେଇ ସାରିଥିଲେ । ବଲାଙ୍ଗିର, ସମ୍ବଲପୁର, ସୋନପୁର, ଟିଟିଲାଗଡ ସହ ଗମନାଗମନର ସୁବିଧାଜନକ ସ୍ଥାନରେ ଅବସ୍ଥିତ ଥିବାରୁ ସେହି ପଦକ୍ଷେପ ଇଂରେଜମାନେ ନେଇଥିଲେ ବୋଲି କୁହାଯାଏ । ପରେ ସେମାନେ ତୃତୀୟ ରାମଚନ୍ଦ୍ର ଦେବଙ୍କର ଶିକ୍ଷା ଅଧାରୁ ରଖି ତାଙ୍କୁ ପୁଣି ପାଟଣାରାଜ୍ୟର ସ୍ଥାନାନ୍ତରିତ ରାଜଧାନୀ ବଲାଙ୍ଗିରଠାରେ ଅଭିଷେକ କରି ନୂତନ ରାଜା ରୂପେ ଦାୟିତ୍ୱ ନାମକୁ ମାତ୍ର ଅର୍ପଣ କଲେ । ୧୮୯୩ରେ ପୃଥ୍ୱୀରାଜ ଦେବ ପାଟଣାରାଜ୍ୟର ନାମକୁ ମାତ୍ର ରାଜା ହୋଇ ଶାସନ କଲେ ।



ତେଣୁ ଖ୍ରୀ:ପୂ: ପ୍ରଥମ ଶତାବ୍ଦୀରେ ନିର୍ମିତ ପାଟଣାଗଡର ରାଜ୍ୟର ରାଜଧାନୀ ସବୁ ଦିନ ପାଇଁ ବଲାଙ୍ଗିର ଚାଲିଯିବାରୁ ଏହି ପଶ୍ଚିମ ଓଡ଼ିଶାର ପ୍ରାଚୀନତମ ସହରଟି ଶ୍ରୀହୀନ ହୋଇ ପଡିଲା । ଗଡଟି ଉଜୁଡି ଗଲା । ମାଟି ଓ ସାଧାରଣ କଚ୍ଚା ଇଟାରେ ନିର୍ମିତ ରାଜପ୍ରାସାଦ ଓ ରାଣୀଅନ୍ତପୁର ରକ୍ଷଣାବେକ୍ଷଣ ଅଭାବରୁ ପରିତ୍ୟକ୍ତ ହୋଇ ଭୁଷୁଡି ପଡିଲା ଏବଂ ମାଟିଗଦାରେ ପରିଣତ ହୋଇଗଲା । କିନ୍ତୁ ପୋଡାଇଟାରେ ନିର୍ମିତ ରାଜ ପ୍ରାସାଦର ମୂଳଦୁଆ ଏବେ ମଧ୍ୟ ସ୍ପଷ୍ଟ ବାରି ହୁଏ । ଛପନସାଲର ଦୁର୍ଭିକ୍ଷବେଳେ କଟଙ୍ଗ ବାଉଁଶଗଛରେ ଫଳ ଫଳି ତାହା ମରି ଯାଇଥିଲା । ଖାଇଟି ବିଭିନ୍ନ ପ୍ରଜାଙ୍କ ଦ୍ୱାରା କୃଷି କ୍ଷେତ୍ରରେ ପରିଣତ ହେଲା । ଯନ୍ତ୍ର ଆକୃତିରେ ନିମିତ ଏହି ଗଡଟି ଶ୍ରୀହୀନ ହୋଇ ପଡିବାର ସୁଯୋଗ ନେଇ କେତେ ଜଣ ବୁଦ୍ଧିଜୀବି କୌଶଳ କ୍ରମେ ଗଡ ମଧ୍ୟସ୍ଥ ଜମିକୁ ନିଜ ଅକ୍ତିଆର ଭୁକ୍ତ କରିଥିବା ଅବଶ୍ୟ ଦୁଃଖଦ ଓ ଅପ୍ରୀୟ ସତ୍ୟ ହେଲେ ମଧ୍ୟ ଏହି ଘଟଣା ପବିତ୍ର ଗଡର ଏକ ଐତିହାସିକତାକୁ ବିଦ୍ରୂପ କଲାପରି ମନେହୁଏ ? ତେଣୁ କେଉଁ ଘଟଣକ୍ରମରେ ଏତେ ପ୍ରାଚୀନ ଗଡର ସ୍ୱତ୍ତାଧିକାର ସେହି ନ୍ୟସ୍ତ ସ୍ୱାର୍ଥୀଙ୍କ ହାତକୁ ଚାଲିଗଲା, ଏ କଥାର ହିସାବ ନିକାଶର ମାର୍ଗ ଦର୍ଶନ କିଏ ଦେବ ? ? ?





# କୁଆଁରୀ ପାଟଣା

ଖ୍ରୀ:ପୂ: ୫୪ ପୂର୍ବରୁ କଳିଙ୍ଗରେ ସୂର୍ଯ୍ୟ ବଂଶର ରାଜାମାନେ ଶାସନ କରୁଥିଲେ । ସେତେବେଳେ କୋଶଳ ମଧ ତାଙ୍କର ଶାସନାଧୀନ ଥିଲା । ସେହି ସୂର୍ଯ୍ୟବଂଶର ଜଣେ ରାଜା ମାଧବଚନ୍ଦ୍ର ଦେବ କଳିଙ୍ଗର କେନ୍ଦ୍ରୀୟ ରାଜଧାନୀକୁ 'ତୋଷଳା' (ଆଧୁନିକ ତୁଷୁରା) କୁ ଉଠାଇ ଆଣିଥିଲେ ବୋଲି ୰ ରାମଚନ୍ଦ୍ର ମଲ୍ଲିକଙ୍କର "କୋଶଳ ଇତିହାସ" କହେ । ପରେ ଶ୍ରୀ ଦେବ ହଠାତ୍ ତୋଷଳାରୁ କାମାନ୍ତପୁରକୁ କୋଶଳର ରାଜଧାନୀ ଉଠାଇଆଣିଥିଲେ ।

ସେତେବେଳେ କାମାନ୍ତପୁର ଏକ କ୍ଷୁଦ୍ର ଗ୍ରାମ ବିଶେଷ ଥିଲା । କିନ୍ତୁ ଏହାରଏକ ପଟରେ ମାୟାବତୀ ଓ ଅନ୍ୟ ପଟରେ ସୁବର୍ଣ୍ଣରେଖା ପ୍ରବାହିତ ହୋଇ ଏହାର ଅନତି ଦୂରରେ ମିଳିତ ହୋଇ ଏହାକୁ ଅଭେଦ୍ୟ କରିବାରେ ସହାୟକ ଥିବାରୁ ହିଁ ରାଜଧାନୀକୁ ହଠାତ୍ ଏହି ସ୍ଥାନକୁ ଉଠାଇଥିଲେ । କାମାନ୍ତପୁର କୁ ହଠାତ୍ ରାଜଧାନୀ ପରିବର୍ତ୍ତନ ବା ପତିତ ହୋଇଥିବାରୁ ଏହାର ନାମ ପତ୍ତନଗଡ ହେଲା, ଯାହାକି ପରବର୍ତ୍ତୀ ଦିନରେ ଅପଭ୍ରଂଶ ହୋଇ ପାଟଣାଗଡରେ ରୂପାନ୍ତରିତ ହୋଇଛି । ଏଠାକାର ଅଧିଷ୍ଠାତ୍ରୀ ଦେବୀ ପତ୍ତନେଶ୍ୱରୀ ହେଲେ ଓ ସ୍ଥାନର ନାମ ପରିବର୍ତ୍ତନ କ୍ରମେ ପାଟଣେଶ୍ୱରୀ ହେଲେ ।

ଏକଦା ଏଠାରେ ଜଣେ କଣ୍ଡରା (ମାହାର) ଜାତିର ରାଜା ରାଜୁତି କରୁଥିଲେ । ସେ ରାଜାହୋଇ ମଧ ସ୍ୱଜାତୀୟ ବୃତ୍ତିକରି ଜୀବିକା ଉପାର୍ଜନ କରୁଥିଲେ । ସେ ଜଣେ ସାଧକ ମଧ ଥିଲେ । କାମଚଣ୍ଡୀ ଦେବୀଙ୍କୁ ଆରାଧନା କରୁଥିଲେ । ତନ୍ତ୍ର ଓ ମନ୍ତ୍ରରେ ସିଦ୍ଧି ଲାଭ କରିଥିଲେ ଓ ଯାଦୁ ବିଦ୍ୟାରେ ପାରଙ୍ଗମ ଥିଲେ ।

ସେତେବେଳେ ଏଠାରେ ଆଚଣ୍ଡାଳ ବ୍ରାହ୍ମଣ ସ୍ତ୍ରୀ-ପୁରୁଷ ନିର୍ବିଶେଷରେ ଏପରିକି ରାଜା ମଧ ଯାଦୁବିଦ୍ୟା ପ୍ରତି ଆଗ୍ରହ ରଖୁ ଥିଲେ ଓ ସାଧନା କରୁଥିଲେ।



ଏବଂ ସେହିଭଳି ପରିସ୍ଥିତିରେ ପାଟଣା ରାଜ୍ୟରେ ସାତଜଣ ଅବିବାହିତା (କୁଆଁରୀ) ଯୁବତୀ ସାମଗ୍ରୀକ ଭାବେ ସାଧନାରତ ଥିଲେ । ସେମାନେ ବିଭିନ୍ନ ଜାତିର ଥିଲେ ଏବଂ କାମଚଣ୍ଡୀ ଦେବୀଙ୍କୁ କଠୋର ସାଧନା କରି ସିଦ୍ଧିଲାଭ କରି ଅସମ୍ଭବକୁ ସମ୍ଭବ କରିପାରୁଥିଲେ ବୋଲି ଇତିହାସ ଓ ଜନମୁଖ ସାକ୍ଷ୍ୟ ଦିଏ । ସେମାନେ ଥିଲେ ମଦନା (ଜ୍ଞାନଦେଇ) ମାଲୁଣୀ, ନିତେଇ ଧୋବଣୀ, ଲୁହୁରକୁଟୀ ଲୁହୁରୁଣୀ, ସୁକୁଟୀ ଚମାରୁଣୀ, ପତ୍ରପିନ୍ଧି ଶଉରୁଣୀ, ଗାଙ୍ଗୀ ଗଉଡୁଣୀ ଓ ଶୁଆ ତେଲୁଣୀ । ଏମାନଙ୍କର ମଧ୍ୟରେ ମଦନା ବୟସ୍କା ଥିଲେ ଓ ସାଧନା ବିଦ୍ୟାରେ ବଳୀୟାନ ଥିଲେ ।

ପ୍ରତ୍ୟହ ସୂର୍ଯ୍ୟୋଦୟ ପୂର୍ବରୁ ପାଟଣାଗଡ ଠାରୁ ପ୍ରାୟ ୪ କି.ମି. ଉତ୍ତରରେ ଅବସ୍ଥିତ 'ଛୁଆଲି ଉଦର' ନାମକ ଏକ ସ୍ଥାନକୁ ଯାଇ ସାଧନା କରୁଥିଲେ । ଭୂମିଠାରୁ ପ୍ରାୟ ଏକ ଫୁଟ ଉଚ୍ଚରେ ଶୂନ୍ୟରେ ରହି ବା ବସି ସାଧନା କରୁଥିବାର ଶୁଣାଯାଏ । ପ୍ରାୟ ଦୁଇ ପ୍ରହର ବେଳେ ସେମାନେ ସାଧନା ସାରି ଘରକୁ ଫେରୁଥିଲେ । ଲୋକଙ୍କ ଧାରଣାକୁ ବିକେନ୍ଦ୍ରୀତ କରିବା ପାଇଁ ସେମାନେ ଫେରିବା ବେଳେ କାଠି ପତ୍ର ଓ କାଠ ବୋହି ଆସୁଥିଲେ । ଯେହେତୁ ଏହି ସାତଜଣଙ୍କର କୁଆଁରୀ ବିଦ୍ୟାରେ ପାଟଣା ସେତେବେଳେ ସମଗ୍ର ଭାରତ ବର୍ଷରେ ପରିଚିତ ହୋଇଥିଲା ଏବଂ ଏହି ସମସ୍ତେ କୁଆଁରୀ କନ୍ୟା ଥିଲେ, ତେଣୁ ପାଟଣାଗଡର ଅନ୍ୟନାମ କୁଆଁରୀ ପାଟଣା ହେଲା । କାଉଁରୀ ବିଦ୍ୟାରେ ପାରଙ୍ଗମ ଥିବା କୁଆଁରୀ ମାନଙ୍କର ବାସସ୍ଥଳୀ କୁ କୁଆଁରୀପାଟଣା କହିଲେ ।

ପୁଣି ପରବର୍ତ୍ତୀ ସମୟରେ ସମଲେଶ୍ୱରୀ ଓ ପାଟଣେଶ୍ୱରୀ ଦେବୀ ମନୁଷ୍ୟ ଦେହରେ ବିଜେ କରାଇବାକୁ ଏକ କୁଆଁରୀ (ପୁରୁଷ) ଯୁବକ ର ଆବଶ୍ୟକ ପଡୁଥିଲା । ସେହି ଅଖ୍ୟାନ ପାଇଁ ହିଁ ଏହାର ନାମ କୁଆଁରୀ ପାଟଣା ହୋଇଛି ବୋଲି ମଧ୍ୟ କୁହାଯାଏ । ସେ ଯାହାହେଉ, ପାଟଣାରେ ଅବିବାହିତ ପୁରୁଷ ଓ ସ୍ତ୍ରୀ ଙ୍କର ମର୍ଯ୍ୟଦା ଅତୀତରେ ଯଥେଷ୍ଟ ଥିଲା । ତେଣୁ ଏହାକୁ କୁଆଁରୀପାଟଣା କହିବା ସର୍ବଥା ଯଥାର୍ଥ ଅଟେ ।



କେବଳ କୁଆଁରୀ କନ୍ୟା କାହିଁକି, ଯୁବକ ମାନେ ମଧ୍ୟ ସାଧନା ବିଦ୍ୟାରେ ଆଗ୍ରହ ରଖୁଥିଲେ ଓ ସାଧନା କରୁଥିଲେ । ବୈାଦ୍ଧ ତାନ୍ତ୍ରିକ ମାନଙ୍କର ପ୍ରଭାବରୁ ଏହି ତନ୍ତ୍ର ବିଦ୍ୟାର କଳା ଏହି ସ୍ଥାନର ଜନତାଙ୍କୁ ଅଧିକ ଆକର୍ଷିତ କଲା ବୋଲି କହିବା ବାହୁଲ୍ୟ ହେବ । ସେତେବେଳେ କୋଶଳରେ ବୌଦ୍ଧ ତାନ୍ତ୍ରିକ ମାନଙ୍କର ପ୍ରାଧାନ୍ୟ ଥିଲା । ବୌଦ୍ଧ ଧର୍ମର ମୂଳ ଲକ୍ଷ୍ୟରୁ ବିଚ୍ୟୁତ ହୋଇ ସାରିଥିବା ତାନ୍ତ୍ରିକ ବୌଦ୍ଧମାନେ ଏହି ପ୍ରକାର ବିଦ୍ୟା ପ୍ରତି ଅଧିକ ଆକୃଷ୍ଟ ହୋଇ ଜନତାଙ୍କୁ ଚକିତ କରୁଥିଲେ, ପୁଣି ଯାଦୁକରୀ ଶକ୍ତିର ଚମତ୍କାରିତା ପ୍ରଦର୍ଶନ ଏକ ବାହାନା ମଧ୍ୟ ଥିଲା । ଯିଏ ଯେତେ ଏହି ବିଦ୍ୟାର ଚମତ୍କାରିତା ଲୋକଙ୍କୁ ପ୍ରଦର୍ଶନ କରି ପାରିଲା ସମାଜରେ ତା'ର ସେତେ ଆଦର ମଧ୍ୟ ବଢୁଥିଲା । କେତେଜଣଙ୍କର ତାହା ହିଁ ଆଧାର ଥିଲା । ଏବଂ ଏହି ବିଦ୍ୟାକୁ ଜନମଙ୍ଗଳ କାର୍ଯ୍ୟରେ ବିନିଯୋଗ କରିବାର ଅନେକେ ସିଦ୍ଧାନ୍ତ ମଧ୍ୟ ନେଇଥିଲେ । ସେହି ଜନସେବା ମନୋଭାବ ପୋଷଣକାରୀଙ୍କ ମଧ୍ୟରେ ସପ୍ତସଖୀ ଅନ୍ୟତମ ଥିଲେ । ସେମାନେ ସାଧନା ମାଧ୍ୟମରେ ଲବ୍ଧ ଜ୍ଞାନ ଓ ଶକ୍ତିକୁ ଜନ ସେବାରେ ବିନିଯୋଗ କରିବାର ସିଦ୍ଧାନ୍ତ ନେଇ ପାରସ୍ପରିକ ବୁଝାମଣା ଓ ସହଯୋଗରେ ଅନ୍ୟର ଆକ୍ଷେପୋକ୍ତି ପ୍ରତି ଭ୍ରୂକ୍ଷେପ ନ କରି ଏହାକୁ ନିଜର କର୍ତ୍ତବ୍ୟ ମନେ କରି ଚାଲୁଥିଲେ ।

ଝିଅ ଶାଶୁଘରକୁ ଯିବ ଆଗରୁ ଏବଂ ଯୁବକମାନେ ବିବାହ କରିବା ପୂର୍ବରୁ ସ୍ୱତନ୍ତ୍ର ଭାବରେ କିମ୍ବା ସାମୁହିକ ଭାବରେ ବୌଦ୍ଧ ତାନ୍ତ୍ରିକଙ୍କୁ କିମ୍ବା ସେମାନଙ୍କଠାରୁ ଲବ୍ଧ ତନ୍ତ୍ରରେ ସିଦ୍ଧିଲାଭ କରିସାରିଥିବା ବ୍ୟକ୍ତି (ଗୁରୁ)ଙ୍କ ଠାରୁ ଏହି ବିଦ୍ୟା ଶିଖୁଥିଲେ । ଅନେକ ଗୁରୁ ଏହାକୁ ନିଜର ପେଷା ରୂପେ ମଧ୍ୟ ବାଛି ନେଉଥିଲେ । ଚମତ୍କାରୀ ଅଦୃଶ୍ୟ ବିଦ୍ୟାର ପ୍ରୟୋଗ କରି ଜଣେ ଅନ୍ୟଠାରୁ ନିଜର ଶ୍ରେଷ୍ଠତା ପ୍ରଦର୍ଶନ କରିବାକୁ ଚେଷ୍ଟିତ ହେଉଥିଲା । ତେବେ ସାମଗ୍ରିକ ଭାବରେ ଯୁବକ ଯୁବତୀଙ୍କର ଏହି ବିଦ୍ୟାପ୍ରତି ଆକର୍ଷଣ ଓ ଶ୍ରଦ୍ଧାର ପ୍ରଚାର ଦୂର ଦୂରାନ୍ତକୁ ବ୍ୟାପିଯିବା ଫଳରେ ବାହାରେ ଭ୍ରୂକୁଞ୍ଚନ ହେବା ସ୍ୱାଭାବିକ । ଯେହେତୁ ଅବସ୍ଥା ଚକ୍ରରେ ପଡି କିମ୍ବା ପ୍ରାପ୍ତ ବୟସରେ ହିଁ ଏହି ପ୍ରକାର ବିଦ୍ୟାରେ ଲୋକେ ପାଦ ଦେଇଥାନ୍ତି କିନ୍ତୁ ପାଟଣାର ଅବିବାହିତ ଯୁବକ ଯୁବତୀଙ୍କର ଏଥିପ୍ରତି ଆକର୍ଷଣ ଓ ନିମଗ୍ନ ହେବା ଏହି ମାଟିକୁ କୁଆଁରୀ ପାଟଣା କରହିବାରେ ଭୁଲିଲା ନାହିଁ ।



କୁଆଁରୀ କନ୍ୟାମାନେ ଯୁବକ ମାନଙ୍କ ଠାରୁ ପଛରେ ନ ପଡି ପାଦେ ଆଗୁଆ ଥିବାର କିମ୍ବଦନ୍ତୀ ଓ ଜନମୁଖରୁ ଜଣାଯାଏ । ଭବାନୀପାଟଣାରେ ଯେପର ନାରୀ ମାନଙ୍କର ବା ବିବାହିତା ସ୍ତ୍ରୀ ମାନଙ୍କର ଏହି ଗୁପ୍ତ ସାଧନାରେ ସିଦ୍ଧି ଥିବାର ଶୁଣାଯାଏ , ପାଟଣାରେ ସେହିପରି କୁମାର-କୁମାରୀ ମାନଙ୍କର ପ୍ରାଧାନ୍ୟ ଅନସ୍ୱୀକାର୍ଯ୍ୟ ଥିଲା । ଅବିବାହିତ ସାଧକଙ୍କର ସଂଖ୍ୟା ପାଟଣାରାଜ୍ୟରେ ଶତକଡା ଶହେ ପ୍ରାୟ ଥିଲା, ବିଶେଷକରି ଏହି ରାଜ୍ୟର ରାଜଧାନୀ ପାଟଣା (କାମାନ୍ତପୁର) ରେ ଅଧିକ ଥିବାରୁ ଏହାକୁ କୁଆଁରୀ ପାଟଣା ମଧ କୁହାଯାଉଥିଲା ।

ବୟସ୍କ ସାଧକ ମାନେ ସେମାନଙ୍କର ସାଧନାରେ ଲବ୍ଧ ମନ୍ତ୍ର ଶକ୍ତିର ପ୍ରୟୋଗ କଲାବେଳେ ଅନେକ ଭାବୁ ଥିଲେ ଏବଂ ହିତାହିତ ଓ ଆଗପଛ ଅନେକ କଥାପ୍ରତି ଧ୍ୟାନ ଦେଉଥିଲେ । ସେମାନେ ସମୟ ସମୟରେ ମନ୍ତଶକ୍ତିର ଉଦ୍ଦେଶ୍ୟର ପଟିପନ୍ଥି କାର୍ଯ୍ୟ ମଧ କରୁଥିଲେ । ବିଶେଷକରି ବୟସ୍କମାନେ ସ୍ୱାର୍ଥନ୍ୱେଷୀ ଥିଲେ । କିନ୍ତୁ ଯୁବକ ଯୁବତୀମାନେ ସେବା ମନୋଭାବ କେନ୍ଦ୍ରୀକ ଭାବଧାରାରେ ଉଦ୍‌ବୁଦ୍ଧ ହୋଇ ମନ୍ତ୍ରଶକ୍ତିର ପ୍ରୟୋଗ କରୁଥିଲେ । ଅବିବାହିତ ଯୁବକ ଯୁବତୀ ବସୁଦୈବ କୁଟୁମ୍ବକମ୍ ଚିନ୍ତାରେ ପ୍ରାୟ ବିଶ୍ୱାସ ରଖନ୍ତି କାରଣ ନିଜସ୍ୱ ପରିବାରିକ ସ୍ୱାର୍ଥରେ ସେ ନିମଜ୍ଜିଯାଇ ନଥାନ୍ତି । ତେଣୁ ସହି ଯୁବକ ଯୁବତୀ ମାନଙ୍କର ପ୍ରାଧାନ୍ୟ ଅଧିକ ରହୁଥିଲା । ଏହି ମାନଙ୍କର ମନ୍ତ୍ରଶକ୍ତି ଜନସେବା ଭିତ୍ତିକ ଥାଇ ଜନକଲ୍ୟାଣରେ ବିନିଯୋଗ ଥିବାରୁ ସମଗ୍ର ଭାରତ ବର୍ଷରେ ଏଠାକାର ଯୁବକ ଯୁବତୀ ମାନଙ୍କର ମନ୍ତ୍ରଶକ୍ତି ସାଧନାର ଡିଣ୍ଡିମ ବାଜୁଥିଲା ବୋଲି ଏହାକୁ କୁଆଁରୀ ପାଟଣା ବୋଲି ଅଭିହିତ ମଧ କରାଗଲା ।

ଏବଂ ବିଶେଷ କରି ଏହି ମନ୍ତ୍ରଶକ୍ତି କୌମାର୍ଯ୍ୟ ଅବସ୍ଥାରେ ହିଁ ସାଧନା କରିବାର ବିଧିଥିଲା । ଏହି ବିଦ୍ୟା ଶିକ୍ଷା ବେଳେ ବା ସାଧନା ଆରମ୍ଭ ବେଳେ ବ୍ରାହ୍ମଚର୍ଯ୍ୟ ଅନିବାର୍ଯ୍ୟ ଥଲା । ବିବାହର ପୂର୍ବରୁ ଏହି ବିଦ୍ୟା ଶିକ୍ଷା ସମସ୍ତେ କରୁଥିଲେ ବା ଏହା ଏକ ସାମାଜିକ ରୀତି ଥିଲା । ଆଚଣ୍ଡାଳ ବ୍ରାହ୍ମଣ ଏହି ବିଦ୍ୟାରେ ପାରଙ୍ଗମ ଥିଲେ । ସେତେବେଳେ ଏଠାରେ ଜାତିଭେଦ ବିଚାର କରାଯାଉ ନ ଥିଲା । କାରଣ ସପ୍ତସଖୀଙ୍କୁ ବିଚାର କଲାବେଳେ ଆଗେ ଏହି ସିଦ୍ଧାନ୍ତରେ ଉପନୀତ ହେବା ଯେ ସେମାନେ ଭିନ୍ନ ଭିନ୍ନ ଜାତୀର କୁଆଁରୀ



କନ୍ୟାଥିଲେ, ଏକାଠି ସାଧନା କରୁଥିଲେ ଏବଂ ବିନା ଦ୍ୱିଧାରେ ଏକତ୍ରିତ ହୋଇ ଜ୍ଞାନଦେଇଙ୍କୁ ଜ୍ୟେଷ୍ଠା ରୂପେ ସ୍ୱୀକାରି ଥିଲେ । ତେଣୁ ଏଠାକାର ପ୍ରତ୍ୟେକ କୁଆଁରୀ କନ୍ୟା (ଯୁବକ ମଧ) ଜାତିଭେଦ ଉପରେ କୌଣସି ଗୁରୁତ୍ୱ ନ ଦେଇ ସାଧନ ମାର୍ଗରେ ଅଗ୍ରସର ହୋଇ ସିଦ୍ଧିଲାଭ ଲକ୍ଷ୍ୟରେ ଆଗେଇ ଆସୁଥିଲା । ସାଧନାର ମାର୍ଗ କଣ୍ଟକମୟ ଥାଏ । ଏହି କଣ୍ଟାଯୁକ୍ତ ମାର୍ଗ ହିଁ ସାଧକ ନିମିତ୍ତ ପରୀକ୍ଷା ସ୍ଥଳୀ ଅଟେ । ସେହି ପରିପ୍ରେକ୍ଷୀରେ ସାଧକର ସାଧନା ପଥରେ ଅନେକ ବାଧା ବିଘ୍ନ ଆସୁଥିଲା ବୋଲି ବ୍ରହ୍ମଚର୍ଯ୍ୟ ଅବସ୍ଥାରେ ହିଁ ଶିକ୍ଷା କରୁଥିଲେ । କାରଣ ସାଧନା ବେଳେ ଅନେକଙ୍କୁ ମୃତ୍ୟୁମୁଖ ପର୍ଯ୍ୟନ୍ତ ସ୍ପର୍ଶ କରିବାକୁ ପଡୁଥିଲା ଏବଂ ବୟସ୍କ ବିବାହିତ କ୍ଷେତ୍ରରେ ପାରିବାରିକ ଚିନ୍ତା ହିଁ ରହୁଥିଲା । ସୁତରାଂ ଅବିବାହିତ ସମୟ ହିଁ ପ୍ରଶସ୍ତ ଓ ଉତ୍କୃଷ୍ଟ ସମୟ ବୋଲି ନିର୍ଣ୍ଣିତ ହୋଇ ଥାଏ ।

ତେବେ ପ୍ରଶ୍ନ ଉଠେ, ପାଟଣାରେ ହିଁ ଏହି ବିଦ୍ୟାକୁ କାହିଁକି ପ୍ରାଧାନ୍ୟ ଦିଆଯାଇ ଥିଲା ? ଏହାର ଉତ୍ତରରେ ଏତିକି ଅନୁମାନ କରାଯାଇ ପାରେ ଯେ, ତାତ୍କାଳିକ ସମାଜର ଆବଶ୍ୟକତାକୁ ଆଖି ଆଗରେ ରଖି ଓ ସମଗ୍ର ଭାରତ ବର୍ଷରେ ବୌଦ୍ଧ ତାନ୍ତ୍ରୀକଙ୍କର ତନ୍ତ୍ର ସାଧାନାରେ ବହୁଳତାକୁ ତାଳ ଦେଇ ଚଳିବା ପାଇଁ ବିଶେଷ ଧ୍ୟାନ ଦିଆ ଯାଇଥିଲା । ତନ୍ତ୍ରର ପ୍ରବଳତା ହିଁ ବୌଦ୍ଧ ତାନ୍ତ୍ରିକଙ୍କର ଅସ୍ତ୍ର ଥିଲା, ସମାଜକୁ ଭୟ ସଞ୍ଚାର କରିବାର ଆଧାର ଥିଲା ଏବଂ ଉଦ୍ଦେଶ୍ୟ ମଧ ଥିଲା ଯାହାକି ଏଠାକାର କୁମାରୀଙ୍କୁ ଜନ୍ମଭୂମିର ମର୍ଯ୍ୟାଦା ରକ୍ଷା ଏବଂ ମର୍ଯ୍ୟାଦାଯୁକ୍ତ ଭାବରେ ଆତ୍ମରକ୍ଷାର ସର୍ବୋତ୍କୃଷ୍ଟ ମାଧମ ରୂପେ ବାଛି ନେବାକୁ ବାଧ କରିଥିଲା

କୁମାରୀମାନେ ଶାଶୁଘରକୁ ଯିବା ଆଗରୁ ଏହି ବିଦ୍ୟା ଶିକ୍ଷା କରିବାକୁ ବାଧ ହେଉଥିଲେ ବୋଲି କହିବାରେ ଏତିକି କୁହାଯାଇ ପାରେ ଯେ ସେମାନେ ଘରେ ବାହାରେ ପ୍ରତ୍ୟେକ କ୍ଷେତ୍ରରେ ବୌଦ୍ଧ ତାନ୍ତ୍ରିକ ଓ ଅନ୍ୟାନ୍ୟ ବୟସ୍କ ତାନ୍ତ୍ରିକଙ୍କର ଶିକାର ହେବାକୁ ନିଜକୁ ସୁରକ୍ଷିତ ରଖି ପାରିବେ, ପୁଣି ସେତେବେଳେ ଶାକ୍ତ ଓ ବୌଦ୍ଧ ମାନଙ୍କର ଶୀତଳ ଯୁଦ୍ଧରେ ନିଜକୁ ସୁରକ୍ଷିତ ରଖିବାର ଅବଲମ୍ବନ ସଙ୍ଗରେ ରଖି ଚଳିବାକୁ ସିଦ୍ଧାନ୍ତ ନେଉଥିଲେ ।

ପତ୍ତନେଶ୍ୱରୀ ଦେବୀଙ୍କୁ ବୁଠିକୁଢ଼େଇ ଜଙ୍ଗଲ ମଧରୁ ବରୁଆ ଦେହରେ ବିଜେ କରାଇ ଆଣିବାକୁ ପଡୁଥିଲା ଏବଂ ସେହି ବରୁଆ ଜଣେ କୁମାରୀ (ଯୁବକ)



ହିଁ ହେଉଥିଲା, କୁଆଁରୀ (ଯୁବକ) ଦେହରେ ମାଁ ବନଦୁର୍ଗା (ପତ୍ତନେଶ୍ୱରୀ ବିଜେକରି ଆସୁଥିଲେ ବୋଲି ମଧ ଏହି କ୍ଷେତ୍ରକୁ କୁଆଁରୀ ପାଟଣା କୁହାଯାଉ ଥିଲା ବୋଲି ଅନେକେ ଅବିହିତ କରିଥାନ୍ତି ।

ସୁତରାଂ ପତ୍ତନଗଡ ବା ପାଟଣାକୁ କୁଆଁରୀ ପାଟଣା କହିବାରେ ଅନ୍ୟମତ ସହିତ ଉଲ୍ଲିଖିତ ମତାମତକୁ ଅବହେଳା ଆଦୌ କରାଯାଇ ନ ପାରେ । ଅଧିକନ୍ତୁ ଏହି ପାଟଣା ଯେ କୁଆଁରୀଙ୍କର ପ୍ରଧାନ୍ୟର ମର୍ଯ୍ୟାଦାକୁ ଯୁଗେ ଯୁଗେ ଦେଇ ଆସିଥିଲା ବୋଲି ପାଟଣା ନାମରେ ସମଗ୍ର ଭାରତ ବର୍ଷରେ ଏକ ସ୍ୱତନ୍ତ୍ର ସ୍ଥାନ ରଖିବାରେ ସକ୍ଷମ ହୋଇ ଥିଲା ।





# ପଦ୍ମାବତୀ ରାଣୀ

## "ପଦ୍ମାବତୀରାଣୀ, ପଦ୍ମ ପତ୍ରେ ଗଲି, ଆଣୁଥିଲେ ପାଣି"

ତନ୍ତ୍ର ମନ୍ତ୍ର ଓ ଯୋଗରେ ସମଗ୍ର ଭାରତ ବର୍ଷରେ ପ୍ରସିଦ୍ଧି ଲାଭ କରିଥିବା କୁଆଁରୀ ପାଟଣା ବିଷୟରେ ଆପଣ ମାନେ ଯତ୍ କିଞ୍ଚିତ୍ ଅବଗତ ହୋଇ ଛନ୍ତି । କେବଳ କୁମାରୀ ମାନେ ନୁହନ୍ତି ଆବାଳ ବୃଦ୍ଧ ବନିତା ଏପରିକି ରାଜକର୍ମଚାରୀ ଓ ଖୋଦ୍ ରାଜା ମଧ ଏହି ବିଦ୍ୟା ରେ ଧୂରନ୍ଧର ଥିଲେ ଓ ଆଗ୍ରହ ରଖୁଥିଲେ । ସେହିପରି ଜଣେ ରାଜାଙ୍କର କୋଶଳ ଇତିହାସରେ ବଖାଣି ଥିବା କାହାଣୀ ଶୁଣି ଆପଣ ମାନେ ମନୋରଞ୍ଜନ କରିବା ଉଚିତମନେ କରେଁ ।

ସାପୁଆକେଳା ମାନେ ପଦ୍ମାବତୀରାଣୀଙ୍କ ନାମରେ ତାଙ୍କ ସାପଖେଳା ମନ୍ତ୍ରରେ ଉଚ୍ଚାରଣ କରିଥାନ୍ତି । ପଦ୍ମାବତୀ ରାଣୀଙ୍କର ସାପ ସହ ଯାହା ସଂପର୍କ ଥାଉ ନା କାହିଁକି ସେ ମହାକାଳୀଙ୍କର ଅନ୍ୟ ଏକ ଅବତାର "ଲଘିମା"ଙ୍କୁ ସେବି ମନ୍ତ୍ରଶକ୍ତିର ଅଧିକାରିଣୀ ହୋଇ ପାରିଥିଲେ । ତାଙ୍କର ଯୋଗ ସାଧନା ସତ୍ୟ ଉପରେ ଆଧାରିତ ଥିଲା । ସେବା ମନୋଭାବ ନେଇ ଧର୍ମ ଆଚରଣ କରି ହିଁ ଲଘିମାଙ୍କର ବିଦ୍ୟାକୁ ଆୟତ୍ତ କରି ଥିଲେ । ସାମାନ୍ୟ ବ୍ୟତିକ୍ରମ ଜନିତ ବିଚ୍ୟୁତିରେ ପଦ୍ମାବତୀଙ୍କର ସାଧନା କିପରି ତାଙ୍କୁ ସଚେତନ କରୁଥିଲା, ନିମ୍ନୋକ୍ତ କାହାଣୀରୁ ଜଣାପଡେ -

ଖ୍ରୀ:ପୂ: ୭୪ରେ ପ୍ରତାପ ସେନଙ୍କ ପରେ ଶତ୍ରୁଘାତି କୋଶଳ ରାଜ୍ୟର ସିଂହାସନାରୂଢ ହେଲେ । ସେ ମାୟାବତୀ ଓ ସୁବର୍ଣ୍ଣରେଖା ନଦୀର ମିଳନ ସ୍ଥଳରେ ୫୨ ଖଣ୍ଡ ଗାଁକୁ ମିଶାଇ "ବାବନୀ" ନାମକ ଏକ ରାଜ୍ୟ ସ୍ଥାପନ କଲେ । ଏହି ବାବନୀ ହିଁ ଆଧୁନିକ ପାଟଣାଗଡର ଏକ ଅଂଶ ଅଟେ । ବାବନୀ କାଳର କବଳରେ କୁଆଁରୀପାଟଣା ର ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ହେଲା ଏବଂ ସେଠାକାର ରାଜା ଶତ୍ରୁଘାତି ଜଣେ ସୁଶାସକ ଥିଲେ ବୋଲି କୁହାଯାଏ ।



କିନ୍ତୁ ସେ ଅପୁତ୍ରିକ ଥିବାରୁ ଓ ତାଙ୍କର ଉତ୍ତରାଧିକାରୀ କେହି ନ ଥିବାରୁ ବାବନୀ ରେ ଅରାଜକତା ଦେଖାଦେଲା । ମନ୍ତ୍ରୀ ମାନେ ଯଥେଚ୍ଛାଚରୀ ହୋଇ ଉଠିଲେ । ତାଙ୍କର ଶାସନରେ ପ୍ରଜାଗଣ ଅତିଷ୍ଠ ହେଲେ । ସେତେବେଳେ ଯୋଗ ତନ୍ତ୍ର ମନ୍ତ୍ରରେ ବାବନୀ ଶୀର୍ଷରେ ପହଞ୍ଚି ଥିଲା ।

ମଧୁ ମାହାର ନାମକ ଜନୈକ କଣ୍ଡରା(ମାହାର) ଜାତିର ସାଧକ ମନ୍ତ୍ର ବିଦ୍ୟାରେ ଶକ୍ତିଶାଳୀ ହୋଇ ଉଠିଲେ । ତାଙ୍କ ପତ୍ନୀଙ୍କ ନାମ ପଦ୍ମାବତୀ ଥିଲା । ମଧୁମାହାର ଓ ପଦ୍ମାବତୀ କୌଳିକ (ମାହାର) ବୃତ୍ତିର କୁଲା, ଟୋକେଇ ଇତ୍ୟାଦି ବୁଣି ଜୀବିକା ନିର୍ବାହ କରୁଥିଲେ । ଉଭୟ ପତିପତ୍ନୀ ପୂର୍ବୋକ୍ତ ଇଷ୍ଟମାଙ୍କ ଅନନ୍ୟ ସାଧକ ଭକ୍ତ ଥିଲେ । ମଧୁ ମାହାର ବିରାଟକାୟା ବିଶିଷ୍ଟ ଥିଲେ ଓ ମନ୍ତ୍ରଶକ୍ତି ସହ ଶାରୀରିକ ଶକ୍ତି ଏବଂ ସର୍ବୋପରି ନୈଷ୍ଠିକ ପରୋପକାରିତା ତାଙ୍କୁ ଜନ ପ୍ରିୟତାର ଶୀର୍ଷରେ ପହଞ୍ଚାଇ ଦେଇଥିଲା ।

ମନ୍ତ୍ରୀମାନଙ୍କ ଯଥେଚ୍ଛାଚାର କଥା କେତେଜଣ ବନ୍ଧୁଙ୍କଠାରୁ ମଧୁମାହାର ଶୁଣି ନିଜେ ରାଜା ହୋଇ ବାବନୀକୁ ସୁଶାସନ ଦେବେ ବୋଲି ବନ୍ଧୁମାନଙ୍କୁ ପ୍ରତିଶ୍ରୁତି ଦେଲେ । ପ୍ରତିଶ୍ରୁତି ଅନୁଯାୟୀ ପ୍ରଜାଙ୍କର ସହାୟତା ଓ ସାହାଯ୍ୟ ନେଇ ଅନ୍ୟ ସମସ୍ତ ବିଦ୍ରୋହୀ ମାନଙ୍କୁ ସମ୍ମୋହିତ ଓ କାବୁ କରି ନିଜକୁ ବାବନୀ ବା କୁଆଁରୀ ରାଜ୍ୟର ରାଜା ବୋଲି ଘୋଷଣା କରି ସଫଳ ହେଲେ । ମନ୍ତ୍ରୀଙ୍କର ସମେତ ଅନ୍ୟ ସମସ୍ତେ ତାଙ୍କୁ ରାଜା ରୂପେ ସ୍ୱୀକାର କଲେ ।

ମଧୁ ମାହାର କଣ୍ଡରା (ମାହାର) ବଂଶର ରାଜା ରୂପେ ପରିଗଣିତ ହେଲେ ଓ ରାଜ୍ୟରେ ସୁଶାସନ ଦେଲେ । ପ୍ରଜାବର୍ଗ ନୂତନ ରାଜାଙ୍କ ଶାସନରେ ଅତ୍ୟନ୍ତ ପ୍ରୀତଥିଲେ କିନ୍ତୁ ନିଜର କୌଳିକ ବୃତ୍ତିରେ ଜୀବିକା ନିର୍ବାହ କରିବା ଓ ରାଜକୋଷର ସଂପତ୍ତି ବା ରାଜସ୍ୱକୁ ପ୍ରଜାଙ୍କ ସଂପତ୍ତି ଭାବିବା ତଥା ସେହି ଅର୍ଥ କେବଳ ପ୍ରଜା ହିତରେ ଖର୍ଚ୍ଚ କରିବା ଇତ୍ୟାଦି କାର୍ଯ୍ୟବଳୀକୁ କେତେଜଣ ପସନ୍ଦ କଲେ ନାହିଁ । ରାଜ୍ୟର ରାଜା ରାଣୀ ଶାରୀରିକ ପରିଶ୍ରମ ଲବ୍ଧ ଆୟରେ ଚଳି ପ୍ରଜାଙ୍କର ରାଜସ୍ୱସ୍ପର୍ଶ ନ କରିବା କଥା ସେମାନଙ୍କୁ ଅଡୁଆ ଲାଗିଲା । ସେମାନେ ଇର୍ଷାନ୍ୱିତ ମଧ୍ୟ ହୋଇ ଉଠିଲେ । ତାଙ୍କର ଶାସନରେ ପ୍ରଜାଗଣ ଅତିଷ୍ଠ ହେଲେ ।



ସେତେବେଳେ ଯୋଗ ତନ୍ତ୍ର ମନ୍ତ୍ରରେ ବାବନୀ ଶୀର୍ଷରେ ପହଞ୍ଚି ଥିଲା ।

ଥରେ କେତେଜଣ ରାଜକର୍ମଚାରୀ ଏବଂ ନାଗରିକ ମିଶି ରାଜାଙ୍କ ବିରୁଦ୍ଧରେ ଷଡଯନ୍ତ୍ର କରିବାର ମସୁଧା କଲେ । ଏ କଥା ମନ୍ତ୍ର ବଳରେ ତାଙ୍କୁ ଜ୍ଞାତ ହେଲାରୁ ମୁଠାଏ ଖଡିକାକୁ କଟୁରୀ ସାହାଯ୍ୟରେ ହାଣି ମନ୍ତ୍ରକରି ଦେଲାରୁ ସମସ୍ତ ଷଡଯନ୍ତ୍ରକାରୀ ନିହତ ହେଲେ । ଏହା ଜାଣି ମରି ପଡିଥିବା ବ୍ୟକ୍ତିଙ୍କର ଆତ୍ମୀୟ ସ୍ୱଜନ ମ୍ରିୟମାଣ ହୋଇ ରାଜାଙ୍କଠାରେ କାକୁତି ମିନତି ହେଲେ ଓ ଭବିଷ୍ୟତରେ ଆଉ ରାଜାଙ୍କ ବିରୁଦ୍ଧରେ ନ ଯିବାର ଶପଥ କଲେ । ରାଜା ଦୟା ପରବେଶ ହୋଇ ଜୀବନ୍ୟାସ ମନ୍ତ୍ର ବଳରେ ସମସ୍ତଙ୍କୁ ପୁନଃଜୀବିତ କଲେ ଓ ଶତ୍ରୁ ଦମନ କଲେ । ସେହି ଦିନଠାରୁ ରାଜାଙ୍କ ବିରୁଦ୍ଧରେ ଅନ୍ୟ କୌଣସି ସ୍ୱର ଉଠିବାର ଶୁଣା ଯାଇ ନ ଥିଲା ।

ଥରେ କେତେଜଣ ପାରିଷଦ ରାଜ୍ୟର ଉନ୍ନୟନ ମୂଳକ କାର୍ଯ୍ୟପାଇଁ ପ୍ରଜାଙ୍କ ଠାରୁ ରାଜସ୍ୱ ବୃଦ୍ଧିକର ହିସାବରେ ଗୋଟିଏ ଲେଖାଏଁ ସ୍ୱର୍ଣ୍ଣକଉଡି ଆଦାୟର ରାଜାଙ୍କୁ ପରାମର୍ଶ ଦେଲେ । ରାଜା ସମ୍ମତି ଜଣାଇ ପ୍ରଜାଙ୍କଠାରୁ ସ୍ୱର୍ଣ୍ଣ କଉଡି ଆଦାୟର ଆଦେଶ ଦେଲେ ଓ ତାହା ସଙ୍ଗେ ସଙ୍ଗେ କାର୍ଯ୍ୟକାରୀ ହେଲା ।

ରାଣୀ ପଦ୍ମାବତୀ ଅତ୍ୟନ୍ତ ନୈଷ୍ଠିକା ଥିଲେ । ବ୍ରାହ୍ମ୍ୟ ମୁହୂର୍ତ୍ତରୁ ନିତ୍ୟକର୍ମ ସାରି ଲଘିମାଙ୍କର ଆରାଧନା ନିମିତ୍ତ ପଦ୍ମପତ୍ର ଉପରେ ଚାଲିଚାଲି ନୂତନ ମାଠିଆରେ ଜଳାଶୟର ମଧ୍ୟ ଭାଗସ୍ଥ ଜଳ ଆଣୁଥିଲେ । ସେ ଚାଲିବା ପୂର୍ବରୁ ଲଘିମାଙ୍କୁ ସ୍ମରଣ କରୁଥିଲେ ଓ ପଦ୍ମପତ୍ର ଉପରେ ଚାଲିଯାଇ ଜଳାଶୟର ମଧ୍ୟ ଭାଗସ୍ଥ ଆନୀତ ଜଳ ଦ୍ୱାରା ଲଘିମାଙ୍କର ସ୍ନାନ କରାଇବା ତାଙ୍କର ପ୍ରତ୍ୟହର କାର୍ଯ୍ୟନିର୍ଘଣ୍ଟର ଅନ୍ତର୍ଭୁକ୍ତ ଥିଲା । ଏହାଦ୍ୱାରା ମନ୍ତ୍ର ସିଦ୍ଧି ସାଙ୍ଗକୁ ସେ ଦେବୀ ସାଧନା ମଧ୍ୟ କରି ପାରଥିଲେ । ପରେ କୌଳିକ ବୃତ୍ତି କୁଲା, ଟୋକେଇ ବୁଣିବା କାର୍ଯ୍ୟକରି ଜୀବିକା ଉପାର୍ଜନରେ (ରାଣୀ ହୋଇ ମଧ୍ୟ) ବ୍ୟସ୍ତ ରହୁଥିଲେ । ରାଜାଙ୍କୁ ପାରିବାରିକ ଆୟରେ ସାହାଯ୍ୟ କରୁଥିଲେ ।

କିନ୍ତୁ ଯେଉଁଦିନ ରାଜା ମଧୁମାହାର ଅନ୍ୟମାନଙ୍କର ପ୍ରରୋଚନବାରେ ପ୍ରଜାଙ୍କଠାରୁ ସ୍ୱର୍ଣ୍ଣକଉଡି ଆଦାୟ କରିବା ଆରମ୍ଭ କରିଦେଲେ, ତା'ର ପରଦିନ



ପ୍ରତ୍ୟୁଷରୁ ରାଣୀ ପଦ୍ମାବତୀ ପଦ୍ମପତ୍ର ଉପରେ ଚାଲିବାକୁ ଆରମ୍ଭକଲା ବେଳକୁ ତାଙ୍କ ପାଦ ପଦ୍ମପତ୍ର ସହ ପାଣିରେ ବୁଡିଗଲା । ସେ ଲଘିମାଙ୍କୁ ସ୍ମରଣକରି ଯେତେ ଚାଲିବାକୁ ଚାହିଁଲେ ମଧ ଚାଲି ପାରିଲେ ନାହିଁ । ପଦ୍ମପତ୍ର ବୁଡି ବୁଡି ଗଲା । ରାଣୀ ଭାବିଲେ ରାଜାଙ୍କ ଦ୍ୱାରା ପ୍ରଜାପ୍ରପୀଡନ ମୂଳକ କିମ୍ୱା ପ୍ରଜାପ୍ରତିକୂଳ ସଂର୍ପକୀୟ କିଛି ଅଘଟଣ କାର୍ଯ୍ୟ ସଂପାଦିତ ହୋଇଛି । ସେ ତତ୍‌କ୍ଷଣାତ ରାଜାଙ୍କୁ ଏ ବିଷୟରେ ପଚାରିଲେ ଓ ରାଜା ସ୍ୱର୍ଣ୍ଣ କଉଡି ଅତିରିକ୍ତ ରାଜସ୍ୱ ଆଦାୟ କାରଣ ହୋଇଥିବ ବୋଲି ଜଣାଇଲେ । ରାଣୀ ପଦ୍ମାବତୀ ତତ୍‌କ୍ଷଣାତ ସେହି ବର୍ଦ୍ଧିତ ରାଜସ୍ୱ ପ୍ରତ୍ୟାହାର କରି ଆଦାୟ ହୋଇଥିବା ସ୍ୱର୍ଣ୍ଣ କଉଡି ସଂପୃକ୍ତ ପ୍ରଜାଙ୍କୁ ଫେରସ୍ତ ଦେବାକୁ ରାଜାଙ୍କୁ ଅନୁରୋଧ କଲେ । ଅନୁରୋଧ ସଂଗେ ସଂଗେ ଆଦେଶରେ ପରିଣତ ହେଲା ଓ ବର୍ଦ୍ଧିତ ରାଜସ୍ୱ ପ୍ରତ୍ୟାହୃତ ହେଲା ।

ଏବଂ ରାଣୀ ତା'ର ମୁହୂର୍ତ୍ତରେ ପୂର୍ବବତ୍ ପଦ୍ମପତ୍ର ଉପରେ ଚାଲି ପାଣି ଆଣି ଲଘିମାଙ୍କୁ ସିକ୍ତ କରିବାରେ ସମର୍ଥ ହେଲେ ।

ପଦ୍ମପତ୍ର ଓ ନାଗସାପର ସଂପର୍କରୁ ହେଉ କିମ୍ୱା ପଦ୍ମବତୀ ରାଣୀ ଅନେକ ମନ୍ତ୍ର ଶକ୍ତିର ଅଧିକାରଣୀ ହୋଇ ସେହି ମନ୍ତ୍ରକୁ ସାପୁଆ କେଳାମାନେ ଆୟତ୍ତ କରୁଥିବା କାରଣରୁ ହେଉ, ସାମଗ୍ରିକ ଭାବେ ସମଗ୍ର ଭାରତ ବର୍ଷର ସାପୁଆ କେଳା ମାନେ ମନ୍ତ୍ରସହ ରାଣୀ ପଦ୍ମାବତୀଙ୍କର ନାମୋଚ୍ଚାରଣ କରୁଥିବା ଓ ସେହି ପଦ୍ମାବତୀ ରାଣୀ ଏହି କୁଆଁରୀ ପାଟଣା (ପାଟଣାଗଡ) ର ଅନ୍ତର୍ଭୁକ୍ତ ଏକ କ୍ଷୁଦ୍ର ରାଜ୍ୟ ବାବନୀଗଡର ରାଣୀ ହେତୁ ଆମେ ସମସ୍ତେ ଗର୍ବିତ ।

ବାବନୀଗଡର ଭଗ୍ନାବଶେଷ ଏବେବି ଗନ୍ଧମାର୍ଦ୍ଦନ ପର୍ବତମାଳା ରୁ ଉଙ୍କିମାରି ସାକ୍ଷ୍ୟ ଦେବାକୁ ଚେଷ୍ଟା କରେ । କିନ୍ତୁ ସରକାରୀ ଉଦାସିନତା ଜନିତ କାରଣରୁ ଓ ପ୍ରତ୍ନତାତ୍ତ୍ୱିକ ଅବହେଳା କରଣରୁ ହିଁ ଏହି ପ୍ରାଚୀନ ଗଡ ସମ୍ୱନ୍ଧରେ ଲୋକଲୋଚନକୁ ଅନେକ ଗୁରୁତ୍ୱପୂର୍ଣ୍ଣ ସତ୍ୟ ଆସିପରୁ ନାହିଁ । ତେଣୁ ଗନ୍ଧମାର୍ଦ୍ଦନ ପର୍ବତମାଳା ସ୍ଥିତ ସମସ୍ତ ସତରଟି ଗଡ ( ୭) ବିଷୟରେ ଗବେଷଣା କରି ତତ୍କାଳିନ କୋଶଳ ରାଜ୍ୟର ମହାନତା ଓ ଉନ୍ନତି ସଂସ୍କୃତି ସମ୍ୱନ୍ଧରେ ଆଲୋକକୁ ଅଣା ଯାଇପାରିଲେ ଭାରତ ଇତିହାସର ଅନେକ ଦିଗ ଉଦ୍‌ଘାଟିତ ହେବ ବୋଲି ଆଶା କରାଯାଏ ।





# ସାତ କୁଆଁରୀ

ଖ୍ରୀଷ୍ଟପୂର୍ବ ୫୪ର କଥା । ଦକ୍ଷିଣ ଦେଶ ନିବାସୀ ଜନୈକ ରାଜା ଉତ୍କଳ, ତୋଷଳ, କଳିଙ୍ଗ ଓ କୋଶଳକୁ ଅଧିକାର କଲେ ଏବଂ ମାଧବ ଚନ୍ଦ୍ର ଦେବ ନାମକ ଜଣେ ସାମନ୍ତ ରାଜାଙ୍କୁ ଏହି ବିଶାଳ ଭୂଖଣ୍ଡର ରାଜା କରାଇଲେ । ଏହି ବିଶାଳ ଭୂଖଣ୍ଡକୁ ସେତେବେଳେ ତ୍ରିକଳିଙ୍ଗ କୁହାଯାଉ ଥିଲା । ସେ ଶାସନର ସୁବିଧା ହେବ ଭାବି ଏହି ତ୍ରିକଳିଙ୍ଗର କେନ୍ଦ୍ରୀୟ ରାଜଧାନୀ ତୋଷଳ (ଆଧୁନିକ ତୁଷୁରା) କୁ ଉଠାଇ ଆଣିଲେ । ସେତେବେଳେ ତୋଷଳା କୁ ତେଲନଦୀ ପ୍ରତିବନ୍ଧକ ହେଲା । ସେ ମାତ୍ର ଅଳ୍ପଦିନ ମଧ୍ୟରେ ତୋଷଳାରୁ କେନ୍ଦ୍ରୀୟ ରାଜଧାନୀକୁ କାମାନ୍ତପୁର ରେ ହଠାତ୍ ସ୍ଥାପନ କଲେ । ତେଣୁ ଅତି ଶୀଘ୍ର ଏଠାରେ ରାଜଧାନୀ ପରିବର୍ତ୍ତନ କରାଯାଇ ସ୍ଥାପିତ ହେଲା ବୋଲି ଏହାର ନାମକ ପତ୍ତନ ଗଡ ହେଲା । ଏହି କାମାନ୍ତପୁରରେ ବିକ୍ରମ ଦେବ ନାମକ ଜଣେ ରାଜା ପରବର୍ତ୍ତି ସମୟରେ ଏକ ଗଡ ନିର୍ମାଣ କଲେ ଓ ତାଙ୍କ ନାମାନୁଯାୟୀ ଏହାର ନାମ ବିକ୍ରମ ଗଡ ହେଲା । ଏହି ବିକ୍ରମ ଗଡ କୁ କୋଶଳଗଡ ମଧ କୁହାଗଲା । ରାଜଧାନୀର ଆଭିଧାନିକ ଅର୍ଥ ହିଁ ପାଟଣା ଅଟେ । ପୁଣି କାମାନ୍ତପୁରରେ ହଠାତ୍ ରାଜଧାନୀ ପତିତ ହୋଇ ଥିବାରୁ ପାଲି ଭାଷାରେ ଏହାକୁ ପତ୍ତନ ଗଡ କୁହାଯାଇ ଥିଲା । ପରେ ପତ୍ତନ ଗଡ ଅପଭ୍ରଂଶିତ ହୋଇ ପାଟଣାଗଡ ହେଲା ।

ଥରେ ଏହି ପତ୍ତନଗଡ ନିକଟସ୍ଥ ବାବନୀଗଡରେ ଜଣେ କଣ୍ଡରା ଜାତି (ମାହାର) ର ଲୋକ ରାଜତ୍ୱ କରୁଥିଲେ । ସେ ଦକ୍ଷିଣାତ୍ୟରୁ ଅନ୍ତରୀ ନାମକ ଜଣେ ସାଧକକୁ ନିମନ୍ତ୍ରିଆଣି ସାଧନାକୁ ବ୍ୟାପକ କରୁଥିଲେ । ତାଙ୍କ ଆରାଧ୍ୟ ଦେବୀଙ୍କର ନାମ କାମଚଣ୍ଡୀ ଥିଲା । କଣ୍ଡରା ରାଜାଙ୍କର ନାମ ମଧୁ ଥିଲା । ଏବଂ ତାଙ୍କ ରାଣୀଙ୍କ ନାମ ପଦ୍ମବତୀ ଥିଲା । ସେ ଏହା ପ୍ରଖରା କାମଚଣ୍ଡୀ ଦେବୀଙ୍କୁ ସାଧି ଅଦ୍ଭୁତ ଯାଦୁଶକ୍ତିର ଅଧିକାରୀ ହୋଇ ପାରିଥିଲେ ।



ସେତେବେଳେ ଯାଦୁବିଦ୍ୟା ସାଧନା ରାଜ ସ୍ୱୀକୃତ କାର୍ଯ୍ୟ ଥିଲା । ସେତେବେଳେ ରାଜା ଯେଉଁ ଧର୍ମ ଗ୍ରହଣ କରୁଥିଲେ କିମ୍ୱା ଯେଉଁ ସାଧନା କରୁଥିଲେ, ପ୍ରଜାଗଣ ତା'ଙ୍କୁ ଅନୁସରଣ କରୁଥିଲେ । ତେଣୁ ରାଜ୍ୟର ଆବାଳ ବୃଦ୍ଧବନିତା ଯାଦୁବିଦ୍ୟା ଶିକ୍ଷା ପ୍ରତି ଆଗ୍ରହ ରଖୁଥିଲେ । ଏପରି ବି ହେଉଥିଲା ଯେ ମାଁ ମାନେ ତାଙ୍କ କନ୍ୟାଙ୍କୁ ଏହି ବିଦ୍ୟାରେ ପାରଙ୍ଗମ କଲା ପରେ ବିବାହ ଦେଉଥିଲେ । ଅବିବାହିତା ସମସ୍ତ କନ୍ୟା ସନ୍ତାନ ଯାଦୁ ବିଦ୍ୟାକୁ ବ୍ୟାପକ ସ୍ତରରେ ଶିଖୁଥିଲେ ।

ଏଠାରେ ସାତଜଣ ଅବିବାହିତା କନ୍ୟା ସେମାନଙ୍କର ସାଧନାକୁ ଚରମ ସୀମା ପର୍ଯ୍ୟନ୍ତ ପହଞ୍ଚାଇ ଦେଇ ଥିଲେ । ସେମାନେ ସାମଗ୍ରିକ ଭାବେ ଯାଦୁବିଦ୍ୟା ସାଧନା କରି ସମଗ୍ର ଭାରତରେ ଆମର ଏହି ମାଟି (ପାଟଣାଗଡ)କୁ କୁଆଁରୀ ପାଟଣା ନାମରେ ପରିଚିତ କରାଇବାରେ ସମର୍ଥ ହୋଇଥିଲେ । ଏପରି ବି ହେଉଥିଲା ଯେ ପାଟଣାର ନାମ ଏମାନଙ୍କର ନାମ ସହ ମିଶି କୁଆଁରୀ ପାଟଣା ହୋଇ ଯାଇଥିଲା ।

ସେହି ସାତଜଣ ଅବିବାହିତା (କୁଆଁରୀ) ସାଧିକା କନ୍ୟାଙ୍କର ନାମ ଥିଲା - ମଦନା (ଜ୍ଞାନଦେଈ ମାଲୁଣୀ), ଲୁହୁରକୁଟୀ ଲୁହୁରୁଣୀ, ଗାଙ୍ଗୀ ଗଉଡୁଣୀ ଏବଂ ଶୁଆ ତେଲୁଣୀ । ଏହି ସାତଜଣ କୁଆଁରୀ କନ୍ୟା ମଧ ସେହି ଦାକ୍ଷିଣାତ୍ୟ ନିବାସୀ ଧନ୍ୱନ୍ତରୀଙ୍କୁ ଗୁରୁ ରୂପେ ସ୍ୱୀକାର କରିଥିଲେ ଏବଂ କୁଆଁରୀ କାମଚଣ୍ଡୀଙ୍କୁ ସାଧାନା କରି ସଫଳତା ପାଇଥିଲେ ।

ଏହି ସାତଜଣ ଯାକ କୁଆଁରୀ କନ୍ୟା ଭିନ୍ନ ଭିନ୍ନ ଜାତିର ଝିଅ ଥିଲେ ମଧ ସମସ୍ତେ ଏକ ମାଆର ଝିଅ ପରି ପରସ୍ପର ଉତ୍ତମ ବୁଝାମଣା ରଖି ସାଧନା କରୁଥିଲେ । ପ୍ରତ୍ୟହ ସେମାନଙ୍କର ନିର୍ଦ୍ଧାରିତ ସାଧନା ସ୍ଥଳୀକୁ ପ୍ରତ୍ୟୁଷରୁ ଯାଉ ଥିଲେ ଏବଂ ପ୍ରାୟ ମଧ୍ୟାହ୍ନ ସମୟରେ କାଠି ପତ୍ର ଓ କାଠ ଆଦି ନେଇ ଫେରୁଥିଲେ । ସେମାନେ ସାଧନା କରିଯାଉଥିଲେ ମଧ ଲୋକଙ୍କ ଦୃଷ୍ଟି ଅନ୍ୟ ଆଡକୁ ଟାଣିବା ପାଇଁ କାଠ ଓ କାଠିର ଆଶ୍ରୟ ନେବାର ଅଭିନୟ କରୁଥିଲେ । ଏହି ସ୍ଥାନଟି ବର୍ହାଛାପର ର ନିକଟବର୍ତ୍ତୀ ସ୍ଥାନ ଥିଲା ଏବଂ ଏଠାରେ ଘଞ୍ଚ ଜଙ୍ଗଲ ଥିଲା ।



ବୌଦ୍ଧ ତାନ୍ତ୍ରିକଙ୍କର ସାଧନା ପଦ୍ଧତିର ପ୍ରଭାବ ସେମାନଙ୍କ ଉପରେ ପଡିଥିଲା । ଧନ୍ୱନ୍ତରୀ ନିଜେ ଜଣେ ବୌଦ୍ଧ ତାନ୍ତ୍ରୀକ ଥିଲେ ଏବଂ ସପ୍ତସଖୀଙ୍କୁ ବୌଦ୍ଧତନ୍ତ୍ରର ପଦ୍ଧତିରେ ଶିକ୍ଷା ଦେଇଥିଲେ । ତେଣୁ ହଠଯୋଗ ହିଁ ଏମାନଙ୍କର ଆଧାର ଥିଲା । ଏହି ସପ୍ତସଖୀ ସାଧନା କଲାବେଳେ ସଂପୂର୍ଣ୍ଣ ବସ୍ତ୍ରହୀନା ରହୁଥିଲେ । ଭୂମିରୁ ପ୍ରାୟ ଦୁଇ ଚାଖଣ୍ଡ ଉର୍ଦ୍ଧ୍ୱରେ ଶୂନ୍ୟରେ ପଦ୍ମାସନରେ ବସୁଥିଲେ ଏବଂ କାମଚଣ୍ଡୀଙ୍କୁ ସାଧନା କରୁଥିଲେ । ଆଜିକାଲି କେହି କେହି କାମଚଣ୍ଡୀ ହିଁ ବର୍ତ୍ତମାନର ପାଟଣେଶ୍ୱରୀ କହୁଥିବା ବେଳେ ୰ରାମଚନ୍ଦ୍ର ମଲ୍ଲିକ ପାଟଣେଶ୍ୱରୀ ଦେବୀଙ୍କୁ ବନଦୁର୍ଗା ଓ ଦକ୍ଷିଣ କାଳୀ ସ୍ୱରୂପା ବୋଲି କହନ୍ତି । ତେଣୁ ମାଁ ପାଟଣେଶ୍ୱରୀ ବନଦୁର୍ଗା ହୁଅନ୍ତୁ କି କୁଆଁରୀ କାମଚଣ୍ଡୀ ଦେବୀ ହୁଅନ୍ତୁ କିମ୍ୱା ଦକ୍ଷିଣ କାଳୀ ହୁଅନ୍ତୁ - ପାଟଣାର ଆରାଧ୍ୟ ଦେବୀ ହିଁ ଅଟନ୍ତି । ତାଙ୍କୁ ସାଧନା କରି ହିଁ ସପ୍ତସଖୀ ଏତେ ସିଦ୍ଧି ଶକ୍ତିର ଅଧିକାରିଣୀ ହୋଇ ପାରିଥିଲେ ।

ତେବେ ବର୍ତ୍ତମାନର ମାଁ ପାଟଣେଶ୍ୱରୀ ତାଙ୍କର ପୂର୍ବସ୍ଥିତି ବୁଠି କୁଢେର ମଧ୍ୟରେ ସ୍ଥିତ ଏକା ଧାଡିରେ ଠିଆଥିବା ତିନି ସାହାଡା ଗଛର ଅଧିଷ୍ଠାତ୍ରୀ ଦେବୀ ହିଁ ଅଟନ୍ତି । ତାଙ୍କର ମୁହଁ ସର୍ବଦା ଦକ୍ଷିଣକୁ ହୋଇ ଥିବାରୁ ତା'ଙ୍କୁ ଦକ୍ଷିଣ କାଳୀ ମଧ କୁହାଯାଇ ଥାଏ । ସୁତରାଂ ମାଁ ଦୁର୍ଗାଙ୍କର ଏକ ପ୍ରଚଣ୍ଡ ସ୍ୱରୂପ ମାଁ ଦକ୍ଷିଣ କାଳୀଙ୍କର ସ୍ୱରୂପ ମାଁ ପାଟଣେଶ୍ୱରୀ (କୁଆଁରୀ କାମଚଣ୍ଡୀ)ଙ୍କୁ ସେବା କରି ଅସମ୍ଭବ ଓ ଅଶାତୀତ ଯାଦୁଶକ୍ତିର ଅଧିକାରିଣୀ ହୋଇଥିବା ସପ୍ତସଖୀଙ୍କୁ ସ୍ୱତନ୍ତ୍ର ଭାବେ ଦେଖାଇ ପାରିଥିଲେ ଉଚିତ୍ କର୍ତ୍ତବ୍ୟ ହେବ ବୋଲି ଆଶା ରଖେ । ତେଣୁ ଆସନ୍ତୁ, ପ୍ରତ୍ୟେକ କୁଆଁରୀ ସାଧିକାଙ୍କୁ ନିକଟରୁ ଦେଖିବା, ତାଙ୍କର ଜନସେବା, କୃତକର୍ମ, ସାଧନାର ଚମତ୍କାରିତା ବିଷୟରେ ପାଖରୁ ଦେଖିବାକୁ ଚେଷ୍ଟା କରିବା ।





# ଜ୍ଞାନଦେଈ ମାଳୁଣୀ

ବୌଦ୍ଧ କାଳୀନ ହଟଯୋଗୀ ମାନଙ୍କର ପ୍ରାଧାନ୍ୟ କୁଆଁରୀପାଟଣାରେ ବେଶି ଥିବା କଥା ମୁଁ ଆଗରୁ କହୁଛି । ସପ୍ତସଖି ଙ୍କର ଅବିବାହିତ ଜୀବନକାଳ ଭିତରେ ଏହି ଯୋଗରୁ ସିଦ୍ଧି ଲାଭର ଆଶା ଯାହା ଥାଉ ନା କାହିଁକି ଚମତ୍କାରିତାରେ ସମଗ୍ର ଭାରତ ବର୍ଷରେ ପ୍ରସିଦ୍ଧି ଲାଭ କରିଥିଲେ । ସେହି ସପ୍ତସଖି ଙ୍କ ମଧ୍ୟରୁ ମଦନା ପ୍ରଧାନ ଥିଲା । ସେ ଅତ୍ୟନ୍ତ ବୁଦ୍ଧିମତୀ ଓ ଜ୍ଞାନୀ ଥିବାରୁ ଏବଂ ଅନ୍ୟ ମାନଙ୍କୁ ଜ୍ଞାନ ବିତରଣ କରୁଥିବାରୁ ତାଙ୍କୁ ଜ୍ଞାନଦେଈ ମାଳୁଣୀ ବୋଲି କହୁଥିଲେ ଓ ଏହି ନାମରେ ବିଖ୍ୟାତ ଥିଲା । ସେ ମାଳୀ ଜାତିର ଏକ କନ୍ୟା ଥିଲା ।

କୁଆଁରୀପାଟଣା ର ସୀମା ସେତେବେଳେ ଭୋପାଳର ନିକଟବର୍ତ୍ତୀ ବେରାର ରାଜ୍ୟର ସୀମା ପର୍ଯ୍ୟନ୍ତ ବ୍ୟାପିଥିଲା ବୋଲି କୁହାଯାଇଛି । ସେହି କୁଆଁରୀ ପାଟଣାର ଉତ୍ତର ପଶ୍ଚିମ ଦିଗରେ ଭୋପାଳକୁ ଲାଗି ବେରାର ବୋଲି ଏକ ଶକ୍ତିଶାଳୀ ରାଜ୍ୟ ଥିଲା । ଉକ୍ତ ବେରାରର ମନ୍ତ୍ରୀ ଅପୁତ୍ରୀକ ଥିଲେ ବୋଲି ପୁତ୍ର ପ୍ରାପ୍ତି ଆଶାରେ ମହାମାୟୀ ଦୁର୍ଗାଙ୍କୁ ଆରାଧନା କରୁଥିଲେ । ଦେବୀ ଉଭୟ ପତି ପତ୍ନୀଙ୍କର ଆରଧନାରେ ସନ୍ତୁଷ୍ଟ ହୋଇ ନିଜ ପୁତ୍ରଙ୍କ ମଧ୍ୟରୁ ଜଣକୁ ମନ୍ତ୍ରୀଙ୍କୁ ପୁତ୍ର ରୂପେ ପ୍ରଦାନ କରିବାକୁ ସ୍ୱପ୍ନାଦେଶ ଦେଲେ । ମନ୍ତ୍ରୀଙ୍କ ସ୍ୱପ୍ନରେ ଉଚ୍ଛାପଡିଲା ଓ ନିଦ୍ରାଭଙ୍ଗ ହେଲା । ନିଦ୍ରା ଭଙ୍ଗ ସଙ୍ଗେ ସଙ୍ଗେ ଶେଜରେ ଏକ ଅହି (ନାଗ ସାପ) ଖେଳୁଥିବାର ସେ ଦେଖିଲେ । ଦେବୀଙ୍କ କୃପା ଭାବି ମନ୍ତ୍ରୀ ନାଗସାପକୁ ନ ଡରି ସ୍ପର୍ଶ କରିଥିଲେ ଏବଂ ତାହା ତତ୍କ୍ଷଣାତ ଏକ ମାଣିକ୍ୟ ଖଚିତ ସ୍ୱର୍ଣ୍ଣ ହାରରେ ରୂପାନ୍ତରୀତ ହେଲା । ମନ୍ତ୍ରୀ ପତ୍ନୀ ଉକ୍ତ ହାରକୁ ବେକରେ ଧାରଣ କରିବାକୁ ଉଦ୍ୟତ ହେଲା ମାତ୍ରେ ତାହା ଏକ ପୁତ୍ର ସଂନ୍ତାନରେ ରୂପାନ୍ତରୀତ ହେଲା । ତେଣୁ ଅହିରୁ ମାଣିକ୍ୟ ହାରରେ ରୂପାନ୍ତରୀତ ହୋଇଥିବାରୁ ମନ୍ତ୍ରୀ ଉକ୍ତ ପୁତ୍ର ସନ୍ତାନର ନାମ କରଣ କଲେ "ଅହିମାଣିକ୍ୟ" ।



ଅହିମାଣିକ୍ୟ କୁ ସାତ ବର୍ଷ ହେଲା ପରେ ସେ ଗୁରୁ ଗୃହରେ ରହି ବିଦ୍ୟା ଶିକ୍ଷା କଲେ । ଉକ୍ତ ଗୁରୁଙ୍କଠାରେ ସେହି ରାଜ୍ୟର ରାଜକୁମାରୀ ଶଶୀସେଣା ମଧ୍ୟ ବିଦ୍ୟା ଶିକ୍ଷା ପାଇଁ ଗଲେ । ଏକ ଗୁରୁଙ୍କ ଠାରେ ଉଭୟେ ଶିକ୍ଷାଲାଭ କରୁକରୁ କାଳକ୍ରମେ ଉଭୟେ ଯୌବନ ଅବସ୍ଥାକୁ ପ୍ରାପ୍ତ ହେଲେ । କିନ୍ତୁ ଖଡି ଗୋଟାଇଦେବା ଘଟନାକୁ କେନ୍ଦ୍ର କରି ସତ୍ୟରକ୍ଷା କରି ଶଶୀସେଣା ଓ ଅହିମାଣିକ୍ୟ ବିବାହ ବନ୍ଧନରେ ଆବଦ୍ଧ ହେଲେ । ଗୁରୁଙ୍କର ଅଭିଭାବକତ୍ୱରେ ବିବାହ କାର୍ଯ୍ୟ ସଂପନ୍ନ ହେଲାରୁ ସେମାନେ ଉକ୍ତ ଗୁରୁକୁଳକୁ ତ୍ୟାଗ କରି କୁଆଁରୀପାଟଣା (ଆଧୁନିକ ପାଟଣାଗଡ)କୁ ପଳାୟନ କଲେ ଏକ ଘୋଡା ଉପରେ ।

ଅନେକ ଦିନର ଘୋଡା ପିଠିରେ ଯାତ୍ରା ପରେ ଅହିମାନିକ୍ୟ ଓ ଶଶୀସେଣା ଉଭୟେ ରାତ୍ରି ଆଗମନରେ ଅବ୍ୟବହିତ ପୂର୍ବରୁ କୁଆଁରୀପାଟଣାର ଉପକଣ୍ଠରେ ଉପସ୍ଥିତ ହେଲେ । ସନ୍ଧ୍ୟା ସମୟରେ ଅହିମାଣିକ୍ୟ ରନ୍ଧନ ସାମଗ୍ରୀ ସଂଗ୍ରହ ପାଇଁ ସହର ମଧ୍ୟକୁ ପ୍ରବେଶ କଲେ ଏବଂ ଶଶିସଣା ନଦୀ କୂଳରେ ଅପେକ୍ଷାରତ ରହିଲେ ।

ଅହିମାଣିକ୍ୟ ରନ୍ଧନ ସାମଗ୍ରୀ ସଂଗ୍ରହ କଲା ପରେ ନବ ବିବାହିତା ପତ୍ନୀ ପାଇଁ ଏକ ଫୁଲ ଦୋକାନକୁ ଗଲେ ଫୁଲ କିଣିବା ପାଇଁ । ଫୁଲ ଦୋକାନୀ ଥିଲା ଜଣେ ଯୁବତୀ । ଉକ୍ତ ଯୁବତୀ ଅହିମାଣିକ୍ୟ ର ଯୌବନ ସୌଷ୍ଠବରେ ମନେ ମନେ ପ୍ରୀତ ହୋଇ କାମ ବାସନା ଚରିତାର୍ଥର ଆଶାରେ ସୁଯୋଗ ଖୋଜିଲା । ବିଭିନ୍ନ ଫୁଲର ବାସନା ଶୁଂଘାଇବା ବାହାନାରେ ଏକ କଳା ରଙ୍ଗର ଫୁଲ ଶୁଂଘାଇ ଦେବା ସଙ୍ଗେ ସଙ୍ଗେ ଅହିମାଣିକ୍ୟ ଏକ ମେଣ୍ଢାରେ ରୂପାନ୍ତରୀତ ହେଲାରୁ ଉକ୍ତ ମେଣ୍ଢାକୁ ଚତ୍କ୍ଷଣାତ ବାନ୍ଧି ସ୍ୱଗୃହ ପ୍ରତ୍ୟାବର୍ତ୍ତନ କଲା । ପରେ ପ୍ରତ୍ୟକ ରଜନୀରେ ଉକ୍ତ ମେଣ୍ଢାକୁ ଏକ ଧଳା ରଙ୍ଗର ଫୁଲ ଶୁଘାଇ ପୁନରାୟ ଅହିମାଣିକ୍ୟର ପୂର୍ବ ଅବସ୍ଥାକୁ ଆଣି କାମବାସନା ଚରିତାର୍ଥ କରିବାରେ ଲାଗିଲା ଏବଂ ଦିବସ ଆଗମନ ପୂର୍ବରୁ ପୂର୍ବବତ୍ କଳାଫୁଲ ଶୁଂଘାଇ କଳା ମେଣ୍ଢା କରି ଚାଲିଲା । ଅହିମାଣିକ୍ୟ ନିଜର ମାନସିକ ଭାରସାମ୍ୟ ହରାଇବା ସହ ସ୍ମୃତି ଶକ୍ତିକୁ ମଧ୍ୟ ପ୍ରଥମାବସ୍ଥାରେ ହରାଇଶଶୀସେଣାକୁ ଭୁଲି ଗଲେ । ଦିନବେଳେ ସେ ମେଣ୍ଢାହୋଇ ଘର ବାଡିରେ ରହି ରାତିରେ ଅହିମାଣିକ୍ୟର ଦିବ୍ୟ ରୂପ ଧାରଣ କରୁଥିଲେ ।



ଏଣେ ସେ ରାତିରେ ଶଶୀସେଣା ଅହିମାଣିକ୍ୟର ଆସିବା ପଥକୁ ଚାହିଁ ରହିଥିଲେ । ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ ଅହିମାଣିକ୍ୟର ପ୍ରତ୍ୟାବର୍ତ୍ତନ ନ ହେଲାରୁ ସେ ବାଧ ହୋଇ ପୁରୁଷ ବେଶରେ କୁଆଁରୀପାଟଣା ମଧରେ ପ୍ରବେଶ କଲେ ଓ ଅହିମାଣିକ୍ୟକୁ ଖୋଜି ବୁଲିଲେ । ସେ ପୁରୁଷବେଶରେ ଶଶୀଧର ନାମରେ ବୁଲିଲେ ରାତିସାରା । ଶଶୀଧରର ତୀକ୍ଷଣ ଦୃଷ୍ଟି ଅହିମାଣିକ୍ୟର ସନ୍ଧାନ କରି ପାରିଲା ନାହିଁ । ପରିଶେଷରେ ଏକ ଶିବ ମନ୍ଦିରରେ ଆଶ୍ରୟ ନେଇ ଖୋଜି ଚାଲିଥିବା ଅବସ୍ଥାରେ ଦିନେ କ୍ରମାଗତ ଭାବେ ଉତ୍ପାତ କରି ଆସିଥିବା ଏକ ବାଘକୁ ମାରି ଦେଇ ରାଜାଙ୍କ ଦ୍ୱାରା ଘୋଷିତ ସର୍ତ୍ତ ଅନୁସାରେ ପାଟଣା ରାଜକୁମାରୀକୁ ବିବାହ ପ୍ରସ୍ତାବରେ ସ୍ୱୀକୃତି ଦେଲେ । କିନ୍ତୁ ଏକ ବର୍ଷ ପର୍ଯ୍ୟନ୍ତ ବ୍ରତ ପାଳନ କରିବା ଆଳରେ ରାଜକୁମାରୀ ଠାରୁ ଦୂରେଇ ରହିବା ଓ ପରେ ବିବାହ କରିବା କଥା ରାଜାଙ୍କୁ ଜଣାଇଲେ । ବ୍ରତ ପାଳନର ଶେଷ ସାତ ଦିନ ଯଜ୍ଞାନୁଷ୍ଠାନର ଆୟୋଜନ କରାଇ ନାଟ, ଦଣ୍ଡ ଇତ୍ୟାଦି ଯାନୀଯାତ୍ରାର ବ୍ୟବସ୍ଥା କରି ଅହିମାଣିକ୍ୟର ଅନ୍ୱେଷଣର ଶେଷ ଚେଷ୍ଟା କଲେ । ଶଶୀସେଣାର ପୁରୁଷ ବେଶ (ଛଦ୍ମବେଶ ଓ ନାମଧାରୀ) ଶଶୀଧର ଅପ୍ରତିଦ୍ୱନ୍ଦୀ ଥିଲେ ଓ ରାଜ ଜାମାତା ଓ ଭବିଷ୍ୟତର ପାଟଣାରାଜାର ମର୍ଯ୍ୟାଦା ଉପଭୋଗ କରି ଚାଲିଲେ ।

ରାଜ ଜାମାତା ଶଶୀଧର ପ୍ରତ୍ୟହ ଭୋରରୁ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ଚନ୍ନଚନ୍ନ କରି ପ୍ରତ୍ୟେକ ସ୍ଥାନ ବୁଲି ଅହିମାଣିକ୍ୟକୁ ଖୋଜି ଦେଖୁଥିଲେ । ଯଜ୍ଞର ଶେଷ ରାତ୍ରିରେ ଉକ୍ତ ମାଲୁଣୀ ଯୁବତୀ କଳାରଙ୍ଗର ମେଣ୍ଢା ସହ ଦଣ୍ଡ ନାଚ ଦେଖିବାର ଅଭିଳାଷକୁ ଦମନ କରି ନ ପାରି ଆସିଥାଏ ଓ ଜଣେ ଯୁବତୀ କଳା ମେଣ୍ଢା ସହ ଆସି ଦଣ୍ଡ ଦେଖୁଥିବାର ଅନେକଙ୍କର ଦୃଷ୍ଟି ଆକର୍ଷଣ କରିଥାଏ । ଶଶୀଧର ବାତୁଳଙ୍କ ପରି ଶେଷ ଯାମିନୀର ଚଟକ ନେତ୍ରକୁ ବୁଲାଇ ଆଣୁ ଆଣୁ ଉକ୍ତ ମେଣ୍ଢାଠାରେ ନିଜର ଦୃଷ୍ଟି ସ୍ଥିର କରିଥିଲେ ଓ ମେଣ୍ଢା ମଧ ଶଶୀଧରକୁ ଅପଲକ ନେତ୍ରରେ ଅନାଇ ରହିଥାଏ । ସେତେବେଳେ ଅହିମାଣିକ୍ୟର ହଠାତ ସ୍ମୃତି ଫେରି ଆସିଛି ଏବଂ ସେ ଶଶୀଧର ଠାରେ ଶଶୀସେଣାକୁ ଆବିଷ୍କାର କରି ଏକ କାଠ କୋଇଲାରେ ନିଜ ଅସହାୟତାକୁ କାନ୍ଥ ଦେହରେ ବର୍ଣ୍ଣନା କରି ଦେଇଛି ଶିଙ୍ଗର ସହାୟତାରେ। ଶଶୀଧର ମଧ କୋଇଲା ଖଣ୍ଡକରେ କାନ୍ଥ ଦେହରେ ଶିଙ୍ଗ



ସାହାଯ୍ୟରେ ମେଣ୍ଢାଟି କିଛି ଲେଖିଲା ପରି ମନେ କରିଛନ୍ତି । ଘଟଣାଟିକୁ ସେତେବେଳେ ସେତେ ଗୁରୁତ୍ୱ ନ ଦେଇ ପୁରନଗାୟ ଅହିମାଣିକ୍ୟ କୁ ଖୋଜୁଛନ୍ତି ଶଶୀଧର ସାରାରାତି ପାଗଳଙ୍କ ପରି ।

ଶେଷ ଦିବସର ଶେଷ ପ୍ରହର ଆସିଛି । ସୂର୍ଯ୍ୟୋଦୟ ପୂର୍ବରୁ ଶଶୀଧର ଉକ୍ତ କାନ୍ଥରେ ଲେଖା ଘଟଣା ପଢି ଉକ୍ତ ମେଣ୍ଢାହିଁ ଅହିମାଣିକ୍ୟ ବୋଲି ସମ୍ଭାବନା କରିଛି । ଯଜ୍ଞ ପୂର୍ଣ୍ଣାହୁତିର ପ୍ରାକ୍ ଅବସ୍ଥାରେ ଶଶୀଧର ସହର ମଧରେ ଥିବା କଳାମେଣ୍ଢା ସବୁକୁ ଅଣାଇଛିନ୍ତି ଆଦେଶ ବଳରେ । କିନ୍ତୁ ଉକ୍ତ ମାଲୁଣୀର ମେଣ୍ଢାକୁ ନଦେଖି ସେ ରାଜବଳ ପଠାଇଛନ୍ତି । କିନ୍ତୁ ଚତୁରୀ ମାଲୁଣୀ "ମାଳିଘରେ ଛେଳି ଅସମ୍ଭବ" ବୋଲି କହିଛି । ଶଶୀଧର ବାଧ କରିଛନ୍ତି ଓ ମାଲୁଣୀ କୁ ଘୋଷାରୀ ଅଣା ଯାଇଛି ଯଜ୍ଞକୁଣ୍ଡ ନିକଟକୁ । ସେଠାରେ ମାଲୁଣୀ ମେଣ୍ଢା ନାହିଁ ବୋଲି ଛଳନା କରିବାକୁ ଉଦ୍ୟତ ହେଲାରୁ ଜୀବନରେ ମାରିଦେବାର ଭୟ ପ୍ରଦର୍ଶନ କରିଛନ୍ତି ଓ ମେଣ୍ଢାକୁ ଭେଣ୍ଡା କରିବାକୁ ପ୍ରବର୍ତ୍ତାଇଛନ୍ତି, ବାଧ କରିଛନ୍ତି, ଭୟ ଦେଖାଇଛନ୍ତି । ମାଲୁଣୀ ବାଧ ହୋଇ ମେଣ୍ଢାକୁ ଭେଣ୍ଡା କରିବାକୁ ରାଜି ହୋଇଛି ।

ଏକ ଧଳା ଫୁଲ ଶୁଙ୍ଘାଇ କଳା ମେଣ୍ଢାକୁ ପୁନଶ୍ଚ ଅହିମାଣିକ୍ୟ ରୂପରେ ପରିବର୍ତ୍ତିତ ଘଟଣା ସମସ୍ତଙ୍କୁ ଯେତେ ସ୍ତମ୍ଭୀଭୂତ କରିଛି, ଶଶୀଧର ସ୍ତ୍ରୀ ବେଶ ଧାରଣ ଓ ପୁରୁଷବେଶ ପରିତ୍ୟାଗ ତଥା ଅହିମାଣିକ୍ୟର ହଠାତ୍ ଆବିର୍ଭାବ ତତୋଧିକ କୁଆଁରୀପାଟଣାବାସୀଙ୍କୁ ଆଶ୍ଚର୍ଯ୍ୟ ଚକିତ କରିଛି ସେ ଦିନ । ଶେଷରେ ଶଶୀସେଣା ଓ ପାଟଣାଗଡର ରାଜକୁମାରୀ ଉଭୟେ ଅହିମାଣିକକୁ ହିଁ ବିବାହ କରିଛନ୍ତି ଓ ଅହିମାଣିକ୍ୟ ପାଟଣାର ରାଜ ସିଂହାସନରେ ବସିଛନ୍ତି ।

ଉକ୍ତ ମାଲୁଣୀ ଆଉ କେହି ନଥିଲେ ଜ୍ଞାନଦେଇ ଓରଫ୍ ମଦନା - ସପ୍ତସଖିରଙ୍କ ମଧରେ ଶ୍ରେଷ୍ଠ ସଖୀ, ଯାଦୁକରୀ ବିଦ୍ୟା ନିପୁଣା । ଶେଷରେ ମଦନାର ମୁଣ୍ଡକାଟି ଶଶୀଧର ଯଜ୍ଞରେ ପୂର୍ଣ୍ଣାହୁତି ଦେଇ ସପ୍ତସଖୀଙ୍କର ପ୍ରାଧାନ୍ୟକୁ ଲୋପ କରିଛନ୍ତି ।

ସେହି ଦିନଠାରୁ ପାଟଣା ମାଟିର କୁଆଁରୀ ସପ୍ତସଖୀଙ୍କର ପ୍ରାଧାନ୍ୟ ଲୋପ ହୋଇ ଥିଲେ ମଧ ତଥାପି କୁଆଁରୀପାଟଣାର ଭୟ ଏଯାବତ୍ ସମସ୍ତଙ୍କ ମନରେ



ରହିଆସିଛି । ଏବେ ମଧ୍ୟ ଅନେକ ଅଞ୍ଚଳରେ କୁଆଁରୀ ପାଟଣାର ଲୋକଙ୍କୁ ଭୟ କରନ୍ତି ଏହି ମାନଙ୍କର ପ୍ରସିଦ୍ଧି ପାଇଁ । କେଉଁ ଦୁଇ ଶହସ୍ର ବର୍ଷ ପୂର୍ବେ ସପ୍ତସଖୀ ଥିଲେ ବା ଏହା କୁଆଁରୀ ପାଟଣା ଥିଲା । କିନ୍ତୁ ଆଜି ମଧ୍ୟ ଏଠାକାର ମନ୍ତ୍ର ବିଦ୍ୟା ବିଚଳିତ କରେ ଅନାମଧେୟ ବ୍ୟକ୍ତିକୁ ସେମାନେ ଭୟ କରନ୍ତି ଏବଂ ସନ୍ତର୍ପିତ ବ୍ୟବହାର କରନ୍ତି ।





# ଲୁହୁରକୁଟୀ ଲୁହୁରୁଣୀ

ସପ୍ତସଖୀଙ୍କ ମଧରେ ମଦନା (ଜ୍ଞାନଦେଈ)ର ମାନ୍ୟତା ସର୍ବାପେକ୍ଷା ଅଧିକ ଥିଲେ ମଧ ସାଧନାର ପରାକାଷ୍ଠା ଲୁହୁରକୁଟୀ ଲୁହୁରୁଣୀର ଅଧିକ ଥିଲା । ସମସ୍ତେ ଲୁହୁରକୁଟୀକୁ ଏଇଥି ପାଇଁ ଆଦର କରୁଥିଲେ ଯେ ତା'ର ଇଚ୍ଛାଶକ୍ତିର ପ୍ରାବଲ୍ୟ ଅଧିକ ଥିଲା ଓ ଭିନ୍ନ ଭିନ୍ନ ସ୍ୱାଦୁର ଯାଦୁ ପ୍ରଦର୍ଶନ କରି ଅନ୍ୟଙ୍କ ଠାରୁ ନିଜର ଶ୍ରେଷ୍ଠତ୍ୱ ବଜାୟ ରଖି ପାରୁଥିଲା । ତେଣୁ ମଦନାର ପରବର୍ତ୍ତୀ ଶ୍ରେଷ୍ଠ ସାଧିକା ହିସାବରେ ଲୁହୁରକୁଟୀର ମାନ୍ୟତା ଥିଲା । ସେଥିପାଇଁ ଆଜିର ଲୁହୁରା (କମାର) ଜାତିର ସମସ୍ତ ଗୁଣିଆଁ ଲୁହୁରକୁଟୀକୁ ସେମାନଙ୍କ ଇଷ୍ଟ ରୂପେ ସ୍ୱୀକାର କରୁଥିବାର ଦେଖାଯାଏ ।

ଲୁହୁରକୁଟୀ ଲୁହୁରା (କମାର) ଜାତିର ଜଣେ କୁଆଁରୀ କନ୍ୟା ଥିଲା । ସପ୍ତସଖୀଙ୍କର ଅତି ଆଦରଣୀୟା ଥିଲା ସେ । ପୂର୍ଣ୍ଣ ଯୌବନା, କଳା ମଚ୍ ମଚ୍ ଚେହେରା । ଚିକ୍କଣ କାଳି । ହୃଷ୍ଟ ପୁଷ୍ଟ ଶରୀର । ଆଖି ଦୁଇଟି ଜ୍ୱଳନ୍ତ ଅଗ୍ନିପିଣ୍ଡ ପରି ଜାଜ୍ୱଲ୍ୟମାନ । ଓଷ୍ଠ ଲାଲ ରଂଗର । ତେଣୁ ଯେତେବେଳେ ସେ ଲାଲ ବର୍ଣ୍ଣର ଶାଢି ପିନ୍ଧି ଥିବା କେହି ଯଦି ଦେଖେ ସେ କାଳୀଙ୍କର ସ୍ୱରୂପ କୁ କଳନା ନ କରି ରହି ପାରେନାହିଁ । ତା'ର ଛଡା ଛଡା ଓ ସ୍ୱାଭାବିକତା ଠାରୁ ଟିକିଏ ବଡ ବଡ ଦାନ୍ତ ଥିବାରୁ ବିକଟାଳ ହସରେ ତାକୁ ଯିଏ ଦେଖେ, ମୁହଁକୁ ନିଶ୍ଚୟ ଅନ୍ୟ ଦିଗକୁ ଫେରାଇ ନେଇ ଥାଏ । ଛଡା ଛଡା ଦାନ୍ତ ବିଜ୍ଞତାର ଲକ୍ଷଣ ବୋଲି କୁହାଯାଏ ଏବଂ ଅନ୍ୟ ସଖୀଙ୍କ ଠାରୁ ସେ ବିଜ୍ଞ ଥିଲା । ଏହି ସାମଗ୍ରିକ ରୂପ ସହ ଯଦି କିଏ କେବେ ମୁକୁଳା ବାଳରେ ଥରେ ଦେଖିନିଏ, ଭୟରେ ନସିହରି ରହି ପାରେ ନାହିଁ । ତେଣୁ ଦେଖିଥିବା ବ୍ୟକ୍ତି ପ୍ରେତ ବୋଲି ଡରିବା ସ୍ୱାଭାବିକ ମଧ ଥିଲା । ତେବେ ମୋଟ ଉପରେ ଲୁହୁରକୁଟୀର ଏକ ବିକଟାଳ ରୂପ ଥିଲା ଏବଂ ସେ ତା'ର ଏହି ରୂପ ପାଇଁ ମଧ ନିଜର ଆକର୍ଷଣକୁ ଦ୍ୱିଗୁଣିତ କରୁଥିଲା ।



କମାର ଜାତିର ବୃତ୍ତି ଅନୁସାରେ ସେ ନିଜର କର୍ତ୍ତବ୍ୟ ସଂପାଦନ କରୁଥାଏ । ଚଟୁ, ପନିଖି, କସନା ଆଦି ତିଆରି ଓ ଯୋଗାଇ ସେଥିରେ ଉଦର ପୋଷଣ କରୁଥିଲା । ଅନ୍ୟର ପୁରୁଣା ଲୁହା ସାମଗ୍ରୀକୁ ସେ କାର୍ଯ୍ୟକ୍ଷମ କରାଇ ତାହାକୁ ଦେଉଥିଲା । ସେ ନିଜ କାମ ପାଇଁ କାହାରିକୁ କିଛି ମାଗୁ ନ ଥାଏ, ତାକୁ ଯାଚିକରି ଅନ୍ୟମାନେ ଦେଉଥିଲେ । ତାହାକୁ ଆବଶ୍ୟକତା ଅନୁସାରେ ଗ୍ରହଣ କରୁଥାଏ ।

ଗୁଣିଆଁ ହିସାବରେ ସମଗ୍ର କୁଆଁରୀ ପାଟଣା କାହିଁକି ଭାରତବର୍ଷରେ ଖ୍ୟାତିଥାଏ ତା'ର ନାମ । ସେ ଘରେ ଏଗାର-ବାର ବର୍ଷର ଜଣେ ନିଜ ଜାତିର ଝିଅକୁ କନ୍ୟା ହିସାବରେ ରଖି ଥାଏ । ଉକ୍ତ କନ୍ୟା ନିଜ କାମ ସାରି ସାଧନାର ପ୍ରଥମ ପାହଚର କିଛି କିଛି ଶିକ୍ଷା ମଧ୍ୟ କରୁଥାଏ । ପୁଣି ଏକାକିନୀ ଥିବାରୁ ଜଣକୁ ରଖି ତା'ର ନିରୋଳା ସମୟକୁ ତା' ସାଥିରେ ବିତାଇ ଥାଏ ଲୁହୁରକୁଟୀ । ଝିଅଟି ଘର ମଧ୍ୟ ଜଗୁଥାଏ । ତାକୁ ନିଜ ଝିଅ ପରି ପାଳୁଥାଏ ଏବଂ ଆବଶ୍ୟକତା ଠାରୁ ଅଧିକ ମଧ୍ୟ ଶିଖି ଯାଉଥାଏ ।

ସ୍ୱଜାତି ଉତ୍ତମ ପ୍ରୀତି ସ୍ୱାଭାବିକ ଥିଲେ ମଧ୍ୟ ସ୍ୱଜାତିର ଈର୍ଷା ପରାୟଣ ହେବା ମଧ୍ୟ କେତେ କ୍ଷେତ୍ରରେ ଦେଖାଯାଏ । ଲୁହୁରକୁଟୀର ଏହି ତନ୍ତ୍ର ବିଦ୍ୟା ସାଧନାର ସୁନାମ ସମଗ୍ର ଭାରତ ବର୍ଷରେ ପ୍ରସାରିତ ହେବା ଦେଖି ସେହି କମାର ଜାତିର ବୟସ୍କ ଗୁଣିଆ ଈର୍ଷାରେ ଜଳି ଉଠିଲା । ସେ ଲୁହୁର କୁଟିକୁ ପରାସ୍ତ କରି ତା'କୁ ସବୁଦିନ ପାଇଁ ଧୂଳିରେ ମିଶାଇ ଦେଇ ନିଜେ ବିଖ୍ୟାତ ହେବା ପାଇଁ ଚିନ୍ତାକଲା । ବୁଠି କୁଢେଇ ଜଙ୍ଗଲର ଦକ୍ଷିଣ ଉପକଣ୍ଠର ଏହି କମାର ଜାତିର ଗୁଣିଆ ଦିନେ ପାଟଣାକୁ ଆସି ଲୁହୁରକୁଟୀ ସହ ମୁକାବିଲା କରି ଲୁହୁରକୁଟୀକୁ ପରାସ୍ତ କରିବାକୁ ଚିନ୍ତା କଲା । ଜଣେ ଅଠର ବର୍ଷର କଅଁଳି ବୟସର ଝିଅ ଯେ ଏତେ ପ୍ରସିଦ୍ଧି ପାଇବ ଏବଂ ତା' ଠାରୁ ଯଥେଷ୍ଟ ଆଗକୁ ଏପରିକି ତା'ର ବାପ ବୟସର ସାଧନା କରିଥିବା ବ୍ୟକ୍ତିମାନେ ନିଷ୍ପ୍ରଭ ହେବେ - ଏକଥା ଉକ୍ତ ଗୁଣିଆକୁ ବ୍ୟତିବ୍ୟସ୍ତ କରୁଥାଏ ।

ଦିନେ ସେ ମାନସିକ ସ୍ତରରେ ପ୍ରସ୍ତୁତ ହେଲା କୁଆଁରୀ ପାଟଣାକୁ ଆସିବାକୁ । ମନେ ମନେ ସ୍ଥିର କଲା - ଯଦି ମୁଁ ତାକୁ ପରାସ୍ତ କରେ, ତେବେ ତା'ର ପ୍ରାଧାନ୍ୟ



ସବୁ ଦିନ ପାଇଁ ଲୋପ ହେବ ଏବଂ ତାକୁ ଶିଷ୍ୟା କରିବ କିନ୍ତୁ ଯଦି ମୁଁ ତା'ଠାରୁ ହାରି ଯାଏଁ ତେବେ କମ ବୟସର ହେଲେ ମଧ୍ୟ ମୁଁ ତାକୁ ଗୁରୁ କରିବି । ଏହି ମନୋଭାବ ନେଇ ସେ ଦିନେ ଶୀତ ପ୍ରଭାତରେ ଘରୁ ବାହାରି ପାଦରେ ଚାଲିଚାଲି କୁଆଁରୀ ପାଟଣାରେ ପହଞ୍ଚିଲା ।

ସେ ଆସିଲା ବେଳେ ଲୁହୁରକୁଟୀ ଘରକୁ କୁଣିଆଁ ଆସିବା ଭେକରେ ଆସିଥାଏ । ସେତେବେଳେ ସର୍ବ ସାଧାରଣଙ୍କ ବ୍ୟଞ୍ଜନ ହିସାବରେ ଅତିପ୍ରୀୟ ଭୁଜାଲଡୁ କିଛି ସଙ୍ଗରେ ଧରି ଆସିଥାଏ । ବାଟରେ ଅନେକ ଚିନ୍ତା । ତା'ର କଂଠଉର ଠକ୍ ଠକ୍ ଶବ୍ଦ ସହ ହୃଦସ୍ପନ୍ଦନ ଅନିୟମିତ ହୋଇ ପଡୁଥାଏ । ଶୀତଦିନିଆଁ ଖରା ତାକୁ ତଥାପି ଘର୍ମାକ୍ତ କରୁଥାଏ । କପାଳରେ ସ୍ୱେଦ ମନରେ ଚିନ୍ତା ତା'କୁ ଅଜଣା ରାଇଜକୁ ଟାଣି ନେଉଥାଏ ।

ଗୁଣିଆ ଜଣକ ଆସିଲା ବେଳେ ଲୁହୁରକୁଟୀର ଚେହେରା ସଂପର୍କରେ ଭାବି ଭାବି ଆସୁଥାଏ । ଏହା ସ୍ୱଭାବିକ ଯେ, ସମସ୍ତେ କୌଣସି ଅଜଣା ସ୍ଥାନ, ବ୍ୟକ୍ତି କିମ୍ବା ବସ୍ତୁ ସଂପର୍କରେ ପ୍ରଥମେ ଚିନ୍ତା କଲାବେଳେ ନିଜ ଜୀବନର ଅନୁଭୂତିର ସୀମା ମଧ୍ୟରେ ଏକ କଳ୍ପିତ ରୂପ ନେଇ ଚେଷ୍ଟା କରେ ଏବଂ ଉକ୍ତ ବସ୍ତୁର ଏକ କଳ୍ପିତ ସ୍ୱରୂପ ଆମ ଅନ୍ତଃ ଚକ୍ଷୁରେ ଝଲସିବାକୁ ଆରମ୍ଭ କରେ । ସେହି ଅନୁସାରେ ଉକ୍ତ ଗୁଣିଆର ଅନ୍ତ ଚକ୍ଷୁରେ ମଧ୍ୟ ଏକଥା ଘଟିଥିଲା ଏବଂ ସେ ବାଟ ସାରା ଲୁହୁରକୁଟୀର ଚେହେରା ଏବଂ ତା'ର କାର୍ଯ୍ୟ ପରିସର ବିଷୟରେ ଚିନ୍ତା କରି କରି ଆସୁଥିଲା ।

ବାଟରେ ଏକ ଜଙ୍ଗଲିଆ ମୁଡା । ସେଥିରେ ସେ ପାଣି ପିଇ ପୁଣି ଆରମ୍ଭ କଲା ତା'ର ଗନ୍ତବ୍ୟ ଲକ୍ଷ୍ୟକୁ । ପ୍ରାୟ ଏକ ପ୍ରହରର ରାସ୍ତା ଅତିକ୍ରମ କଲାପରେ ସେ ପାଟଣା ରେ ଆସି ପହଞ୍ଚିଲା ।

ପଚାରି ପଚାରି ସେ ଲୁହୁରକୁଟୀର ଘର ପର୍ଯ୍ୟନ୍ତ ଆସିଲା । ସେତେବେଳେ ଲୁହୁରକୁଟୀ ଘରେ ନ ଥିଲା । ଅନ୍ୟ ସଖୀ ମାନଙ୍କ ସହ ପ୍ରତିଦିନ ପ୍ରତ୍ୟୁଷରୁ ଛୁଆଳିଉଦରେ ସାଧନା କରିଯିବା ତା'ର ପ୍ରଧାନ କାର୍ଯ୍ୟ ଥିଲା । ସେହି ହିସାବରେ ସେ ପ୍ରାୟ ଦ୍ୱିପହର ବେଳାରେ ଘରେ ପହଞ୍ଚୁ ଥିଲା ଅନ୍ୟ ମାନଙ୍କ ସହ । ତେଣୁ



ଉକ୍ତ ଗୁଣିଆ ଆସିଲା ବେଳେ ଲୁହୁରକୁଟୀ ଘରେ ନ ଥିଲା । ତଥାପି ଏ କଥା ଗୁଣିଆକୁ ଅଜଣା ଥିଲା ।

ଗୁଣିଆ ଲୁହୁରକୁଟୀର ଘରେ ପହଞ୍ଚିଲା ବେଳକୁ ଦୂରରୁ ଏକ ନାରୀର ସୁଲଳିତ କଣ୍ଠର ସ୍ୱର ଶୁଣି ମନେ ମନେ ଭାବିଲା ଆଜି ଲୁହୁରକୁଟୀକୁ ସାମନାରେ ପାଇଛି । ତା'କୁ ଆଜି ବାଣ ମାରି ଧ୍ୱଂସ କରିଦେବି ଓ ମୋର ପ୍ରତିପତ୍ତି ପ୍ରଚାର କରାଇବି । ସେ ଧିରେ ଧିରେ ଭାସି ଆସୁଥିବା କଣ୍ଠ ଦିଗରେ ଆଗେଇଲା । କଣ୍ଠ ସ୍ୱରର ଯେତିକି ନିକଟତର ହେଉଥାଏ, ଗୁଣିଆର ଆଗ୍ରହ ସେତେ ବଢୁଥାଏ । ତଥାପି ତା'ର ହୃଦ ସ୍ପନ୍ଦନ ଆହୁରି ବଢି ବଢି ଚାଲିଥାଏ । ଏକ ଭୟ ମିଶ୍ରିତ ଆବେଗକୁ ଦମନ କରି ସାହାସ ବାନ୍ଧିଥିବା ଜଣେ ନିର୍ଭିକର ଅଭିନୟ କରୁଥାଏ ସେ ।

ଗୁଣିଆଁ ଲୁହୁରକୁଟୀର ଘର ପାଖରେ ଠିଆ ହେଲା । ସେ ଦୁଆର ଆଡକୁ ଅଗ୍ରସର ହେଲା ପାଦ ଚପି ଚପି । କବାଟ ବନ୍ଦ ଥିଲା । କବାଟର ଅର୍ଦ୍ଧ ବାଉଁଶ ନିର୍ମିତ ଫର୍କୀ । ଉପରୁ ପ୍ରାୟ ଚାଖଣ୍ଡେ ଫାଙ୍କା ଥିଲା ଓ ସେହି ଫାଙ୍କା ମଧ ଦେଇ ଯେକେହି ଦେଖି ପାରିବାର ସୁଯୋଗ ମଧ ଥିଲା । ବାହାରୁ ଭିତରର ସମସ୍ତ ବସ୍ତୁ ସ୍ୱଚ୍ଛ ଭାବେ ଦିଶୁଥାଏ ।

ପାଦ ଚିପି ଚିପି ଭୂଜା ଲଡୁ ବୁକୁରେ ବୋହି ଉଙ୍କି ମାରୁଥିବା ଈର୍ଷାରେ ଜର୍ଜରିତ ସ୍ୱଜାତିର ଗୁଣିଆ ଫର୍କୀ ପାଖରେ ଠିଆ ହେଲା । ସେ ଫର୍କିର ଫାଙ୍କ ଦେଇ ଘର ଭିତରକୁ ଡୁଙ୍ଗି ଦେଖିଲା । ଗୁଣିଆ ଯାହା ଦେଖିଲା - ତା'ର ଆଖିରକୁ ବିଶ୍ୱାସ କରି ପାରିଲା ନାହିଁ । ସେ ସ୍ତବ୍ଧ ହୋଇ ନିଜର ସ୍ଥିତିକୁ ବି ହେଜି ପାରିଲା ନାହିଁ, ନିଜେ କେଉଁ ଅବସ୍ଥାରେ ଅଛି - ବୁଝି ପାରିଲା ନାହିଁ ।

ଗୁଣିଆ ଦେଖିଲା - ସୁଲଳିତ କଣ୍ଠରେ ବୋହି ଆସୁଥିବା କଣ୍ଠ ଧ୍ୱନୀଟି ଜଣେ ଦଶ ଏଗାର ବର୍ଷର ବାଳିକାର ଥିଲା । ସେହି ବାଳିକାଟି ଲୁହୁରକୁଟୀ ନଥିଲା ବୋଲି ସେ ସିଦ୍ଧାନ୍ତରେ ଉପନୀତ ହେଲା । ଆଗରୁ ଶୁଣିଥିବା ଲୁହୁରକୁଟୀର ପୌଷ୍ୟ ପୁତ୍ରୀ କଥା ତା'ର ମନେ ପଡିଗଲା ଏବଂ ନିଶ୍ଚିତ ହେଲା ଯେ ଉକ୍ତ



ଝିଅଟି ତା'ର ପୌଷ୍ୟ ପୁତ୍ରୀ ବ୍ୟତୀତ ଆଉ କେହି ନୁହେଁ । ପୁଣି ସେ ଦେଖି ସ୍ତମ୍ଭୀଭୂତ ହୋଇ ନିର୍ବାକ ରହିଗଲା ଯେ ଉକ୍ତ ନାବାଳିକା ଝିଅଟି ତାର ଦୁଇ ଗୋଡକୁ ଚୁଲି ଭିତରେ ଲଗେଇ ଦେଇଛି । ଦୁଇ ଗୋଡ କାଠ ଜଳିବା ପରି ହୁହୁ ଜଳୁଛି । ଚୂଲି ଉପରେ ଏକ ହାଣ୍ଡି ବସିଛି । ହାଣ୍ଡିରେ ରକ୍ତ ହାଣ୍ଡିଏ ପ୍ରାୟ ଅଛି ଏବଂ ତାହା ଫୁଟୁଛି । ଫୁଟୁଥିବା ରକ୍ତରେ ଅଧା ପ୍ରାୟ ଲୁହାର ଗୁଳି ଅଛି ଏବଂ ରକ୍ତ ସହ ସେ ଲୁହା ଗୁଳି ଗୁଡିକ ସମତାଳରେ ଫୁଟୁଛି । ଝିଅଟି ନିଜ ଗୋଡ ଦୁଇଟି ଜଳୁଥିବାରୁ ଖୁବ୍ ଯୋରରେ ଓ ମହା ଆନନ୍ଦର ସହ ଗୀତ ବୋଲୁଛି । ଗୀତର ତାଳେ ତାଳେ ରକ୍ତ ସହ ଲୁହା ଗୁଳି ଫୁଟୁଛି । ଝିଅ ଯେତେବେଳେ ଗାଇବା ବନ୍ଦ କରୁଛି ଲୁହା ଗୁଳି ମଧ ଫୁଟିବା ବନ୍ଦ ହେଉଛି । ପୁଣି ଗାଇଲେ ପୁଣି ଫୁଟୁଛି । ତେଣୁ ଗୀତ ସହ ଜଳନ୍ତା ଗୋଡ, ରକ୍ତ ହାଣ୍ଡି ଏବଂ ଲୁହା ଗୁଳିର ଘନିଷ୍ଠ ସଂପର୍କ ଅଛି । ଝିଅଟି ସାଧିଥିବା ତନ୍ତ୍ରର ଅଭ୍ୟାସ କରୁଛି, ପରୀକ୍ଷା କରୁଛି । ମଝିରେ ମଝିରେ ତା'ର ସାଧନାରେ ସନ୍ତୋଷ ଲଭି ଖିଲି ଖିଲି କରି ହସି ଉଠୁଛି ଏବଂ ଏହି ହସ ଗୁଣିଆର କାନରେ ବାଜି ତାକୁ ବ୍ୟତିବ୍ୟସ୍ତ କରି ପକାଉଛି । ଗୁଣିଆର ହୃଦସ୍ପନ୍ଦନର ଗତି ରକ୍ତ ହାଣିର ଲୁହାଗୁଳି ପରି ନାଚିବାକୁ ଆରମ୍ଭ କରିଛି ।

ଗୁଣିଆ ଭାବିଲା - ଯେଉଁ ସାଧିକାର ଘରର ଚାକରାଣୀ ସଦୃଶ ପୋଷ୍ୟ କନ୍ୟା ଏତେ କମ୍ ବୟସରେ ଏତେ ସାଧନା କରି ସାରିଛି ଯାହାକି ସେ ନିଜେ ମଧ ବୁଝିବାକୁ ଅସମର୍ଥ, ସେ ସାଧିକା ଜଣକ କେତେ ମହାନ ହୋଇ ନ ଥିବ? ସେ କେତେ ଜାଣି ନଥିବ ? ସମ୍ମୁଖରେ ପାଇଲେ ସେ କ'ଣ ନ କରିବ ? ତେଣୁ ଗୁଣିଆ କିଂ କର୍ତ୍ତବ୍ୟ ବିମୂଢ଼ ହୋଇ ପଡିଲା । ସେ ଭୟରେ ବରଡା ପତ୍ର ପରି ଥରିଲା । ଭାବିଲା ଏତେବେଳେ ଯଦି ଲୁହୁରକୁଟୀ ଆସେ ତା'ର ଅବସ୍ଥା କ'ଣ ହେବ ନ ହେବ ? ତେଣୁ ସେ ମନେ ମନେ ଇଷ୍ଟ ଦେବତାଙ୍କୁ ସ୍ମରଣ କଲା ଯେ ଲୁହୁରକୁଟୀ ସେ ଥିବା ମଧରେ ନ ଆସୁ କି ଉକ୍ତ ଝିଅ ତା'କୁ ନ ଦେଖୁ । ସେ ଆହରି ଭାବିଲା - ଯାହାର ପୌଷ୍ୟ ସନ୍ତାନ ଏତେ ବଡ ସାଧିକା, ସେହି ତାନ୍ତ୍ରିକ କୁଆଁରୀ କନ୍ୟା କେତେ ବଡ ସାଧିକା ହୋଇ ନଥିବ ?



ନିଜର ଅଜାଣତରେ ଉକ୍ତ ଗୁଣିଆର ଗୋଡ ସ୍ୱତଃ ପଛକୁ ଫେରିଛି ଏବଂ ସେ ଯେତେବେଳେ ସଂପୂର୍ଣ୍ଣ ଗାଁ ଦାଣ୍ଡକୁ ଆସିଗଲା, ପ୍ରକୃତିସ୍ଥ ହେଲା । ସଙ୍ଗେ ସଙ୍ଗେ ତୁଳିଆ ଚିରି ସେଠାରୁ ପଳେଇ ଗଲା । କୁହାଯାଏ ଗୁଣିଆ ଜଣକ ଘରେ ପହଞ୍ଚି ହୁର୍ଗୁନି ହୋଇ ପରେ ମୃତ୍ୟୁ ବରଣ କଲା ।

ତେଣୁ ଲୁହୁରକୁଟୀ ଯେ ଅତ୍ୟନ୍ତ ପରାକ୍ରମୀ ବଳିଷ୍ଠ ସାଧିକା ଥିଲା ଓ କୁଆଁରୀ ପାଟଣାର ଗର୍ବ ଥିଲା - ଏଥିରେ ଦ୍ୱିମତର ଅବକାଶ ନାହିଁ । କୁଆଁରୀ ପାଟଣାର ସବୁ ଗୁଣିଆ ଲୁହୁରକୁଟୀର ନାମ ଆରାଧ୍ୟ ହିସାବରେ ସଶ୍ରଦ୍ଧ ନେଇ ଥାନ୍ତି, ଜପି ଥାନ୍ତି ମଧ୍ୟ ।





# ନିତେଇ ଧୋବଣୀ

ଏହା ପୂର୍ବରୁ ସପ୍ତସଖୀଙ୍କର ମଧ୍ୟରୁ ଜ୍ଞାନଦେଇ ଓ ଲୁହୁର କଟୀର ଯତ୍‌କିଞ୍ଚିତ୍ ତାନ୍ତ୍ରିକ ଶକ୍ତି ସଂପର୍କରେ ଧାରଣା ଦିଆଯାଇ ସାରିଛି । ସେମାନଙ୍କ ମଧ୍ୟରୁ ନିତେଇ ଏପରି ଏକ ଚରିତ୍ର ଯାହାକି ପାଠକଙ୍କୁ ସ୍ତମ୍ଭୀଭୂତ କରିଥାଏ ।

ନିତେଇ ଧୋବା ଜାତିର ଜଣେ ଅବିବାହିତା ଯୁବତୀ ଓ ଏହି ସପ୍ତସଖୀ ମଧ୍ୟରେ ଥିଲା ଅନନ୍ୟ ଚରିତ୍ର ସମ୍ପନ୍ନା । ସେ ଅନ୍ୟ ସଖୀ ମାନଙ୍କଠାରୁ ଭିନ୍ନ ଥିଲା । ମନ୍ତ୍ର ଶକ୍ତିର ଚମତ୍କାରିତା ଆଧାରରେ ଜନସେବା କରି ସମସ୍ତଙ୍କୁ ଚକିତ କରି ଦେଉଥାଏ । କୋଶଳର ରାଜଧାନୀ (କୁଆଁରୀପାଟଣା) ର ସମସ୍ତଙ୍କର ମଇଳା କପଡା ପରିଷ୍କାର କରୁଥିଲା ସେ ଏକା । ଏତେବଡ ସହରର ସମସ୍ତଙ୍କର କପଡା ପରିଷ୍କାର କରି ପାରିବା ଅସମ୍ଭବ ପରି ଶୁଣା ଯାଉଥିଲେ ମଧ୍ୟ ଜନ ଶ୍ରୁତି କହେ ସତ ବୋଲି । ନିତେଇ ଧୋବଣୀ ସମଗ୍ର କୋଶଳ ରାଜ୍ୟରେ ଏଇଥିପାଇଁ ବିଖ୍ୟାତ ଥିଲା ଯେ ସେ ଚମତ୍କାରୀ ଯାଦୁଗରୀ ଶକ୍ତିକୁ ଜନ ସେବାରେ ବିନିଯୋଗ କରୁଥିଲା ।

କୁହାଯାଏ, ନିତେଇ ମଇଳା କପଡା ନେଇ ଯାଉଥିଲା ସୁବର୍ଣ୍ଣରେଖା ଓ ମାୟାବତୀ ନଦୀର ମିଳନ ସ୍ଥଳର ଘାଟକୁ । କୌଳିକ ବୃତ୍ତି ରୂପେ ସେ ଏହି କର୍ମକୁ ଆଦରି ନେଇଥିଲା । କପଡା ଆପେ ଆପେ ହାଣ୍ଡିକୁ ଯାଉଥିଲା ଓ ସିଝୁଥିଲା । ଚୁଲି ଜଳିବା ପାଇଁ ସେପରି କାଠର ଆବଶ୍ୟକତା ନଥିଲା, କପଡା ସେହିପରି ଆପେ ଆପେ ସିଝି ସିଳରେ ବାଡେଇ ହୋଇ ପାଣିରେ ଧୋଇ ହେଉଥିଲା । ନିତେଇ କେବଳ କପଡା ସଫା ହେଲା ପରେ "ଯା" ବୋଲି କହୁଥିଲା ଓ କପଡା ଟି ଶୂନ୍ୟରେ ଉଡିଯାଇ ଭଇଁଷାର ୨ ମାଇଲ ପୂର୍ବରେ ଥିବା ଧୁବଲପଡା ଠାରେ ଯାଇ ବିଛେଇ ହୋଇ ଶୁଖୁଥାଏ । ସେତେବେଳେ ଏଠାରେ କୌଣସି ଗ୍ରାମ ନଥିଲା । ଏହା ଏକ ଚଟାଣ ପରି ସମତଳ ସ୍ଥାନ ଥିଲା । ମାୟବତୀ ନଦୀ ଓ ସୁବର୍ଣ୍ଣରେଖା ନଦୀର ମିଳନ ସ୍ଥଳରୁ ଏତେଦୂର ଶୂନ୍ୟରେ ନିଜେ ନିଜେ ମନ୍ତ୍ର ବଳରେ ସଫାହୋଇ ସାରିଥିବା ଲୁଗା ଉଡିଯାଇ ଶୁଖିବାରେ କି ଯାଦୁକରୀ କୃତି ଥିଲା କେଜାଣି, ପୁଣି ଶୁଖି ସାରିବା ପରେ ଆପେ ଆପେ ଶୂନ୍ୟରେ ଉଡିଆସି ନିତେଇ ପାଖରେ ଜମା ହେଉଥିଲା ।



ନିତେଇ ସଫା ଲୁଗାକୁ ସଂପୃକ୍ତ ଘରେ ଜମା ଦେଉଥିଲା । ତେଣୁ ରାଜାଙ୍କର ଘର କପଡା ଠାରୁ ଆରମ୍ଭ କରି ସମଗ୍ର ସହରର ସମସ୍ତ ଲୁଗାପଟାକୁ ଜଣେ ସଫା କରିବା ସମ୍ଭବ ହେଉଥିଲା । ଧୋବାର ଲୁଗା ଏଠାରେ ପଡୁଥିଲା ବୋଲି ଏବେ ସ୍ଥାନ ଓ ଗାଁର ନା ଧୋବାଲୁଗାପଡା ବା ଧୁବ୍ଲପଡା ହୋଇଛି ବୋଲି କୁହାଯାଏ ।

କୋଶଳ ଇତିହାସ କହେ - ଥରେ ମଗଧ ଦେଶରୁ ଜଣେ ପଣ୍ଡିତ ନିତେଇର ତନ୍ତ୍ର ଶକ୍ତିର ପ୍ରଶଂସା ଶୁଣି ପରୀକ୍ଷା କରିବାକୁ ଆସିଲେ । ନିତେଇ ମନ୍ତ୍ର ବଳରେ ଆଗରୁ ପଣ୍ଡିତ ଆସିବା କଥା ଜାଣି ସାରିଥାଏ ଓ କେଉଁ ରୂପରେ ତାଙ୍କୁ ଯାଦୁଗରୀ ଶକ୍ତିର ପ୍ରଦର୍ଶନ କରିବ ସେ ନିର୍ଣ୍ଣୟ କରି ସାରିଥାଏ ।

ଗୋଡକୁ ଚୁଲିରେ ଲଗେଇ ରାନ୍ଧିବା ଏହି ସପ୍ତସଖୀଙ୍କର ନିଜସ୍ୱ ବିଦ୍ୟାଥିଲା । ପଣ୍ଡିତ ନିତେଇ ଘରେ ପହଞ୍ଚିଲା ବେଳକୁ ତାହାହିଁ ହେଉଥାଏ । ନିତେଇ ଦୁଇ ଗୋଡକୁ ଚୁଲିରେ ଲଗେଇ ରାନ୍ଧୁଥାଏ । ପଣ୍ଡିତ ଲୋକଙ୍କୁ ପଚରି ପଚରି ନିତେଇ ଘରେ ପହଞ୍ଚିଲା ବେଳକୁ ତାହା ଦେଖି ସ୍ତମ୍ଭୀଭୁତ ହୋଇ ଗଲେ । ପିଣ୍ଡାରେ ବସିବାକୁ ଅନୁରୋଧ କଲା ନିତେଇ । ଟିକିଏ ପରେ ତା'ର ପୌଷପୁତ୍ରକୁ ଡାକି ତାକୁ ବାଇଗଣ ପରି ଟିକି ଟିକି କରି କାଟିଦେଲା ଓ ରାନ୍ଧିଲା ।

ପଣ୍ଡିତଙ୍କୁ ସେ ରନ୍ଧା ବ୍ୟଞ୍ଜନରେ ଆପ୍ୟାୟିତ କରିବାକୁ ନିତେଇ ଚାହିଁଲା ଓ ଅନନ୍ୟୋପାୟ ହୋଇ ପଣ୍ଡିତ ମହାଶୟ ଖାଇବାକୁ ସ୍ୱୀକୃତି ପ୍ରଦାନ କଲେ । ନିରୁପାୟ ପଣ୍ଡିତ ଖାଇବାକୁ ଉଦ୍ୟତ ହେଲାରୁ ନିତେଇ ଉକ୍ତ ପୁତ୍ରର ନାମ ଧରି ଡାକି ଦେଲା ଓ ସେ ଗାଁ ଡାଣ୍ଡରୁ ଦୌଡି ଦୌଡି ଆସି ମାଁ ମାଁ ବୋଲି ଖାଇବାକୁ ମାଗିଲା । ପଣ୍ଡିତ ମହାଶୟ ନିତେଇର ଏତାଦୃଶ ଯାଦୁରେ ସ୍ତମ୍ଭୀଭୂତ ହୋଇ ନିତେଇକୁ ଗୁରୁ ବୋଲି ସ୍ୱୀକାର କଲେ ।

ସୁତରାଂ କୁଆଁରୀ ପାଟଣାର ଏହି ସପ୍ତସଖୀଙ୍କର ଚମତ୍କାରୀ ଯାଦୁବିଦ୍ୟା ମଧ୍ୟରେ ଯେ ସେବ ହିଁ ବୀଜଭାବ ରୂପେ ରହିଥାଏ, ଏଥିରେ ଦ୍ୱିମତର ଅବକାଶ ନାହିଁ । ତନ୍ତ୍ର ସାଧନା ସେବାର ନିମିତ୍ତ ଥିବାରୁ ସେମାନେ ଆକୃଷ୍ଟ ହେଉଥିଲେ, ସମ୍ମାନ ମଧ୍ୟ ପାଉଥିଲେ ।





# ସୁକୁଟୀ ଚମାରୁଣୀ

ଗର୍ଭିଣୀ ଗାଈ ମଧ୍ୟ ସୁକୁଟୀ ଚମାରୁଣୀକୁ ବାଟ ଛାଡୁଥିଲେ ବୋଲି କୁହାଯାଉଥିବା ସ୍ଥଳେ ତା'ର ହୃଦୟ ଫୁଲଠାରୁ ମଧ୍ୟ କୋମଳ ଥିଲା ବୋଲି ରୋହୀଦାସ ମାନେ କହନ୍ତି । ଅନ୍ୟ କୁଆଁରୀ ସାଧିକା ମାନଙ୍କପରି ସେ ମଧ୍ୟ କାହାରି ହେଲେ କ୍ଷତି କରୁ ନଥିଲା - ଜନ ସେବାରେ ହିଁ ତା'ର ମନ୍ତ୍ର ତନ୍ତ୍ର କୁ ବିନିଯୋଗ କରି ରାଜ ଶ୍ରଦ୍ଧାଭାଜନ ହେଉଥିଲା । କୁହାଯାଏ ଯେଉଁ ମନ୍ତ୍ର-ତନ୍ତ୍ର ଅନ୍ୟର ସାମାନ୍ୟ ମଧ୍ୟ କ୍ଷତି ସାଧନ କରିବାରେ ପ୍ରୟୋଗ କରାଯାଏ, ସେହି ମନ୍ତ୍ର-ତନ୍ତ୍ରର କୁପରିଣାମ ପ୍ରୟୋଗକାରୀର ପରବର୍ତ୍ତୀ ବଂଶଧରଙ୍କ କ୍ଷତିସାଧନ ନିଶ୍ଚୟ ଭୋଗ କରିଥାଏ । ତେଣୁ ନରମ ଓ ଚରମ ପନ୍ଥାର ମଧ୍ୟମ ମାର୍ଗୀ ସୁକୁଟୀ ଚମାରୁଣୀ ଜନ ସେବାରେ ହିଁ ନିଜର ଧ୍ୟେୟ ମଣୁ ଥିଲା, ଜୀବନ ବ୍ରତ କରିଥିଲା ।

ତତ୍କାଳୀନ ପାଟଣା ରାଜା ମାଧବଚନ୍ଦ୍ର ଦେବ ଥରେ ତାଙ୍କର ସମସ୍ତ ସୈନ୍ୟଙ୍କ ପାଦରେ ଯୋତା ଦେବାକୁ ସ୍ଥିର କଲେ । ଯୁଦ୍ଧରତ ସିପାହୀଙ୍କର ପାଦ କଷ୍ଟକୁ ରାଜା ହୃଦୟଙ୍ଗମ କରି ଏହି ପଦକ୍ଷେପ ନେବା ର ସିଦ୍ଧାନ୍ତ ନେଲେ । ସେ ପାଟଣା ନିକଟସ୍ଥ ବରପଦର ଗ୍ରାମର ଶିବ ରୋହୀଦାସ ନାମକ ଜନୈକ ବୟସ୍କ ଚମାରକୁ ଏକମାସ ମଧ୍ୟରେ ପାଞ୍ଚ ହଜାର ହଳ ଯୋତା ପ୍ରସ୍ତୁତ କରି ଦେବାକୁ ଆଦେଶ ଦେଲେ । ଏକମାସ ମଧ୍ୟରେ ପାଞ୍ଚ ହଜାର ହଳ ଯୋତା ପ୍ରସ୍ତୁତ କରିବା ଜଣକ ପକ୍ଷରେ ସମ୍ଭବ କାର୍ଯ୍ୟ ନଥିଲେ ମଧ୍ୟ ଶିବ ରୋହୀଦାସ ରାଜା ଆଜ୍ଞାକୁ ଅବଜ୍ଞା କରି ନପାରି କେବଳ ହଁ ଭରି ଘରକୁ ଫେରିଗଲା । କିନ୍ତୁ ପରବର୍ତ୍ତୀ ସମୟରେ ଏତେ ଅଳ୍ପ ଅବଧି ମଧ୍ୟରେ ପାଞ୍ଚ ହଜାର ହଳ ଯୋତା ପ୍ରସ୍ତୁତ କରି ବା ଅସମ୍ଭବ କାର୍ଯ୍ୟବୋଲି ହୃଦୟଙ୍ଗମ କରି ବିଚଳିତ ହୋଇ ପଡିଲା । ଶିବକୁ କିଛି ରୁଚିଲା ନାହିଁ । ଖାଇବା ପିଇବା ଛାଡି ସର୍ବଦା ଚିନ୍ତାରେ ବୁଡି ରହିଲା । ପାଗଳଙ୍କ ପରି ବୁଲି ବୁଲି ସୁକୁଟୀର ଶରଣାପନ୍ନ ହେବାର ସିଦ୍ଧାନ୍ତ ନେଲା । ସେ ଦିନେ ସନ୍ଧ୍ୟାରେ ସୁକୁଟୀର ଘରେ ଯାଇ ପହଞ୍ଚିଲା । କଣ୍ଟ ଅବଧିର ମାତ୍ର ତିନି ଦିନ



ବାକିଥାଏ । ଶିବ ରୋହୀଦାସ ତା'ର ଅସୁବିଧା କଥା ସୁକୁଟୀକୁ କହିଲା । ସେ ଶିବକୁ ନିଶ୍ଚୟ ସାହାଯ୍ୟ କରିବ ବୋଲି ନିର୍ଭର ପ୍ରତିଶ୍ରୁତି ଦେଲାରୁ ଶିବ ଘରକୁ ଫେରିଲା । କିନ୍ତୁ ସେ ଶିବକୁ ରାଜ ଦରବାରକୁ ଗଲାବେଳେ ସାଙ୍ଗରେ ନେଇ କରିଯିବା ପାଇଁ ଏକ ବସ୍ତୁ କପଡାରେ ଗୁଡାଇ କରି ଦେଲା ଓ କଥା କୁ ଗୋପନ ରଖିବାକୁ କହିଲା ।

ନିର୍ଦ୍ଦିଷ୍ଟ ଦିନ ରାଜଙ୍କର ଡାକରା ଆସିଲା । ଶିବ ଗଲା ରାଜଦରବାରର ସମ୍ମୁଖସ୍ଥ ଖୋଲା ପ୍ରାଙ୍ଗଣରେ ରାଜା ଓ ମନ୍ତ୍ରୀ ଦୁହେଁ ପରାମର୍ଶରେ ବ୍ୟସ୍ତଥିଲେ । ଶିବକୁ ଦେଖି ମଧ୍ୟ ଦୁହେଁ ନ ଦେଖିଲା ପରି ରହିଲେ । ଅନେକ ସମୟ ପର୍ଯ୍ୟନ୍ତ ଶିବ ଠିଆ ହୋଇ ରହିଲା । ଶେଷରେ ରାଜା ଓ ମନ୍ତ୍ରୀ ଶିବକୁ କିଛି ନକହି ସେହି ସ୍ଥାନ ଛାଡି ସିଂହ ଦ୍ୱାର ଆଡକୁ ଗଲେ । ଶିବ ବୁଝି ନପାରି କିଛି ସମୟ ସେଠାରେ ଠିଆ ହେଲା ଓ ପରେ ରାଜା ଓ ମନ୍ତ୍ରୀଙ୍କୁ ଅନୁସରଣ କଲା ।

କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ ସିଂହଦ୍ୱାର ସମ୍ମୁଖରେ ପର୍ବତ ପ୍ରମାଣେ ଯୋତା ଗଦା ହୋଇଥିଲା ଓ ରାଜା ଏବଂ ମନ୍ତ୍ରୀ ଦୁହେଁ ସିଂହଦ୍ୱାର ଆଡୁ ଫେରୁଥିଲେ । ଦୁହେଁ ନିଜ ନିଜ ପାଦରେ ଥିବା ଯୋତା ଦେଖି ଶିବ ରୋହୀଦାସର ପ୍ରଶଂସା କରୁଥିଲେ । ଶିବର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ଯୋତା ଗଦା ଆଡକୁ ଅଗ୍ରସର ହେଲା । ସେଠାରେ ସୁକୁଟୀ ଚମାରୁଣୀ ଥାଏ । ସେ ମୁରୁକି ମୁରୁକି ହସି ଶିବକୁ ହାତଠାରି ଡାକିଲା । ଶିବ ସୁକୁଟୀ ପାଖକୁ ଗଲା ଓ ପାଦ ତଳେ ପଡି ତାକୁ ମନ୍ତ୍ର ତନ୍ତ୍ର ବଳରେ ପୁନଃ ଜୀବନ ଦେଇଥିବାରୁ ଅଶେଷ ଧନ୍ୟବାଦ ଦେଇ କୃତଜ୍ଞତା ପ୍ରକାଶ କଲା ।

ପୁଣି-

ପାଟଣାରାଜା ମାଧବଚନ୍ଦ୍ରଦେବଙ୍କର ରାଜ ଦରବାର ଚାଲିଥିବା ବେଳେ ଦିନେ ଜଣେ ନବାଗତ ବ୍ୟକ୍ତି ରାଜାଙ୍କୁ ଡାହାକ ଚୋରଙ୍କର ସନ୍ଦେଶ ଦେଇଗଲା - ଆସନ୍ତା ସପ୍ତାହର ପ୍ରଥମ ଗୁରୁବାର ଦିନ ରାଜ କୋଷରୁ ଚୋରୀ କରାଯିବ ଓ ତୁମେ ସତର୍କ ଥିବ । ରାଜା ଡାହାକ ଚୋରଙ୍କର ଯାଦୁକରୀ ଚୋରୀ ବିଷୟ ଆଗରୁ ଜାଣିଥିଲେ । ସେ ଆହୁରି ମଧ୍ୟ ଜାଣିଥିଲେ ଯେ ଡାହାକ ଚୋରମାନେ ଧନୀଙ୍କ



ଠାରୁ ଚୋରୀ କରିନେଇ ଗରିବ ମଧ୍ୟରେ ବାଣ୍ଟି ସାରିବା ପରେ ହିଁ ଚୋରୀ ବସ୍ତୁର ମାଲିକ ଜାଣେ, ତା' ପୂର୍ବରୁ ମାଲିକ କୌଣସି ଟେର ପାଏନାହିଁ । ଚୋରମାନଙ୍କୁ କେହି ଦେଖି ପାରନ୍ତି ନାହିଁ କି ଚୋରୀ ବସ୍ତୁ ବିଷୟରେ କିଛି ମଧ୍ୟ ଅନ୍ତ ପାଆନ୍ତି ନାହିଁ ।

ସେ ଯାହାହେଉ, ରାଜା ଏଥିରେ ଭୀରୁତା ପ୍ରକାଶ କଲେ ନାହିଁ, ବରଂ ସେ ହସହସ ମୁହଁରେ ସନ୍ଦେଶ ବାହକକୁ ବିଦାୟ ଦେଲେ । ରାଜା ଅନେକ ଚିନ୍ତା କଲାପରେ ସୁକୁଟୀ ହିଁ ଏହାର ଉପାୟ ଚିନ୍ତା କରିପାରିବ ଭାବି ତା'କୁ ଡକେଇ ପଠେଇଲେ । ସୁକୁଟୀ ଆସିଲା ଓ ଉପାୟ ଚିନ୍ତା କରି ନିଶ୍ଚୟ ଚୋରଙ୍କୁ କାବୁ କରିବ ବୋଲି ରାଜାଙ୍କୁ ପ୍ରତିଶ୍ରୁତି ଦେଇଗଲା ।

ଗୋରଚନା ମିଶ୍ରିତ ଅଞ୍ଜନ ଆଖିରେ ଲେପନ କରି ଅଦୃଶ୍ୟ ହେବାର କଳା ସୁକୁଟୀ ଜାଣିଥିଲା । ଆହୁରି ମଧ୍ୟ ଯାହା ଦେହରେ ଏପରି ଅଞ୍ଜନ ସ୍ପର୍ଶ କରାଉଥିଲା ଅନ୍ୟ ଆଖିରେ ସେ ଅଦୃଶ୍ୟ ହୋଇ ଯାଉଥିଲା । ନିର୍ଦ୍ଦିଷ୍ଟ କଣ୍ଟ ଦିନ ସୁକୁଟୀ ଏକୁଟିଆ ବାହାରିଲା ଏବଂ ପାଟଣା ସହର ମଧ୍ୟକୁ ପ୍ରବେଶ କରିବା ଦ୍ୱାର ନିକଟରେ ଛପି ରହିଲା । ସେ ଗୋଟିଏ ଗଛର ଉଚ୍ଚ ଡାଳକୁ ଚଢ଼ି ଚୋର ମାନଙ୍କ ଗତିବିଧି ଲକ୍ଷ୍ୟ କଲା । ଯେତେବେଳେ ବହୁ ଦୂରରୁ ଘୋଡାରେ ଚଢ଼ି ଚୋରମାନେ ଦ୍ରୁତ ବେଗରେ ସହର ଅଭିମୁଖେ ଯାତ୍ରା କରୁଥିବାର ଦେଖିଲା, ସୁକୁଟୀ ଆଖିରେ ଅଞ୍ଜନ ଲେପନ କରି ନିଜକୁ ଅଦୃଶ୍ୟ କରିଦେଲା । ସେ ଧରିଥିବା ଖଣ୍ଡାରେ ମଧ୍ୟ ଉକ୍ତ ଅଞ୍ଜନ ଲେପନ କଲା ଓ ହାତରେ ଧରି ସତର୍କ ରହିଲା ।

ଚୋରଦଳ ଦ୍ରୁତ ବେଗରେ ଆସି ପ୍ରବେଶ ଦ୍ୱାର ନିକଟସ୍ଥ ବିରାଟ ବରଗଛ ତଳେ ଓହ୍ଲାଇ ନିଜକୁ ପ୍ରସ୍ତୁତ କରିବାକୁ ଲାଗିଲେ । ସେତେବେଳେ ସନ୍ଧ୍ୟା ଆଗତ ପ୍ରାୟ ଥିଲା । ସେମାନେ ନିଜକୁ ପ୍ରସ୍ତୁତ କଲାବେଳେ ଅଞ୍ଜନ ପ୍ରଲେପିତ ଖଣ୍ଡାରେ ସୁକୁଟୀ ଜଣ ଜଣ କରି ହାଣିବାକୁ ଲାଗିଲା । ଯାହକୁ ହାଣି ଦିଏ ସେ ଖଣ୍ଡାରେ ପ୍ରଲେପିତ ଅଞ୍ଜନର ସ୍ପର୍ଶରେ ଅଦୃଶ୍ୟ ହୋଇ ଯାଉଥାଏ । ସୁକୁଟୀ ସମସ୍ତଙ୍କୁ ଦେଖୁ ଥିଲା ଅଥଚ କେହି ତାହାକୁ ଦେଖିପରୁ ନଥିଲେ । ପରିଶେଷରେ ସେଠାରେ ଜଣେ ମାତ୍ର ବଞ୍ଚି ରହିଲା । ସୁକୁଟୀ ଦଉଡିରେ ମଧ୍ୟ ସାମାନ୍ୟ ଅଞ୍ଜନ ପ୍ରଲେପ



ଦେଇ ତା'କୁ ବୁଲାଇ ଉକ୍ତ ଚୋରର ହସ୍ତପଦ ବନ୍ଧନ କରି ତଳେ ପକାଇଦେଇ ଆଖିର ଅଞ୍ଜନ ପୋଛିଦେଲା । ଚୋର ଜଣକ ସୁକୁଟୀକୁ ଦେଖି ପାରି ତା'କୁ ଛାଡିଦେବା ପାଇଁ କାତର ନିବେଦନ କଲା । କିନ୍ତୁ ସୁକୁଟୀ ସବୁର ରହସ୍ୟ ଉଦ୍‌ଘାଟନ କରିବା ପାଇଁ ରାଜାଙ୍କୁ ଖବର ଦେଲା । ରାଜା ନିଜେ ପାତ୍ର ମନ୍ତ୍ରୀ ସହ ସେଠାରେ ଉପସ୍ଥିତ ହେଲେ ଓ ଚୋର ମାନଙ୍କୁ ହାଣି ଥିବାର ପ୍ରମାଣ ପାଇଁଲେ । ସୁକୁଟୀ ଅନ୍ୟଏକ ମନ୍ତ୍ର ସାହାଯ୍ୟରେ ଅଞ୍ଜନର ପ୍ରଭାବକୁ ହଟାଇ ଦେଲାରୁ ସତୁରୀ ଜଣ ଚୋରଙ୍କର ଶବ ଦେଖି ରାଜା ଆଶ୍ଚର୍ଯ୍ୟ ହୋଇଗଲେ । ସେ ବନ୍ଧନରେ ପଡିଥିବା ଚୋରର ମୁହଁରୁ ସବୁ ଶୁଣି ସୁକୁଟୀକୁ ପ୍ରଶଂସା ନକରି ରହି ପାରିଲେ ନାହିଁ । ସେ ସୁକୁଟୀକୁ କିଛି ମାଗିବାକୁ କହିଲେ । ରାଜାଙ୍କଠାରୁ କିଛି ମାଗିବାର ଯାଚନା ହେଲାପରେ ସୁକୁଟୀ ଅନ୍ୟ କିଛି ନମାଗି ଉକ୍ତ ଚୋର ମାନଙ୍କୁ ପୁନଃ ଜୀବନ ଦେବାର ଆଦେଶ ମାଗିଲା । ରାଜା ସୁକୁଟୀର ସହିଷ୍ଣୁତା ଓ ବାଦାନ୍ୟତାରେ ଅତ୍ୟନ୍ତ ପ୍ରୀତ ହେଲେ । ସୁକୁଟୀ ସମସ୍ତଙ୍କୁ ପୁନର୍ଜୀବନ ଦେଇ ତାଙ୍କର ଶ୍ରଦ୍ଧାଭାଜନ ହେଲା । ସେମାନେ ସୁକୁଟୀଠାରେ କୃତଜ୍ଞତା ପ୍ରକାଶ କଲେ ।

ସୁକୁଟୀର ଏତାଦୃଶ ଉଦାରତାରେ ରାଜା ମଧ୍ୟ ସନ୍ତୁଷ୍ଟ ହେଲେ । ସେ ସୁକୁଟୀର ଇଚ୍ଛା ଅନୁସାରେ ସମସ୍ତଙ୍କୁ ରାଜକ୍ଷମା ଦେଲେ ଏବଂ ଭବିଷ୍ୟତରେ ଆଉ ଚୋରୀ ନ କରିବାକୁ ଆଦେଶ ଦେଇ ବିଦା କଲେ ।

ତେଣୁ ସୁକୁଟୀ ସପ୍ତସଖୀ ମଧ୍ୟରେ ଯେ ଅତ୍ୟନ୍ତ ଦୟାବତୀ ଥିଲା । ଏକଥା ତା'ର କାର୍ଯ୍ୟ କଳାପରୁ ସ୍ପଷ୍ଟ ହୋଇଥାଏ । ସେ ତା'ର ସାଧନାକୁ ଦେଶ ଓ ଜନତା ର ସେବାରେ ହିଁ ନିୟୋଜିତ କରୁଥିଲା ଏବଂ ସମସ୍ତଙ୍କ ଶ୍ରଦ୍ଧା ଭାଜନ ହେଉଥିଲା । ନିମ୍ନ ଜାତିର ହୋଇ ମଧ୍ୟ ସମସ୍ତଙ୍କ ସହିତ ନିଜର ନୈଷ୍ଠିକତା ପାଇଁ ସେ ଅବାଧରେ ମିଶି ପାରୁଥିଲା । ଜନ ସେବା ହିଁ ଜୀବନର ବ୍ରତ ଥିବାରୁ ନିଜକୁ ନିଚ ଜାତିର କିମ୍ବା ଅନ୍ୟଠାରୁ ହୀନ ନ ମଣି ସମସ୍ତଙ୍କ ମନେ କରୁଥିଲା । ତେଣୁ ସପ୍ତସଖୀଙ୍କ ମଧ୍ୟରେ ସୁକୁଟୀ ସମାନ ଆଦର ଓ ସମ୍ମାନର ଅଧିକାରୀ ଥିଲା ।





# ପତ୍ରପିନ୍ଧି ଶଉରୁଣୀ

ଆଦିବାସୀ ଅଧ୍ୟୁସିତ କୁଆଁରୀ ପାଟଣାରେ ଶବର ଜାତିର ଜଣେ କୁମାରୀ କନ୍ୟା ତନ୍ତ୍ରମନ୍ତ୍ର ବଳରେ ସମସ୍ତ ପାଟଣା ରାଜ୍ୟର ଯାଦୁବିଦ୍ୟା ଜଗତରେ ଅପ୍ରତିଦ୍ୱନ୍ଦ୍ୱୀ ଭୂମିକାରେ ଥିବାର କିମ୍ବଦନ୍ତୀ କହେ । ସେ ସରଳ, ନିଷ୍କପଟ ଏବଂ ବାଳସୁଲଭ ଥିଲେ ମଧ୍ୟ ଯଦି ସାମାନ୍ୟ ବିଗିଡି ଥାଏ, ତେବେ ତା'ପରି ପ୍ରଚଣ୍ଡ ଉଗ୍ରମୂର୍ତ୍ତି ଧାରଣ ଆଉ କେହି କରିପାରୁ ନ ଥିଲେ । ତା'ର ଇଚ୍ଛା ଶକ୍ତିର ପ୍ରାବଲ୍ୟ ହିଁ ତାକୁ ଅନ୍ୟ କୁଆଁରୀ କନ୍ୟା ମାନଙ୍କ ଠାରୁ ସ୍ୱତନ୍ତ୍ର ମର୍ଯ୍ୟାଦା ଦିଆଉଥିଲା । ପତ୍ରପିନ୍ଧି ଶଉରୁଣୀ ଅନ୍ୟ କୁମାରୀ ସାଧିକାଙ୍କ ହୃଦୟରେ ସ୍ୱତନ୍ତ୍ର ସ୍ଥାନ ରଖୁଥିଲା ।

ପତ୍ରପିନ୍ଧି ନାମ କରଣ ହେବାରେ ତାତ୍ପର୍ଯ୍ୟ ହେଲା ଯେ ସେ ରାଜଧାନୀ (ପାଟଣା) ଅଞ୍ଚଳର ସମସ୍ତଙ୍କୁ ପତ୍ର ଯୋଗଉଥିଲା ଏବଂ ପତ୍ର ହିଁ ତା'ର ଭୂଷଣ ଥିଲା । ସେ ବାଲ୍ୟ କାଳରୁ ପତ୍ରକୁ ଅତି ଭଲ ପାଉଥିଲା, ଏପରି କି ଛୋଟ ସମୟରେ ପତ୍ରକୁ ପିନ୍ଧି କୌତୁକ ମଧ୍ୟ କରୁଥିଲା । ତେଣୁ ତା'ର ନାମ ପତ୍ର ପିନ୍ଧି ହେଲା ବୋଲି ଜନ ମୁଖରୁ ଶୁଣାଯାଏ ।

ସେ ଯାହା ହେଉ ନା କାହିଁକି - ପତ୍ରପିନ୍ଧି ନାମରେ ଅନେକ କଥା ଶୁଣା ଯାଉଥିଲା । ସେ ସେବା ମନୋଭାବ ରଖି ଅନ୍ୟର କାମ କରି ସଫଳ ହେଉଥାଏ । ନିଜର ସାଧନା ଅର୍ଜିତ ସମସ୍ତ ମନ୍ତ୍ର ଶକ୍ତିକୁ ଜନସେବାରେ ଉତ୍ସର୍ଗ କରିବାକୁ ଆପ୍ରାଣ ଚେଷ୍ଟା କରୁଥିଲା । ସମଗ୍ର ରାଜଧାନୀରେ ବ୍ୟବହାର ହେବାକୁ ଥିବା ସମସ୍ତ ପତ୍ର ସେ ଏକା ସମସ୍ତଙ୍କୁ ଯୋଗାଉଥାଏ । ଯେହେତୁ ସେ ସମୟରେ ଧାତବ ପାତ୍ରର ଅଭାବ ଥିଲା, ଲୋକେ ପତ୍ର ନିର୍ମିତ ଖଲି ଆଦିରେ ତାଙ୍କର ସେହି ଅଭାବକୁ ଦୂର କରୁଥିଲେ । ତେଣୁ ତା' ଉପରେ ଅଧିକାଂଶ ଲୋକ ନିର୍ଭର କରିବାକୁ ବାଧ୍ୟ ହେଉଥିଲେ । ପତ୍ର ଉପଲବ୍ଧିର ମଧ୍ୟ କୌଣସି ଅଭାବ ନଥିଲା । ଗାଁ ମୁଣ୍ଡରୁ ହିଁ ପତ୍ର ଥାଏ । ତଥାପି ଲୋକ ତା'ର ଶ୍ରଦ୍ଧା ପାଇଁ ତା'କୁ ଆଗ୍ରହ କରୁଥିଲେ । ଲୋକଙ୍କୁ ନିକଟସ୍ଥ ଝାଡରୁ ପତ୍ର ଆଣିକରି ଦେବାର ସେ ନିଜର



କର୍ତ୍ତବ୍ୟ ମନେ କରୁଥାଏ । ଏହି ଅଭାବ ଜନିତ ସେବା ସେ ନିଜ ସିଦ୍ଧି ପ୍ରସୁତ ମନ୍ତ୍ର ବଳରେ କରୁଥିଲା ବୋଲି କହନ୍ତି । ସେ ଯେତେବଡ ଗଛ ହେଲେ ମଧ୍ୟ ମନ୍ତ୍ର ବଳରେ (ସମ୍ମୋହନୀ ବିଦ୍ୟା ବଳରେ)ତାକୁ ନିଜର ଆୟତ୍ତାଧିନ କରୁଥିଲା ଏବଂ ତା'ର ଇଚ୍ଛା ମୁତାବକ ଗଛ ନଇଁ ପଡୁଥାଏ । ଆବଶ୍ୟକୀୟ ପତ୍ର କିମ୍ବା ଫଳ ତୋଳି ସାରିବା ପରେ ସେ ଯା ବୋଲି କହିଲେ ଗଛ ସିଧା ହେଉଥିଲା । ତେଣୁ ମନ୍ତ୍ର ବଳରେ ସମଗ୍ର ସହରର ପତ୍ର ଜନିତ ଅଭାବକୁ ଦୂର କରି ପାରିବା ପରିମାଣର ପତ୍ର ସେ ତୋଳୁଥିଲା ଏବଂ ଖଲି ଇତ୍ୟାଦି ସିଲେଇ କରି ଘରେ ଘରେ ପହଞ୍ଚାଇ ଦେଉଥିଲା ।

କଥିତ ଅଛି – ପତ୍ରପିନ୍ଧି ଶଉରୁଣୀ ଭବିଷ୍ୟତ ଜ୍ଞାତାଥିଲା । ଆଗରୁ ଅନେକ କଥା ସେ ଜାଣି ପାରୁଥିଲା । ସମଗ୍ର ଭାରତରେ ପ୍ରସିଦ୍ଧି ଲାଭ କରିଥିବା ସପ୍ତସଖୀଙ୍କର ଏହି କାଉଁରୀ ବିଦ୍ୟା ଅନେକଙ୍କୁ ଆଶ୍ଚର୍ଯ୍ୟ ଚକିତ କରୁଥିବା ବେଳେ ଅନ୍ୟ ମାନଙ୍କୁ ଈର୍ଷାନ୍ୱିତ ମଧ କରୁଥିଲା ।

ଥରେ ଏହି ସପ୍ତସଖୀଙ୍କ ମଧରୁ ପତ୍ରପିନ୍ଧିର ପାରିଦର୍ଶିତା କୁ ପରୀକ୍ଷା କରିବା ନିମିତ୍ତ ତକ୍ଷଶିଳାରୁ ଜଣେ ବୌଦ୍ଧ ସନ୍ୟାସୀ ଆସି କୁଆଁରୀ ପାଟଣାରେ ପହଞ୍ଚିଲେ । ସେ ଜଣେ ବିଶିଷ୍ଟ ତନ୍ତ୍ର ସାଧକ ଥିଲେ । ପତ୍ରପିନ୍ଧିକୁ ପରାସ୍ତ କରି ସମସ୍ତ ସପ୍ତସଖୀଙ୍କ ମୁହଁରେ କଳା ବୋଳିବା ତାଙ୍କର ଉଦ୍ଦେଶ୍ୟ ଥିଲା । କାରଣ ତାଙ୍କର ଧାରଣା ଥିଲା ଯେ ଶବର ଜାତିର (ଆଦିବାସୀ) ଝିଅଟିର ତନ୍ତ୍ର ସାଧନାରେ ସେତେ ପାରଦର୍ଶୀତା ଆସି ନଥିବ ଓ ତାକୁ ପରାସ୍ତ କଲେ କାର୍ଯ୍ୟ ସିଦ୍ଧି ହେବ । ଅର୍ଥାତ ପତ୍ରପିନ୍ଧିକୁ ଅନ୍ୟ ସଖୀମାନଙ୍କଠାରୁ ସହଜରେ ପରାସ୍ତ କରିହେବ ଭାବି ତାକୁ ହିଁ ପରୀକ୍ଷା କରିବାକୁ ଇଚ୍ଛା କରିବାକୁ ଆସିଲେ ।

ଶୀତ ମାସ ବନାଞ୍ଚଳର ପ୍ରାୟ ସମସ୍ତେ ଘରେ ଘରେ ଅଁନ୍ତରା ଜାଳି ନିଆଁରେ ସେକି ହେବା ଏକ ଅନିର୍ବଚନୀୟ ଅଭ୍ୟାସ । ଜଙ୍ଗଲର ଶୀତ ସାଙ୍ଗକୁ ତାର ଐକାନ୍ତିକ ପରିବେଶକୁ ଗମ୍ଭୀର କରୁଥିଲା । ତକ୍ଷଶିଳାର ବୌଦ୍ଧ ସନ୍ୟାସୀଙ୍କର ଆଗମନର ଉଦ୍ଦେଶ୍ୟ ଜାଣିପାରିଲା ପତ୍ରପିନ୍ଧି । ରହୁଥିବା ଘରେ ନଡା ଛପର ଥିଲା । କାରଣ ଅଧିକାଂଶ ଲୋକେ ଘରେ ନଡା ଛପର ହିଁ କରୁଥିଲେ ।



ଭବିଷ୍ୟତ ଛଟା ପତ୍ରପିନ୍ଧି ତକ୍ଷଶିଳାର ବୌଦ୍ଧ ଅଗନ୍ତୁକ ତାନ୍ତ୍ରିକଙ୍କର ବିଷୟରେ ଜାଣିପାରି ସେ ଦିନ ନିଜ ରହୁଥିବା ଘରର ଛାତ ଉପରକୁ ଚଢିଯାଇ ସେଥିରେ ଅଗ୍ନି ସଂଯୋଗ କଲା ଓ ଭାବ ବିଭୋର ହୋଇ ଆନନ୍ଦ ମନରେ ସେହି ନିଆଁ ରେ ନିଜେ ସେକି ହେବାରେ ଲାଗିଲା । ତନ୍ତ୍ର ବଳରେ ନଡା ଛାତ ଉପରେ ନିଆଁ ଜାଳିବା ଅର୍ଥାତ ନିଜ ଘର ଉପରେ ନିଆଁ ଜାଳି ସେକି ହେଲା ବେଳକୁ ପାଶ୍ୱବର୍ତ୍ତୀ ନଡାରେ ଆଦୌ ନିଆ ନ ଲାଗିବା ଏବଂ ନିଜେ ଘର ମାଲିକ ନିଜ ଛାତ ଉପରେ ନିଆଁ ଜାଳିସେକି ହେବା ଘଟଣାଟି ବୌଦ୍ଧ ତାନ୍ତ୍ରିକଙ୍କୁ ଚକିତ କରିଦେଲା । ସେ ପତ୍ରପିନ୍ଧି ଶଭରୁଣୀକୁ ଆଉ ପରୀକ୍ଷା ନକରିବା ସିଦ୍ଧାନ୍ତ ନେଇ ଉକ୍ତ ସ୍ଥାନ ଛାଡି ଜୀବନ ବିକଳରେ ପଳାୟନ କଲେ । ଯାହାକୁ ପରୀକ୍ଷା କରି ଆସିଥିଲେ, ସେ ନିଜଠାରୁ ଯଥେଷ୍ଟ ଗୁଣରେ କୁଶଳୀ ଥିବାରୁ ବୌଦ୍ଧ ତାନ୍ତ୍ରିକ ଜଣକ ଲଜ୍ଜିତ ହୋଇ ଥିଲେ । ତା'ଙ୍କ ଦେହ ଭୟରେ ଘର୍ମାକ୍ତ ହୋଇ ପଡିଥିବା ଅସ୍ୱାଭାବିକ ଥିଲା । ସେ ଗଲାବେଳେ ପଛଘୁଞ୍ଚା ଦେଇ ଦେଇ ପଳାୟନ କରିଥିଲେ । ଅନ୍ୟମାନେ ବୁଝି ନେଇଥିଲେ ଯେ ସେ ଜଣେ ଗୁଣିଆ ଶ୍ରେଣୀୟ ଥିଲେ ଏବଂ ପତ୍ରପିନ୍ଧିକୁ ପରୀକ୍ଷା କରିବାକୁ ଆସି ନିଜେ ପରାଜିତ ହୋଇ ପଳାୟନ କରୁଛନ୍ତି । ଏତିକି ଆଷ୍ଚର୍ଯ୍ୟ ଥିଲା ଯେ ନଡା ଛାତ ଉପରେ ନିଆଁ ଲାଗିଥିବା ବିଷୟଟି କେବଳ ବୌଦ୍ଧ ତାନ୍ତ୍ରିକଙ୍କୁ ଦୃଶ୍ୟ ଥିଲା ବେଳେ ଅନ୍ୟ ମାନଙ୍କୁ ପତ୍ରପିନ୍ଧି କିମ୍ବା ନିଆଁ ଲାଗିବା ଆଦୌ ଦେଖାଯାଉ ନଥିଲା । ପତ୍ରପିନ୍ଧି ସ୍ୱଭାବ ସୁଲଭ ଭାବରେ ଖଲି ସିଲେଇ କରିବାରେ ଓ ଆନନ୍ଦରେ ଅନ୍ୟମାନଙ୍କ ସହ କଥା ଭାଷା ହେବାରେ ବ୍ୟସ୍ତଥିବାର ଦୃଶ୍ୟ ହେଉଥାଏ । ଲୋକେ ବୌଦ୍ଧ ତାନ୍ତ୍ରିକଙ୍କର ଏତାଦୃଶ ପଳାୟନରେ ଆମୋଦ ଅନୁଭବ କରୁଥିଲେ ଓ ପତ୍ରପିନ୍ଧିର ଯାଦୁବିଦ୍ୟାକୁ ପ୍ରଶଂସା ନ କରି ରହି ପାରୁ ନଥିଲେ । ଏଥର ମଧ୍ୟ ତାହାହିଁ ହୋଇ ଥିଲା ।

ପତ୍ରପିନ୍ଧି ସମଗ୍ର ପାଟଣା ନଗରକୁ ପତ୍ର ଯୋଗାଇ ଏତେ ବିଶାଳ ଜନତାର ସେବା କରି ପାରୁ ଥିବାରୁ ଗର୍ବିତା ଥାଏ । ସେ ଅନ୍ୟ ମାନଙ୍କୁ ଏତିକି ପ୍ରେରଣା ଦେଉଥାଏ ଯେ ଜନ ସେବା ହିଁ ଭଗବାନ ସେବା ଅଟେ । ତେଣୁ ଭଗବାନଙ୍କର ସେବାରେ ନିଜର ସାଧନାଲବ୍ଧ ଏତେ ବିଶାଳ ସଫଳତାକୁ ବିନିଯୋଗ କରି ପାରିଥାଏ ବୋଲି ଆତ୍ମ ସନ୍ତୋଷ ମଧ୍ୟ ଲାଭ କରୁଥାଏ ।



ତେବେ ଦୁଇ ହଜାର ବର୍ଷର ସେହି କୁଆଁରୀ କନ୍ୟା ଶବରୁଣୀକୁ ଆଜି କେବଳ ଶବର ଜାତିର କାହିଁକି ସମଗ୍ର କୁଆଁରୀ ପାଟଣା ଅଞ୍ଚଳରେ ଦେବୀର ମର୍ଯ୍ୟାଦା ଦିଆଯାଏ । ଜଣେ ଆଦିବାସୀ ସଂପ୍ରଦାୟର କୁଆଁରୀ କନ୍ୟା ସ୍ୱୀୟ ସାଧନାକୁ ଯେଉଁ ସେବାରେ ରୂପାନ୍ତରିତ କରି ଜନମନକୁ ଆକର୍ଷି ପାରିଥଲା, ତାହା ଅନ୍ୟ ସାଧକଙ୍କୁ ପ୍ରେରଣା ଯୋଗାଇ ଆସିଛି । ତନ୍ତ୍ର ସାଧନା ଯେ ଜନସେବାରେ ବିନିଯୋଗ ନିମିତ୍ତ ସୃଷ୍ଟି । ଏହି ତନ୍ତ୍ର ଯେତେବେଳେ ଜନ ସେବାରୁ ବିଚ୍ୟୁତ ହୋଇ ଅନ୍ୟର ଅମଙ୍ଗଳ କରିବାରେ ନିୟୋଜିତ ହୋଇ ଥାଏ, ସେତେବେଳେ ସେହି ତନ୍ତ୍ର ମାତ୍ର କଏ ପୀଢୀରେ ହିଁ ସମାପ୍ତ ହୁଏ; ବରଂ ତା'ର ପରବର୍ତ୍ତୀ ବଂଶଧର ମାନେ ବିଶେଷ କ୍ଷତିଗ୍ରସ୍ତ ହୋଇ ସାମାଜିକ ମାନ୍ୟତା ହରାଇ ଅପଦସ୍ତ ଓ ଲଜ୍ଜିତ ହୋଇ ଥାନ୍ତି । ପତ୍ରପନ୍ଥି ଶଉରୁଣୀରୁ ଏତିକି ଶିକ୍ଷା ମିଳିଥାଏ ।





# ଗାର୍ଗି ଗଉଡୁଣୀ

ମୁଁ ଆଗରୁ ଅନ୍ୟସଖୀଙ୍କ ବିଷୟରେ ଯତ୍‌କିଞ୍ଚିତ୍ କହିସାରିଛି । ବର୍ତ୍ତମାନ ସର୍ବକନିଷ୍ଠା ଗାର୍ଗି ଗଉଡୁଣୀ ସମ୍ପର୍କରେ ଆଲୋକପାତ କରିବା ପୂର୍ବରୁ କହି ରଖୁଛି ଯେ ଏହି ସାତ କୁଆଁରୀ ମାନବୀ ମାତ୍ର ଥିଲେ । ସେମାନେ ଯାଦୁକାରୀ ଶକ୍ତି ବଳରେ ସାରା ଭାରତରେ ପ୍ରସିଦ୍ଧି ଲାଭ କରିଥିଲେ କିନ୍ତୁ ସେମାନେ ଆଦୌ ଦେବୀ ନଥିଲେ । ମାନବ ସେବା କରି ଜନ ମାନସ ପଟରେ ଶ୍ରଦ୍ଧାଭାଜନ ହୋଇଥିବାରୁ କେହି କେହି ସେବା ପାଇଁ ତାଙ୍କୁ ଦେବୀ ଆସନରେ ଅଧିଷ୍ଠିତା କରାନ୍ତି । କିନ୍ତୁ ଏହି ସପ୍ତସଖୀ ଆଦୌ 'ସାତ ବହନୀ' ଦେବୀନଥିଲେ । ସାତବହନୀ ବିଷୟରେ ଚଣ୍ଡୀ ପୁରାଣରୁ ଆପଣମାନେ ଯଥେଷ୍ଟ ଆଲୋକ ପାଇପାରିବେ । ସେବା କରି ମାନବ ଦେବତାର ଆସନରେ ପୂଜିତ ହୁଏ । ଏହା ସପ୍ତସଖୀଙ୍କ ଠାରେ ଘଟିଥିଲା କାରଣ ସେମାନେ ମାନବ ସେବାକୁ ହିଁ ଆଦରି ନେଇ ମାନବ ସେବା ହିଁ ଭଗବାନଙ୍କ ସେବା ମନେ କରି ମାନବ ମାତ୍ରରେ ଯାଦୁକରୀ ବିଦ୍ୟା ମାଧମରେ ସେବା କରିବା ବ୍ରତ କୁ ଆଦରି ନେଇ ଥିଲେ । ସୁତରାଂ ମାନବ ସେବା କୁ ହିଁ ଯାଦୁବିଦ୍ୟାର ମାଧମ ମନେକରି ସମଗ୍ର ଭାରତ ବର୍ଷରେ ବିଖ୍ୟାତ ହୋଇ ଏହି ପାଟଣା ମାଟିର ମର୍ଯ୍ୟାଦାକୁ ସମଗ୍ର ଭାରତ ବିଖ୍ୟାତ କରାଇ ପାରିଥିଲେ ସେମାନେ । ତେବେ ଆସନ୍ତୁ କନିଷ୍ଠା ଗାର୍ଗି ବିଷୟରେ କିଛି ଶୁଣିବା ।

ଯୌବନର ଉନ୍ମାଦରେ ଉନ୍ମତ୍ତ ସୂର୍ଯ୍ୟ ପ୍ରଚଣ୍ଡ ଗରମ ଥାଏ । ଆଶ୍ୱିନର ପ୍ରଥମ ପାଦରେ ବାଘବି ଆହାର ଖାଇବାକୁ ଭୟ କରୁଥିଲା ସେଦିନ । ଏପରି ଏକ ସମୟରେ ନିତ୍ୟ ନୈମିତ୍ୟ ସାଧନାସାରି ଆସିଥାଏ ଗାର୍ଗି । ଘରେ ପହଞ୍ଚି ବାସିପଖାଳ ସହ ହେଁଣ୍ଟୁଆ ଓ ଶୁଖା ଝିମୋରେ ପାତଳଘଣ୍ଟାର ଏକ ସମ୍ମିଶ୍ରିତ ପାଗ ତା'ର ପାଟିରୁ ଲାଳ ଗଡାଉ ଥାଏ । ସେ ଘରେ ପହଞ୍ଚିବାର ଠିକ୍ ପରେ ପରେ ପଖାଳ ଖୁରି (କଂସା)ରେ ବସି ପଡିଥିଲେ । ପ୍ରିୟବସ୍ତୁ ଆସ୍ୱାଦର ଦୀର୍ଘତା ପ୍ରତ୍ୟେକ ପ୍ରାଣୀଙ୍କ ପ୍ରବୃତ୍ତି କାମନା କରେ ଏବଂ ଗାର୍ଗି ବା ସେଥିରୁ ବାଦ ଯାଆନ୍ତା କିପରି ?



ବାସି ପଖାଳ ସହ ପ୍ରତ୍ୟୁଷରୁ ରାନ୍ଧିଥିବା ପାଗଟିର ସ୍ୱାଦୁକୁ ଅସ୍ୱାଦ କରିବାକୁ ଭୂଲି ପାରିନଥିଲା ।

ମାତ୍ର ଦୁଇ କି ତିନି ଗେଫା ଖାଇ ସାରିଛି କି ନାହିଁ ବାହାରୁ ପାଟି ଶୁଭିଲା ବଡେଇ ! ଘରେ ଅଛୁ ?

ପାଟିର ବାସି ଓ ହେଁଡୁଆ ଗେଫା ସହ ଉତ୍ତର ନ ଦେଇ ରହିପରି ନଥିଲା ଗାଙ୍ଗି । କହିଲା - ବାବା ! ବାଟ ଘରେ ଟିକେ ବସ ।

ବୁଢାଟି ଗାଙ୍ଗି ଖାଉଥିବାର ବୁଝି ଗଲା ଓ 'ହଁ ବଡ଼େଇ ବସୁଛି' କହି ବାଟ ଘରେ ବସି ଅପେକ୍ଷା କଲା ଏବଂ ଝଲୋ ଖଟ ଉପରେ ତା'ର ବାଂଟୋ କାହାଳିଟି ପଲଠେଇଲା । ତାହା ମଧ୍ୟ ଏକ ଅସ୍ୱାଦ । ବୃଦ୍ଧର ଅତି ପ୍ରିୟ ସେହି ବାଂଟୋଟିକୁ ତନ୍ମୟ ହୋଇ ଟାଣୁଥାଏ ଓ ଗାଙ୍ଗି ଶିଘ୍ର ଖାଇସାରି ଆସୁ ବୋଲି କାମନା କରି ପାଟି-ଚନଖା ଗଣୁଥାଏ । ଘରେ ଜଣେ ଡାକିଦେଇ ଉପସ୍ଥିତି ଅନୁଭବ କଲାପରେ ଓ ଡାକୁଥିବା ବ୍ୟକ୍ତିଟି ନିଜ ଠାରୁ ବଡ ବୋଲି ଜାଣି ପାରିଲେ ଯେତେ ପ୍ରିୟ ଅସ୍ୱାଦ ହେଉନା କାହିଁକି ସାନ ଶିଘ୍ର ଖାଇବା ସମାପନ କରି ଉଠିଥାଏ । ଗାଙ୍ଗି କ୍ଷେତ୍ରରେ ମଧ୍ୟ ତାହାହିଁ ହେଲା । ସେ ଶୀଘ୍ର ଶୀଘ୍ର ଖାଇସାରି ଅଇଁଠାକୁ ଉଛୁନା ସାଇରେ 'ପଛେ ମାଜିବି' ଭାବି ଥୋଇ ଅତ୍‌ମନ ପରେ ବୃଦ୍ଧ ବାବା ପାଖକୁ ହାତ ପୋଛି ପୋଛି ଆସିଲା ।

ପ୍ରଶ୍ନବାଚୀ ହସଥାଏ ଗାଙ୍ଗି ମୁହଁରେ । ବୃଦ୍ଧ ଗାଙ୍ଗି ମୁହଁର ଅବ୍ୟକ୍ତ ପ୍ରଶ୍ନର ହସ ଦେଖି କହିବାକୁ ଲାଗିଲା 'ମୋର ଗାଇ ପ୍ରତିଦିନ ଅଡେ ଗୋରସ ଦିଏ । ସେ ଆଜିକୁ ୨ ମାସ ହେଲା ରୀତିମତ ଗୋରସ ଦେଇ ଆସିଛି । କିନ୍ତୁ ଆଜି ମୁଁ ସକାଳେ ଗୋରସ ଦୁହିଁଲା ବେଳକୁ ଗୋରସ ବଦଳରେ ପହ୍ନାରୁ ରକ୍ତ ବାହାରିଲା । ମୁଁ ଘବରେଇ ଗଲି । କହତ ବଡମାଁ ଏଟା ଦୁର୍ବୃତ୍ତର କାଣ୍ଡ ତ ?

ଗାଙ୍ଗି ହଠାତ୍ କହିଲା - ବାବା ! ପରଶ୍ରୀକାତର ଗୁଣିଆଁ ତୁମର ଶିରୀ ସହି ପାରିଲା ନାହିଁ । ମନ୍ତ୍ରଯନ୍ତ୍ର ଯଦି ଅନ୍ୟର କ୍ଷତିସାଧନାରେ ନିୟୋଜିତ କରାଯାଏ, ସେହି ମନ୍ତ୍ର ମନ୍ତ୍ର ନୁହେଁ, ସେହି ମନ୍ତ୍ର ହିଁ ତା'ର ପରବର୍ତ୍ତୀ ବଂଶଧରର କ୍ଷତି ନିଶ୍ଚୟ କରେ । ଏତିକି କହି ସେ ଗାଇ ଭଲ ହୋଇ ଯିବ କହି ଅଭୟ ଦେଲା ଓ ବୁଢାକୁ





ଘଲବାବା କହି ତା'ସହ ତା'ର ଗୁହାଳ ପର୍ଯ୍ୟନ୍ତ ଗଲା । ଗାଈଟି ବନ୍ଧା ହୋଇଥାଏ । ଗାଙ୍ଗି ଗାଈଟିକୁ ମୁଣ୍ଡଆଡୁ ଆଉଁସି ଦେଲା ଓ ପିଠିରେ ସ୍ନେହ ଥାପୁଡାଟିଏ ମାରି ଯା' ବୋଲି କହି ବୁଢାକୁ କହିଲା - ଏଥର ଗାଈ ଠିକ୍ ହୋଇଗଲା ବାବା । ସେହି ଦିନୁ ସେ ଗାଈ ଠିକ୍ ତ ହେଲା, କିନ୍ତୁ ଏପରି ଗୋମାତା ଉପରେ ପ୍ରୟୋଗ କରାଯାଉ ଥିବା କ୍ଷତିକାରକ ମନ୍ତ୍ର ଗାଙ୍ଗି ଭୟରେ ଅନ୍ୟମାନେ ପ୍ରୟୋଗ କରିବାର ସାହସ କରି ନଥିଲେ । ଆଜିକାଲି କାଁ ଭାଁ ସ୍ୱାର୍ଥାନ୍ୱେଷୀ ଗୁଣିଆ ମାନେ ଏହି ପରି ମନ୍ତ୍ର ପ୍ରୟୋଗ କରି ମନର ସାଧ ମେଣ୍ଟାଉଥିବାର ଦେଖା ଯାଏ ଯାହାକି ସ୍ପୃହଣୀୟ ନୁହେଁ ।

ପୁଣି, ସେତେବେଳେ ବେରାର ରାଜ୍ୟରୁ ପାଟଣାଗଡକୁ ବାରମ୍ବାର ଚୋର ଓ ଡକାୟତ ମାନେ ଆସୁଥିଲେ । ପାଟଣା ସେତେବେଳେ ଏକ ଧନାଢ୍ୟ ରାଜ୍ୟଥିଲା । ବିଭିନ୍ନ ଉପାୟରେ ଡକାୟତି କରିବା ଡକାୟତଙ୍କର ଚିରାଚରିତ ଅଭ୍ୟାସ ହୋଇ ଯାଇଥାଏ । ଥରେ କଣ୍ଟାବାଞ୍ଜିରୁ କେତେଜଣ ଲୋକ ଆସି ପାଟଣା ରାଜାଙ୍କଠାରେ ଗୁହାରି କଲେ ଏହି ଚୋରଙ୍କ ବିପକ୍ଷରେ । କଣ୍ଟାବାଞ୍ଜି ସେତେବେଳେ ଏକ ଛୋଟ ଗାଁ ଥିଲା ଓ ଆଧୁନିକ ବେହେରେନ ସିଲଟ ଆଡକୁ ମୂଳ ବସ୍ତିଟି ଥିଲା । ଉକ୍ତ ଅଭିଯୋଗକରୀ ମାନଙ୍କୁ ଚୋର ଧରିବାକୁ ପ୍ରତିଶ୍ରୁତି ଦେଇ ରାଜା ତାଙ୍କୁ ବିଦାୟ କଲେ ।

ବିଚିତ୍ର ଚୋର ସେମାନେ । ଚୋରମାନେ ହଠାତ୍ ଗୋଟିଏ ଘରେ ପଶି ଯାଉଥିଲେ ଓ ଯାହା ଘରେ ପଶୁଥିଲେ ସେ ଘରର ସମସ୍ତେ ମୂକ ପାଲଟି ଯାଉଥିଲେ । ବିନା ପ୍ରତିବାଦ ଓ ପ୍ରତିରୋଧରେ ଘରର ସମସ୍ତ ସମ୍ପତ୍ତିକୁ ନେଇ ପଳାଇ ଯିବାର ପ୍ରାୟ ପ୍ରହର ପରେ ହିଁ ଘରର ମାଲିକ ପ୍ରକୃତିସ୍ଥ ହେଉଥିଲେ । ଏହା ମନ୍ତ୍ରର କରାମତି ବୋଲି ରାଜା ଆଗରୁ ଜାଣି ଥିଲେ ଏବଂ ଗାଙ୍ଗିକୁ ଏହି ସମସ୍ୟାର ସମାଧାନ କରିପାରିବ ବୋଲି ଭାବି ଡକାଇଲେ । ଗାଙ୍ଗି ସମସ୍ତ ବିଷୟ ଅବଗତ ହେଲାପରେ ସମସ୍ୟାର ସମାଧାନ କରିବି ବୋଲି ନିର୍ଭର ପ୍ରତିଶ୍ରୁତି ଦେଇ ଏକ ପାନେ ବାଡି ଦେଇ କଣ୍ଟାବାଞ୍ଜି ଲୋକଙ୍କୁ ବିଦା କରି ଦେଲା । କେବଳ ପାନେ ବାଡିଟିଏ ଦେଇ ବିଦା କରିବାର ଅଭିପ୍ରାୟ ଉଭୟ ରାଜା ଓ ଅଭିଯୋଗକରୀଙ୍କୁ ଅଶ୍ଚର୍ଯ୍ୟ ଲାଗୁଥାଏ । ଯଥା ସମୟରେ ଗଉଡ ଘରର ପାଚିଥିବା






ପାଟେନଟି କଣ୍ଟାବାଞ୍ଜିର ସଂପୃକ୍ତ ଅଭିଯୋଗକାରୀ ନେଇ ଘରକୁ ଗଲେ । ସେ ଦିନ ମଧ୍ୟ ପୂର୍ବପରି ଚୋର ମାନେ ରାତିରେ ଚୋରି କରିବାକୁ ଗୋଟିଏ ଘରେ ପଶିଲେ । ମତ୍ର ସେମାନେ ଚୋରି କରିବାକୁ ତତ୍ପର ହେଲା ମାତ୍ରେ ପାଟେନ ଟି ତା'ର କାମ କରି ଚାଲିଲା । ସେ ଏତେ ଯୋରରେ ଉକ୍ତ ଚୋରଙ୍କୁ ପିଟିଲା ଯେ ସେମାନେ ସମସ୍ତେ ହତବାକ ହୋଇ ପଳାୟନ କଲେ । କିଏ ପିଟୁଛି, କିପରି ପିଟୁଛି କାହିଁରେ ପିଟୁଛି - ଏସବୁ କେହି ଦେଖିପାରୁ ନ ଥିଲେ କି ଜାଣି ପରୁ ନ ଥିଲେ । ପରେ କୁଆଁରୀ ପାଟଣାର କୁଆଁରୀ ମାନଙ୍କର ମନ୍ତ୍ରିତ ବାଡିର କରାମତି ହେଲା ବୋଲି ଜାଣି ପାଟଣା ରାଜ୍ୟ ଛାଡି ପଳାୟନ କଲେ ଓ ସେହି ଦିନ ଠାରୁ ମାଡ ଭୟରେ ଚୋରାଇବା ମଧ୍ୟ ଛାଡିଦେଲେ ।

ସେତେବେଳ ପାଟଣା ରାଜ୍ୟ ଉତ୍କୃଷ୍ଟ ଗୋରୁ ପାଇଁ ପ୍ରସିଦ୍ଧ ଥିଲା । ଏଠାକାର ଗୋରୁଙ୍କୁ ଚୋରୀ କରିନେଇ ଅନ୍ୟତ୍ର ବିକିବା ଚୋର ମାନଙ୍କର ଏକ ବୃତ୍ତିରେ ପରିଣତ ହୋଇଥାଏ । ପ୍ରତ୍ୟହ ବିଭିନ୍ନ ସ୍ଥାନରୁ ଗୋରୁ ଚୋରୀ ଖବର ରାଜାଙ୍କ ପାଖରେ ଆସି ପହଞ୍ଚୁଥାଏ । ରାଜା ଯେତେ ଚେଷ୍ଟ କଲେ ମଧ୍ୟ ବର୍ଷ ବର୍ଷ ଧରି ଚୋରଙ୍କୁ ଧରିବାରେ ଅସମର୍ଥ ହେଲେ । ମହାମନ୍ତ୍ରୀ ଗାଙ୍ଗି ଘରେ ନିଜେ ପହଞ୍ଚିବା ଦେଖି ସେ ଆଶ୍ଚର୍ଯ୍ୟ ହୋଇ ଯାଇ ଉଦ୍ଦେଶ୍ୟ ଜାଣିବାକୁ ଚାହିଁଲା । ମନ୍ତ୍ରୀଙ୍କ ମୁହଁରୁ ସେ ସବୁ ଶୁଣି ଗୋରୁ ଚୋରଙ୍କୁ ଧରିବା ପାଇଁ ପ୍ରତିଶ୍ରୁତି ଦେଇ ତାଙ୍କୁ ବିଦା କଲା ।

ଏହାର ପରବର୍ତ୍ତୀ ସମୟର ଦିନକରକଥା - ଚୋର ଦଳ ଚୋରୀ କରିବାର ପୂର୍ବ ଅଭ୍ୟାସ ଅନୁସାରେ ପାଟଣାର ଏକ ଗୁହାଳରେ ପ୍ରବେଶ କଲେ । ସେମାନେ ଏକ ବିରାଟ ଦାଇଁ ସାଙ୍ଗରେ ନେଇ ଆସିଥିଲେ । ଜଣେ ଚୋର ଗୁହାଳ ମଧ୍ୟରେ ପ୍ରବେଶ କଲା ଓ ଅନ୍ୟ ଦୁଇ ଜଣ ଦାଇଁ ଧରି ବାହାରେ ଅପେକ୍ଷା କଲେ । ଗୁହାଳ ମଧ୍ୟରେ ପ୍ରବେଶ କରିଥିବା ଚୋର ଜଣକ ହଠାତ୍ ଆର୍ତ୍ତନାଦ କରି ଉଠିଲା । ସାପ କାମୁଡି ଦେଲା ବୋଲି ଆର୍ତ୍ତନାଦ ସହ ସେ ତଳେ .ପଡିଗଲା । ଗୁହାଳ ବାହାରେ ଦାଇଁ ଧରି ଅପେକ୍ଷାରତ ଦୁଇ ଚୋର ତାହା ଶୁଣି ଦୌଡିଗଲେ ତାର ପାଖକୁ ଅଥତ ସେମାନେ ଧରିଥିବା ଦାଇଁରେ ହିଁ ସେ ଦୁହିଁଙ୍କର ହସ୍ତପଦ ବାନ୍ଧି ହୋଇଗଲା । କିଏ ବାନ୍ଧିଲା, କାହିଁକି ବାନ୍ଧିଲା ସେମାନେ ଜାଣି ପାରିଲେ ନାହିଁ କି



ସେଥିରୁ ମୁକୁଳି ମଧ୍ୟ ପାରିଲେ ନାହିଁ । ଗୋରୁ ବନ୍ଧା ଦୁଆଁ ହିଁ ସାପ ହୋଇ କାମୁଡି ଥାଏ ।

ଏତିକି ବେଳେ ରଡି ଶୁଣି ପାଖରେ ଥିବା ଲୋକମାନେ ଧାଇଁ ଆସିଲେ ଏବଂ ଜଣେ ଚୋର ସାପ ଚୋଟରେ ଆଘାତ ଓ ମୃତ ପ୍ରାୟ ପଡିଥିବା ଏବଂ ଅନ୍ୟ ଦୁଇଜଣ ଦାଇଁ ଦ୍ୱାରା ନିଜେ ବନ୍ଧା ହୋଇ ରହିଥିବାର ଦେଖିଲେ । ସେମାନଙ୍କୁ ଏପରି ଦୂରାବସ୍ଥାରେ ଦେଖି ଏବଂ ଢ଼ିଲା ଯାଇଥିବା ଗୋରୁ ଗୁହାଳରେ ଆଉ ନ ଥାଇ ବାହାରେ ରହିଥିବାର ଦେଖି ସେହି ମାନେ ହିଁ ଗୋରୁ ଚୋର ବୋଲି ବୁଝି ନେଲେ । ବନ୍ଧନ ଯୁକ୍ତ ଚୋର ମାନଙ୍କୁ ଗ୍ରାମ ମଧ୍ୟକୁ ଅଣାଗଲା ଏବଂ ମୃତପ୍ରାୟ ପଡିଥିବା ଚୋରକୁ ଚିକିତ୍ସା କରାଗଲା । ଶେଷରେ ଗାଙ୍ଗିର ନାମ ଉଚ୍ଚାରଣ କଲାରୁ ଉକ୍ତ ବ୍ୟକ୍ତି ଜଣକ ସୁସ୍ଥ ହେଲା । ଏହି ଗୋରୁ ଚୋର ଧରିବା କାମଟି ଯେ ଗାଙ୍ଗିର କରାମତି ନିଶ୍ଚୟ ବୋଲି ଜାଣିବାର ଆଉ ବାକି ରହିଲା ନାହିଁ । ପାଟଣା ରାଜ୍ୟରୁ ଗୋରୁ ଚୋରୀ ସେହିଦିନଠାରୁ ବନ୍ଦ ହୋଇଗଲା ଏବଂ ରାଜା ଗାଙ୍ଗିକୁ ପ୍ରସଂଶା କଲେ ମଧ୍ୟ ।





# ଶୁଆ ତେଲୁଣୀ

ଯାଦୁକରୀ ଶକ୍ତିର ଅଧିକରିଣୀ ଶୁଆ ତା'ର ସାଧନାରତ ବିଦ୍ୟାକୁ ଜନ ମଙ୍ଗଳ କାର୍ଯ୍ୟରେ ସଂପୂର୍ଣ୍ଣ ରୂପେ ବିନିଯୋଗ କରିବାର ବ୍ରତ ନେଇଥାଏ । ସେ ଜନ ହିତକର କର୍ଯ୍ୟରେ ନିଜ ଜୀବନକୁ ଉତ୍ସର୍ଗ କରିବା ଓ ମନୋରଂଜନ କରି ହସ ଖୁସିରେ ବଞ୍ଚିବା ଉଚିତ ବୋଲି ଏବଂ ପ୍ରତ୍ୟେକ ସାଧକର ଏହା ହିଁ ଧ୍ୟେୟ ହେବା ବିଧେୟ ବୋଲି କହୁଥାଏ । ସେ ମଧ୍ୟମ ପନ୍ଥିର ଜଣେ ସାଧିକା ଥିଲା ।

ଥରେ ଉତ୍କଳରୁ କେତେଜଣ ପରିଭ୍ରମଣକାରୀ କୋଶଳର ରାଜଧାନୀ ପାଟଣା ନିକଟବର୍ତ୍ତୀ ଏକ ପଡାରେ ବସିଥାନ୍ତି । ସମୟ ଅତୀତ ପ୍ରାୟ ଥାଏ, ଦ୍ୱିପହରର ପାଖାପାଖି ଥାଏ । ସେତେବେଳେ ବାହାରୁ ଜଣେ ଆସିଲେ ନିଜେ ରୋଷେଇ କରିବା କିମ୍ବା କାହାରି ଆତିଥ୍ୟ ନେବା ବ୍ୟତୀତ ଅନ୍ୟ କୌଣସି ଉପାୟ ନଥିଲା । ସେହି ଉତ୍କଳୀୟ ଭ୍ରମଣକାରୀ ମାନେ ମଧ୍ୟ ସେତେବେଳ ପର୍ଯ୍ୟନ୍ତ କାହରି ଆତିଥ୍ୟ ନେଇ ନଥିବାରୁ ଭୋକିଲା ହୋଇ ସାରିଥାନ୍ତି । ସେମାନେ ହତାଶ ଅନୁଭବ କରୁଥିବାର ଲକ୍ଷ୍ୟ କରାଯାଉ ଥାଏ ।

ସେତେବେଳେ ଗଡ ଉପାନ୍ତ ପଡାର କେତେଜଣ ବ୍ୟକ୍ତିଙ୍କ ସହ ସେମାନେ କଥା ହେଉଥିବା ସମୟରେ ଶୁଆ ସେମାନଙ୍କ ସମ୍ମୁଖ ଦେଇ ଚାଲିଗଲା । ଶୁଆର ଏକ ବଡ ବିଶେଷତ୍ୱ ଥିଲା ଯେ ତା'ର ପଛେ ପଛେ ଅନେକ ପିଲା ବୁଲୁଥିଲେ ଏବଂ ଶୁଆ ସଶ୍ରଦ୍ଧ ସେମାନଙ୍କୁ ଶୂନ୍ୟ ଟୋକେଇ ମଧ୍ୟରୁ ଶିଶୁଙ୍କ ପ୍ରିୟ ଖାଦ୍ୟମାନ ବାଣ୍ଟି ବାଣ୍ଟି ଚାଲିଥାଏ । ଜଣେ ଯୁବତୀର ପଛେ ପଛେ ଏତେ ସଂଖ୍ୟକ ପିଲା ବୁଲୁଥିବାର ଦେଖି କୌତୁହଳ ବଶତଃ ଜିଜ୍ଞାସା ଦୃଷ୍ଟିରେ ଉତ୍କଳୀୟ ଭ୍ରମଣକାରୀ ପାଖ ଲୋକଙ୍କୁ ପଚାରିଲେ ।

ପାଟଣାଗଡ ନିବାସୀ ବ୍ୟକ୍ତି ଶୁଆ ବିଷୟରେ ସାମାନ୍ୟ ସୂଚନା ଦେଇ ଶୁଆକୁ ପାଖକୁ ଡାକିଲେ । ଶୁଆ ତାଙ୍କ ନିକଟକୁ ଗଲା । ପିଲାମାନେ ଅନତି ଦୂରରେ ଠିଆ ହୋଇ ତାଙ୍କ ଅତି ଆଦରର ଶୁଆକୁ ଅପେକ୍ଷା କଲେ ।



ଆରାଧଙ୍କୁ ସାମାନ୍ୟ ସ୍ମରଣ କରି ଶୁଆ ଉତ୍କଳୀୟ ଅତିଥି ମାନଙ୍କର ଉଦ୍ଦେଶ୍ୟ ବୁଝିନେଲା । ସେ ସେମାନଙ୍କର ତାତ୍କାଳୀକ ମୁଖ୍ୟ ସମସ୍ୟା ଭୋକର ଉପଶମର ପ୍ରଥମ ବ୍ୟବସ୍ଥା କରିବା ପାଇଁ ସେମାନଙ୍କୁ ବସିଥିବା ଖଟରୁ ଉଠି ହାତ ଧୋଇ ତଳେ ବସିବାକୁ କହିଲା । ସେମାନେ ସେତେବେଳ ପର୍ଯ୍ୟନ୍ତ ସମ୍ମୋହିତ ହୋଇ ସାରିଥିଲେ ଓ ଶୁଆକୁ ହୃଦୟ ମଧ୍ୟରେ ଆଦର କରି ସାରିଥିଲେ । ସେମାନେ ବିନା ଦ୍ୱିଧାରେ ଶୁଆର ନିର୍ଦ୍ଦେଶ କ୍ରମେ ତଳେ ବସିଲେ ।

ଶୁଆପାଖରେ ଥିବା ଲୁଗା (ଟୋକେଇ) ମଧ୍ୟରୁ ସେ ପ୍ରଥମେ ପତ୍ର ପାତ୍ର (ଖଲି ଆଦି) ସେମାନଙ୍କୁ ପରିବେଷଣ ହେବ ବୋଲି ଅନୁମାନ କରି ସାରିଥିଲେ ଓ ଆଶ୍ୱସ୍ତ ହେଉଥିଲେ ମନେ ମନେ । ମନକଥା କୁ ଜାଣିଥିବାରୁ ସେମାନେ ଯେତେ ଖୁସି ହେଉଥିଲେ ସେତିକି ଆଶ୍ଚର୍ଯ୍ୟ ମଧ ହେଉଥିଲେ ।

ଶୁଆ ସେହି ଶୂନ୍ୟ ଲୁଗା ମଧ୍ୟରୁ ପ୍ରଥମେ ଭାତ ଓ ପରେ ଅନ୍ୟାନ୍ୟ ଅନୁଷାଙ୍ଗିକ ବ୍ୟଞ୍ଜନ ବାହାରକରି ପରଶିଲା । ସୁବାସିତ ଓ ସୁମିଷ୍ଟ ଖାଦ୍ୟ ସାମଗ୍ରୀ ଏତେ ସହଜରେ ମିଳିଯିବ, ଏକଥା ସେମାନଙ୍କର କଳ୍ପନାତୀତ ଥିଲା । ପରେ ସେମାନେ ଖାଇସାରି ଆଚମନ କଲା ପରେ ଶୁଆ ସେମାନଙ୍କୁ କହିଲା - ତୁମ ମନକଥା ଜାଣି ପାରି ତାତ୍କାଳୀନ ଆବଶ୍ୟକତାକୁ ମୁଁ ପାଟଣା ରାଜ୍ୟ ନିବାସୀଙ୍କ ତରଫରୁ ପୂରଣ କଲି ମାତ୍ର । ତେଣୁ ମୋର ପ୍ରଥମ କର୍ତ୍ତବ୍ୟ କରି ମୁଁ ଯେତିକି ଖୁସି, ପାଟଣାବାସୀ ମଧ ତା'ଠାରୁ ଆହୁରି ଅଧିକ ଭାଗ୍ୟବାନ ଯେ ସେମାନେ ଅତିଥିଙ୍କୁ ଯଥା ସମ୍ମାନ ଓ ଆଦର ଦେଇଛନ୍ତି । ଉତ୍କଳୀୟ ଅତିଥିମାନେ କୁଆଁରୀ ପାଟଣାର ଅତିଥି ଚର୍ଚ୍ଚାରେ ଆତ୍ମ ସନ୍ତୋଷ ଲାଭ କରି ଭ୍ରମଣ ସାରି ଆନନ୍ଦ ମନରେ ନିଜ ରାଜ୍ୟକୁ ଫେରିଥିଲେ ।

ଅନେକ ଦିନପରେ ଦେଉର ରାଜ୍ୟରୁ କେତେଜଣ ବ୍ରାହ୍ମଣ ପାଟଣାର ସପ୍ତସଖୀଙ୍କ ସାଧିତ ବିଦ୍ୟାର ପରୀକ୍ଷା ଓ ସେହି ବିଷୟରେ ସାମାନ୍ୟ ଧାରଣା ଏବଂ ବହୁଜନ ପ୍ରଚାରିତ ଖବର ର ସତ୍ୟାସତ୍ୟ ଜାଣିବା ନିମନ୍ତେ ରାଜଧାନୀ ନିକଟରେ ପହଞ୍ଚିଲେ । ସେମାନେ ପ୍ରଥମେ ଶୁଆ ଘରକୁ ଗଲେ ପଚାରି ପଚାରି । ସେତେବେଳେ ପାଟଣା ରାଜ୍ୟର ସମସ୍ତେ ନବାଗତଙ୍କୁ ଆଦର କରୁଥିଲେ ଓ



ସଠିକ ଦିଗ୍ ଦର୍ଶନ ଦେଇ ତାଙ୍କର ଶ୍ରଦ୍ଧାଭାଜନ ହେଉଥିଲେ । ସେମାନେ ଯେତେବେଳେ ଶୁଆ ନିକଟରେ ପହଞ୍ଚିଲେ, ସେ ଭୋଜନ ପ୍ରସ୍ତୁତିରେ ବ୍ୟସ୍ତଥାଏ । ନବାଗତଙ୍କୁ ନିଜ ଘରେ ଦେଖି ଖୁସି ହେଲା ଏବଂ ନିଜେ ରାନ୍ଧିଥିବା ବ୍ୟଞ୍ଜନରେ ଆପ୍ୟାୟିତ କରିବାକୁ ପ୍ରସ୍ତାବ ଦେଲା । ମନ୍ତ୍ରବତ ଶୁଆର ପ୍ରସ୍ତାବ ସ୍ୱୀକୃତ ହେଲା କାରଣ ସେତେବେଳେ ସେମାନେ ସମ୍ମୋହିତ ହୋଇ ସାରିଥିଲେ ।

ଯଥା ସମୟରେ ଶୁଆ ନିଜର ପ୍ରସ୍ତୁତ ଭୋଜନକୁ ଅତିଥି ଦେବତାଙ୍କୁ ଦେଲା । ସେମାନେ ସୁମିଷ୍ଟ ଭୋଜନ ରେ ସନ୍ତୁଷ୍ଟ ହେଲେ ଏବଂ ଖାଇସାରି ଅନ୍ୟତ୍ର ଯିବାକୁ ଉଦ୍ୟତ ହେଲେ । କିନ୍ତୁ ଶୁଆ ତାଙ୍କୁ ବାରଣ କଲା, ବିଶ୍ରାମ ନେବାକୁ ଅଙ୍ଗୀକାର ମଧ୍ୟ କଲେ ସେମାନେ।

ଶୁଆ ଘରୁ ଦୁଇ ତାଗ ସୂତା ବାହାର କଲା । ସେ ଘର ସମ୍ମୁଖସ୍ଥ ଏକ ଆମ୍ବଗଛ ଡାଳରେ ଉକ୍ତ ସୂତା ତାଗକୁ ବାନ୍ଧି ଦେଲା ଏବଂ ସେଥିରେ ଶୋଇ ଦ୍ୱିପ୍ରହରର ବିଶ୍ରାମ ନେବାକୁ କହିଲା । ବ୍ରାହ୍ମଣ ଅତିଥି ମାନେ ଆବାକ୍ ହୋଇ ଦ୍ୱିଧାବୋଧ କଲେ । କିନ୍ତୁ ଶୁଆର ସମ୍ମୋହନୀ ନିର୍ଦ୍ଦେଶରେ ସେମାନେ ଉକ୍ତ ସୂତା ତାଗ ଉପରେ ଯାଇ ବସିଲେ । ଅଶ୍ଚର୍ଯ୍ୟର କଥାଯେ ସ୍ୱାଭାବ ସ୍ଥୁଳଭର ମୋଟା ବ୍ରାହ୍ମଣମାନେ ଉକ୍ତ ତାଗ ମାତ୍ର ସୂତାରେ ବସିବା ସଙ୍ଗେ ସଙ୍ଗେ ତାହା ଏକ ଦୋଳିପରି ତାଙ୍କୁ ଝୁଲାଇଲା । ଆଶ୍ଚର୍ଯ୍ୟର ସୀମା ଅତିକ୍ରାନ୍ତ ଥାଏ ତାଙ୍କର । ସେ ଉକ୍ତ ସୂତାକୁ ପରୀକ୍ଷା କରିବାକୁ ଚାହିଁଲେ ଏବଂ ଖୁବ ଯୋରରେ ଟାଣି ଛିଡାଯାଇ ପାରେ କି ବୋଲି ମନେ ମନେ ସ୍ଥିର କରି ଦୋଳାୟମାନ ସୂତା ତାଗରୁ ଓହ୍ଲାଇଲେ । ସେମାନଙ୍କ ମଧ୍ୟରୁ ଜଣେ ହାତରେ ତାକୁ ଟାଣିବା ଆରମ୍ଭ କଲେ । ସୂତା ତାଗଟି ସ୍ୱାଭାବିକ ଭାବେ ଅନାୟସରେ ଛିଡିଗଲା । ସେମାନଙ୍କର ଆଶ୍ଚର୍ଯ୍ୟ ଆହୁରି ଘନିଭୂତ ହେଲା । ଶୁଆକୁ ସେମାନେ ଜିଜ୍ଞାସୁ ଦୃଷ୍ଟିରେ ଚାହିଁଲେ ଓ ଶୁଆର ଯାଦୁକରୀ ପ୍ରଭାବରେ ସଙ୍ଗେ ସଙ୍ଗେ ଆଖି ପଲକରେ ସୂତା ତାଗଟି ଏକ ସୁନ୍ଦର ଦୋଳିରେ ପରିବର୍ତ୍ତିତ ହୋଇଗଲା । ଅନାୟାସରେ ଛିଡିଯାଉଥିବା ସୂତା ତାଗଟି ଏକ ଆମୋଦ ଦାୟକଦୋଳିରେ ରୂପାନ୍ତରିତ ହେବା ଓ ପୁଣି ଦୋଳିରୁ ଓହ୍ଲାଇବା ମାତ୍ରେ ତାହା ପୁଣି ସୂତାର ଧର୍ମ ଅନୁସାରେ ଛିଣ୍ଡିଯିବା ପରି ଘଟଣାରେ ବେଗାରୀ ମାନେ ସ୍ତମ୍ଭୀଭୂତ





ହେଉଥିଲେ । ଯେହେତୁ ଦୋଳିବା ପାଇଁ ଏକ ଗଛ କିମ୍ବା ତାର କିମ୍ବା ଦଉଡି ଆବଶ୍ୟକ କରେ ଏବଂ ଏହିପରି ବିଦ୍ୟା ସାଧନାରେ ସେ ସିଦ୍ଧିହସ୍ତ ଥିଲା । ଶୁଆ ନାମ ଧାରଣର ଯଥାର୍ଥତା ଅଧିକ ଥିଲା ବୋଲି କୁହାଯାଏ ।

ଯେଉଁ ଅତିଥିମାନେ ଶୁଆ ଘରକୁ ପ୍ରଥମେ ଆସୁ ଥିଲେ ଓ ଯଦି ତାଙ୍କର ତେଲ ମାଖିବାର ଆବଶ୍ୟକତା ରହୁଥିଲା, ତେବେ ଶୁଆ କୌଣସି ପାତ୍ରର ପାଣିକୁ ଦେହରେ ଲଗାଇବାକୁ କହୁଥିଲା ଏବଂ ସେମାନେ ନିର୍ଦ୍ଦେଶ କ୍ରମେ ଦେହରେ ଲଗାଇବା ମାତ୍ରେ ତାହା ତେଲରେ ରୂପାନ୍ତରିତ ହେଉଥିଲା ବୋଲି ଜନମୁଖ ଏବେ ମଧ୍ୟ କହେ ।

ଶୁଆ ଜଣେ ନିପୁଣା ଜ୍ୟୋତିଷ ମଧ୍ୟ ଥିଲା । ଯେକୌଣସି ଦ୍ରବ୍ୟର ହଜିଯିବା କିମ୍ବା ଚୋରୀ ହେବା ଘଟଣାରେ ଶୁଆକୁ ଲୋକେ ପଚାରି ତାହାର ସ୍ଥିତି ସଂପର୍କରେ ଜାଣୁଥିଲେ । ଏପରିକି ପାଟଣାଧିପତି ଗଣ୍ଡାର ଶିକାର କିମ୍ବା ବାଘର ଶିକାର କରି ଯିବା ପୂର୍ବରୁ ଶୁଆକୁ ଯାତ୍ରାର ଶୁଭା ଶୁଭ ଓ ଦିଗ ପଚାରୁଥିଲେ । ସେ ନିର୍ଭୁଲ ଭାବେ ତାହା ରାଜାଙ୍କୁ କହି ଦେଉଥିଲା ଓ ପ୍ରଶଂସିତା ହେଉଥିଲା ମଧ୍ୟ ।

ପରୋପକାର ରେ ନିୟୋଜିତ ତନ୍ତ୍ର ଓ ମନ୍ତ୍ର ର ସୁଦୂର ପ୍ରସାରି ଉପଲବ୍ଧିର ଅବଶ୍ୟକତା କୁ ସପ୍ତସଖି ଅନୁଭବ କରି ସେହି ଅନୁସାରେ କର୍ମକରି ଜନମନକୁ ବିମୋହିତ କରି ଦେଇ ଆଦରଣୀୟା ହୋଇଥିଲେ । ସେମାନେ ପାଟଣାମାଟିକୁ ସମଗ୍ର ଭାରତ ବର୍ଷରେ ପ୍ରସିଦ୍ଧ କରିପାରିଥିଲେ ତନ୍ତ୍ର-ମନ୍ତ୍ରର ଜନସେବା ଅଭିମୁଖ୍ୟ ପାଇଁ । ତେଣୁ ଯେଉଁ ସପ୍ତସଖି ଏହି ପାଟଣା ମାଟିର ସମଗ୍ର ଭାରତ ବର୍ଷରେ ପରିଚିତି ଆଣିଥିଲେ ଏବଂ ଜୀବନର ମୁଖ୍ୟ ଧେୟ ଜନସେବାକୁହିଁ ବାଛିଥିଲେ ଓ ତାଙ୍କରି କୁମାରିତ୍ୱ ପାଇଁ ଏହି ମାଟିର ନାମକୁ କୁଆଁରୀ ପାଟଣା ନାମରେ ନାମିତ କରି ପାରିଥିଲେ, ସେହି ସପ୍ତସଖି ଅବଶ୍ୟ ଯୁଗେ ଯୁଗେ ସ୍ମରଣୀୟା ଥିବେ । ସେହି ମହାନ ସପ୍ତସଖି ଅନ୍ୟୂନ ଦୁଇ ହଜାର ବର୍ଷ ପୂର୍ବରୁ ଥିଲେ ଅବଶ୍ୟ, କିନ୍ତୁ ଏବେ ମଧ୍ୟ ଏହି ମାଟିର ଯେ କୌଣସି ବ୍ୟକ୍ତିକୁ କୁଆଁରୀପାଟଣାର ଓ ମନ୍ତ୍ର ତନ୍ତ୍ରରେ ଏମାନେ ସିଦ୍ଧହସ୍ତ ଥିବେ ବୋଲି କହି ଅନ୍ୟ ମାଟିର ଲୋକଙ୍କ ହୃଦୟରେ ଆଶିଂକ ଓ ଭୟ ଭକ୍ତି ସଂଞ୍ଚାରିତ ହେଉଥିବା କଥା ଜନ ସ୍ମୃତି କହେ । ଏଥିରେ ଦ୍ୱିମତ ହେବାର ନୁହେଁ ।







# ଚୌଷଠି ଯୋଗିନୀ

ଗୁପ୍ତ ବଂଶର ଦୀର୍ଘରାଜ ଗୁପ୍ତ କୋଶଳର ନରେଶ ଥିଲେ । ବର୍ତ୍ତମାନ ଆସାମ ଅନ୍ତର୍ଗତ ସେବେଳର କାମପୁର ରାଜ୍ୟର ରାଜା ହର୍ଷଦେବଙ୍କ ସହ ସେ ଲଢେଇ କଲେ ଏବଂ ବିଜୟୀ ହେଲେ । କିନ୍ତୁ ସେ ତାଙ୍କୁ କ୍ଷମା ଦେଲେ ଏବଂ ଅଧିନସ୍ଥ ସାମନ୍ତ ରାଜାର ପ୍ରତିଶ୍ରୁତି ଆଦାୟ କରି କୋଶଳକୁ ପତ୍ୟାବର୍ତ୍ତନ କଲେ । ତାଙ୍କର ଉତ୍ତରାଧିକାରୀ ସୋମେଶ୍ୱର ଦେବ କୋଶଳର ପରବର୍ତ୍ତୀ ନରେଶ ହେଲେ ।

ସେତେବେଳେ କୁଶସ୍ଥଳୀ (କୁଅଁସିଲ) କୋଶଳର ରାଜଧାନୀ ଥିଲା । କୁଶସ୍ଥଳୀ ନଗରୀ ସାତ ମାଇଲ ଲମ୍ବ ଓ ସାତ ମାଇଲ ପ୍ରସ୍ଥ ବିଶିଷ୍ଟ ଏକ ବିଶାଳ ଜନସଂଖ୍ୟା ବିଶିଷ୍ଟ କ୍ଷେତ୍ର ଥିଲା । ଏହି ବିରାଟ ନଗରୀକୁ ରାଜା ୫ଟି ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳରେ ବିଭକ୍ତ କରିଥିଲେ । ଯଥା:- ରାଣୀପୁର ଝରିଏଲ, ବାହୁବଳ, ବାଲଖମାର ଓ କଅଁସିଲ । ରାଣୀପୁରରେ ରାଣୀ ଅନ୍ତଃପୁର ଥିଲା । ଏଥିରେ ରାଣୀ, ଦାସ ଦାସୀ ଆଦି ରାଜ ମହିଳା ମାନଙ୍କର ଅନ୍ତପୁର ଥିଲା ବୋଲି ଏହାକୁ ରାଣିଅନ୍ତଃପୁର କୁହାଯାଉ ଥିଲା । ଏକ ବିରାଟ ଚିର ସ୍ରୋତସ୍ୱିନୀ ଝର ଥିବା କ୍ଷେତ୍ରକୁ ଝରଆଳୟ ବା ଝରିଆଲ କହୁଥିଲେ । ସେଥିରୁ ନିର୍ଝରିତ ଜଳରେ ରାଣୀ ଓ ରାଜା ଏବଂ ରାଜ ପରିବାର ର ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତି ବିଶେଷ ସ୍ନାନ କରୁଥିଲେ । ବାହୁବଳ କ୍ଷେତ୍ରରେ ସୈନ୍ୟ ମାନେ (ବାହୁବଳରେ ଦେଶ ରକ୍ଷା କରୁଥିବା ବ୍ୟକ୍ତିମାନେ) ରହୁଥିଲେ । ବାହୁବଳରୁ ଅପଭ୍ରଂଶିତ ରୂପ ବାହାବଳ ହୋଇଛି । ଏହା ଆଜି ଅପଭ୍ରଂଶିତ ରୂପରେ ପରିଚିତ ବାଲ ଖମାରରେ ରାଜକୋଷ (ଖମାର ଘର) ଥିଲା । ଏହି ସବୁ କ୍ଷେତ୍ର ରାମଚନ୍ଦ୍ରଙ୍କ ପୁତ୍ର କୁଶଙ୍କ ଦ୍ୱାରା ଯୋଜନାବଦ୍ଧ ଭାବେ ନିର୍ମିତ ଓ ନିର୍ଣ୍ଣିତ କ୍ଷେତ୍ର ଥିଲା ।

କିନ୍ତୁ ଏହି କ୍ଷେତ୍ରରେ କନ୍ଧ ଲୋକଙ୍କର ସଂଖ୍ୟା ଅଧିକ ଥିଲା । କନ୍ଧ



ଅଧ୍ୟୁଷିତ ଏହି ଅଞ୍ଚଳରେ ସେମାନଙ୍କର ମେଳି ଓ ଆଧିପତ୍ୟ ରହିବା ସ୍ୱାଭାବିକ । ସେମାନେ ତାଙ୍କର ଦେବତା ଡୋମ ଏବଂ ତାଙ୍କର ଦଳପତିକୁ ଅଧିକ ମାନୁଥିଲେ କନ୍ଧମାନେ ଗୋରୁଙ୍କୁ ମାରି ମାଂସ ଭକ୍ଷଣ କରୁଥିଲେ । ରାଜା ସୋମେଶ୍ୱର ଦେବ କନ୍ଧ ମାନଙ୍କୁ ଗୋ ମାଂସ ଭକ୍ଷଣ ବିରତ ହେବାକୁ କହିଲେ । କିନ୍ତୁ ରାଜାଙ୍କ ନିର୍ଦ୍ଦେଶ ମୁତାବକ ଗୋ ମାଂସ ଭକ୍ଷଣରୁ ବିରତ ହେବା ପରିବର୍ତ୍ତେ ସେମାନେ ରାଜାଙ୍କୁ ଶିବ ଭକ୍ତି ନ କରି କନ୍ଧ ମାନଙ୍କ ଦେବତା ଡୋମକୁ ପୂଜା କରିବାକୁ ଓଲଟା ତାଙ୍କ ଉପରେ ଚାପ ପ୍ରୟୋଗ କଲେ । ଏହି ପରଂପରା ଅନେକ ଶତାବ୍ଦୀ ଧରି ଚାଲିଥିଲା ।

କିନ୍ତୁ ଖ୍ରୀଷ୍ଟୀୟ ୧୧୧୧ ବେଳେ କୁଶ ସ୍ଥଳୀରେ ହରିନାଥ ଦେବ ନାମକ ଜଣେ ରାଜା ରାଜତ୍ୱ କରୁଥିଲେ । ପରଂପରା କ୍ରମେ କନ୍ଧ ମାନଙ୍କ ଦ୍ୱାରା ରାଜା ଅପଦସ୍ତ ହେଉଥିବା କଥା ଅନୁଭବ କଲେ । ଏହି କୁଶ ସ୍ଥଳୀରେ ସୋମେଶ୍ୱର ଦେବଙ୍କ ଦ୍ୱାରା ସୋମେଶ୍ୱର ମହାଦେବ ମନ୍ଦିର ନିର୍ମିତ ହୋଇ ଶିବଙ୍କୁ ପୂଜା ଅର୍ଚ୍ଚନା କରିବା ପରଂପରା ଶତାବ୍ଦୀ ଶତାବ୍ଦୀ ଧରି ଚାଲି ଆସିଥାଏ । ଶିବଙ୍କ ନିର୍ଦ୍ଦେଶ କ୍ରମେ ରାଜା ସୋମେଶ୍ୱର ଦେବ ୧୦୧ଟି ଶିବ ମନ୍ଦିର ନିର୍ମାଣ କରାଇଥିଲେ । ମୁଖ୍ୟ ସୋମେଶ୍ୱର ମନ୍ଦିର ବଡ ଥିଲା । କିନ୍ତୁ ଅନ୍ୟ ମନ୍ଦିର ଗୁଡିକ ଛୋଟ ଛୋଟ କରି ନିର୍ମାଣ କରାଇଥିଲେ । ରାଜା ସୋମେଶ୍ୱର ଦେବଙ୍କ ଅମଳରୁ ପ୍ରତ୍ୟେକ ଶିବଭକ୍ତ ରାଜାମାନେ ପ୍ରତ୍ୟହ ଶିବଙ୍କୁ ଆରାଧନା କରିବାକୁ ଯାଇ ପ୍ରତ୍ୟେକ ମନ୍ଦିର ଅର୍ଥାତ୍ ୧୦୧ ମନ୍ଦିରରେ ସ୍ଥାପିତ ଶିବଲିଙ୍ଗର ପୂଜା ପରେ ଅନ୍ନଜଳ ସ୍ପର୍ଶ କରିବା ପରମ୍ପରା ଥିଲା । ତେଣୁ ଏହି ପରଂପରା ହରିନାଥ ଦେବଙ୍କ ପର୍ଯ୍ୟନ୍ତ ଚାଲିଥାଏ ।

ଥରେ ମେଳିବାନ୍ଧିଥିବା କନ୍ଧ ମାନଙ୍କର ଦଳପତିଙ୍କ ନିର୍ଦ୍ଦେଶ କ୍ରମେ ରାଜାଙ୍କର ଉପରେ କନ୍ଦ ଦେବତା ଡୋମକୁ ପୂଜା କରିବାର ଚାପ ପ୍ରୟୋଗ ହେଲା । ରାଜା ଶିବଙ୍କ ପରିବର୍ତ୍ତେ ଡୋମକୁ ପୂଜା କଲେ ନାହିଁ । ତେଣୁ କନ୍ଧମାନେ ମେଳି ବାନ୍ଧି ସାମୁହିକ ଭାବେ ବଡ ପ୍ରତ୍ୟୁଷରୁ ଶିବଲିଙ୍ଗ ମାନଙ୍କ ଉପରେ ଗୋମାଂସ ଥୋଇ ଦେଲେ । ରାଜା କନ୍ଧ ମାନଙ୍କର ଏହି କାର୍ଯ୍ୟକୁ ନିନ୍ଦା କଲେ ଓ ଏହା ବାରମ୍ବର ନ କରିବାକୁ ସେମାନଙ୍କୁ ତାଗିଦ ମଧ୍ୟ କଲେ । ରାଜାଙ୍କର ସମସ୍ତ



ଚେଷ୍ଟା ନିଷ୍ଫଳ ହେଲା ଏବଂ ଶିବଲିଙ୍ଗ ଉପରେ ସେମାନେ ଗୋମାଂସ ରଖି ଚାଲିଥିଲେ । ତେଣୁ ହରିନାଥ ଦେବ ବାଧ ହୋଇ ତାଙ୍କର ରାଜଧାନୀକୁ କୁଶସ୍ଥଳୀରୁ ପତ୍ତନଗଡ ବା ପାଟଣାଗଡକୁ ପରିବର୍ତ୍ତନ କଲେ । ସେହି ଦିନ ଠାରୁ ପତ୍ତନଗଡ ସମଗ୍ର ଦକ୍ଷିଣ କୋଶଳର ରାଜଧାନୀ ହେଲା ।

ତେଣେ କୁଶସ୍ଥଳୀରୁ ରାଜଧାନୀ ପରିବର୍ତ୍ତିତ ହେଲା ପରେ ପ୍ରଜାମାନେ ମଧ୍ୟ ଛିନ୍ ଭିନ୍ ହୋଇ ଗଲେ । କୁଶସ୍ଥଳୀର କେନ୍ଦ୍ରୀୟ ଅଞ୍ଚଳରୁ ଜନ ବସତି ଉଜୁଡି ଗଲା । କିନ୍ତୁ ପୂର୍ବୋକ୍ତ ୫ଟି ଅଞ୍ଚଳ ପାଞ୍ଚଗୋଟି କ୍ଷୁଦ୍ରଗ୍ରାମ ହୋଇ ରହିଗଲା ଯାହାକି ଏ ପର୍ଯ୍ୟନ୍ତ ଅଛି । ସୋମେଶ୍ୱର ଦେବ ସୋମେଶ୍ୱର ମନ୍ଦିର ବ୍ୟତୀତ ସୋମି ମନ୍ଦିର, ସିଦ୍ଧେଶ୍ୱର ମନ୍ଦିର ଏବଂ ମା ଲକ୍ଷ୍ମୀଙ୍କର ମନ୍ଦିର ମଧ୍ୟ ନିର୍ମାଣ କରିଥିଲେ । ଏ ରାଜଧାନୀ ପରିବର୍ତ୍ତିତ ହେଲା ପରେ କ୍ଷୁଦ୍ର କ୍ଷୁଦ୍ର ଶିବ ମନ୍ଦିର ମଧ୍ୟରୁ ଅନେକକୁ କନ୍ଧମାନେ ଭାଙ୍ଗି ଦେଲେ, ଅବଶିଷ୍ଟ ରକ୍ଷଣାବେକ୍ଷଣ ଅଭାବରୁ ମଧ୍ୟ ଭାଙ୍ଗି ଗଲା । ସୋମେଶ୍ୱର ଦେବ ସୋମେଶ୍ୱର ମହାଦେବଙ୍କ ମନ୍ଦିରକୁ ଲାଗି ଏକ ବିଶାଳ ପୁଷ୍କରିଣୀ ଖନନ କରାଇ ଥିଲେ ଏବଂ ଏହା ଏ ପର୍ଯ୍ୟନ୍ତ ରହିଛି । ଏହା ସୋମେଶ୍ୱର ପୁଷ୍କରିଣୀ ନାମରେ ପରିଚିତ ।

ସୋମେଶ୍ୱର ମନ୍ଦିର ନିକଟରେ ଏକ ବିରାଟ ପଥର ଚଟାଣ ଥିଲା । ଚଟାଣର କେନ୍ଦ୍ର ସ୍ଥଳରେ ଶିବଙ୍କର ତାଣ୍ଡବ ନୃତ୍ୟ ଏବଂ ସେଥିରେ ପାର୍ବତୀ ସମ୍ମିଳିତ ହୋଇଥିବାର ମୂର୍ତ୍ତି ସ୍ଥାପନ କରିଥିଲେ । ଶିବ ପାର୍ବତୀଙ୍କର ତାଣ୍ଡବ ନୃତ୍ୟକୁ କେନ୍ଦ୍ର କରି ତାଙ୍କ ଚତୁର୍ପାର୍ଶ୍ୱରେ ୬୪ ଯୋଗିନୀ ବେଢ଼ି ଥିବାର ୬୪ଟି ନଗ୍ନ ଓ ଅର୍ଦ୍ଧ ନଗ୍ନ ମୂର୍ତ୍ତି ସ୍ଥାପିତ ହୋଇ ଥିଲା । ଏହି ସମସ୍ତ ମୂର୍ତ୍ତିକୁ ଉଦ୍ଧାର କରି ଏବେ ଅନ୍ୟ ଏକ ସ୍ଥାନରେ ବୃତ୍ତାକାର ରେ ଅବଶ୍ୟ ସଜେଇ ଦର୍ଶକଙ୍କୁ ସେ ସମୟର ପ୍ରାଚୀନତା ବିଷୟରେ ସାମାନ୍ୟ ଆଲୋକ ଦିଆ ଯାଇଥାଏ ।

ପ୍ରସ୍ତର ନିର୍ମିତ ଏହି ୬୪ଟି ଯୋଗିନୀ ମୂର୍ତ୍ତିଙ୍କ ମଧ୍ୟରୁ ୧୬ ଗୋଟି ମୂର୍ତ୍ତି ଭଗ୍ନ ଅବସ୍ଥାରେ ଅଛି । କିନ୍ତୁ ଅବଶିଷ୍ଟ ୪୮ ଗୋଟି ମୂର୍ତ୍ତି ପ୍ରାୟ ସୁରକ୍ଷିତ ଅଟେ । ଏହି ୬୪ ଯୋଗିନୀଙ୍କର ମୂର୍ତ୍ତି ମଧ୍ୟରେ ତାଣ୍ଡବ ନୃତ୍ୟରତ ଶିବ ପାର୍ବତୀଙ୍କର ମୂର୍ତ୍ତି ରାଜାଙ୍କର ଶିବଭକ୍ତିର ଏକ ବଳିଷ୍ଠ ପ୍ରମାଣ ଅଟେ । ଏହିପରି ୬୪ ଯୋଗିନୀଙ୍କର



ମୂର୍ତ୍ତି ବିରଳ ହେଲେ ମଧ୍ୟ ଏହା ଯେ ସମଗ୍ର ଭାରତ ବର୍ଷରେ ଐତିହାସିକ ମାନଙ୍କର ଆକର୍ଷଣର ବିନ୍ଦୁ ହେବା ବିଧେୟ । ସରକାରୀ ପକ୍ଷପାତିତା କାରଣରୁ ହେଉ କିମ୍ବା ବୈମାତୃକ ମନୋଭାବରୁ ହେଉ - ପ୍ରାଚୀନ କୋଶଳର ଏହି ପ୍ରାଚୀନ ରାଜଧାନୀ ଯେ ପ୍ରତ୍ନତାତ୍ତିକ ଗୁରୁତ୍ୱ ରଖି ମଧ୍ୟ ଅବହେଳିତ, ଏଥିରେ ତିଳେ ହେଲେ ସନ୍ଦେହ ନାହିଁ । ରାଣୀ ଅନ୍ତଃପୁର ବା ରାଣୀ ହଂସ ପୁରରୁ 'ହଂସ' ଶବ୍ଦ କଟି ରାଣୀପୁର ହେବା ଝରଆଳୟରୁ ଅପଭ୍ରଂଶିତ ରୂପ ଝରିଏଲ ହେବା ବାହୁବଳରୁ ବାହାବଲ ହେବା ଆଦି ସ୍ୱାଭାବିକ । କିନ୍ତୁ ଏହି ପ୍ରାଚୀନତାକୁ ଧରି ଏ ଅଞ୍ଚଳର ଲୋକେ ଆମେ ଦିନେ ରାମଚନ୍ଦ୍ରଙ୍କର ମାମୁଁଘର ଗାଁର ଓ ରାମଚନ୍ଦ୍ରଙ୍କର ସୁପୁତ୍ର କୁଶଙ୍କର ଶାସନର ଲୋକଥିଲୁ ବୋଲି ଯେ ଗର୍ବ ଅନୁଭବ କରନ୍ତି, ଏହା ସ୍ପଷ୍ଟ । ତେଣୁ ସମଗ୍ର ଭାରତ ବର୍ଷରେ ଏକ ଶକ୍ତିଶାଳୀ ରାଜ୍ୟଥିବା ଦକ୍ଷିଣ କୋଶଳର ରାଜଧାନୀଯେ ଶିବଙ୍କୁ କେନ୍ଦ୍ର କରି ଯେଉଁ ୬୪ ଯୋଗିନୀ ମୂର୍ତ୍ତି ଅବସ୍ଥାପିତ ହୁଏ, ତାହା ପ୍ରତ୍ନତାତ୍ତ୍ୱିକ ଦୃଷ୍ଟି କୋଣରୁ ଅତ୍ୟନ୍ତ ଗୁରୁତ୍ୱ ପୂର୍ଣ୍ଣ ଅଟେ । ଏହି କୁଶସ୍ଥଳୀର ପ୍ରତ୍ୟେକ ଗୋଡି ମାଟି ଏବଂ ପ୍ରତ୍ୟେକ ଅଞ୍ଚଳ (ସ୍ଥାନ) ପ୍ରାଚୀନତାର ସାକ୍ଷ ଅବଶ୍ୟ ଦେଇଥାଏ । ଏହାର ଅଧିନସ୍ଥ ଏକ ଗଡ ପତ୍ତନଗଡ ବା ପାଟଣାଗଡ କୁ ରାଜଧାନୀ ପରିବର୍ତ୍ତନ ପରିପ୍ରେକ୍ଷୀରେ ଯେ ପତ୍ତନଗଡ ବା ପାଟଣାଗଡର ଗୁରୁତ୍ୱ ବୃଦ୍ଧି ହୋଇଛି - ଏହା ଅସ୍ୱୀକାର କରାଯାଇ ନ ପାରେ ।

ଯେଉଁ କୋଶଳର ରାଜଧାନୀ କୁଶସ୍ଥଳୀ ଅଧିନରେ ପାଟଣାଗଡ଼, ତ୍ରିତଳଗଡ (ଟିଟିଲାଗଡ), ରାୟ ବିଜୟ ଗଡ, ଧରମ ଗଡ, ବୁଢ଼ିଗଡ, ଜରାଗୁଡା ଗଡ (ଜରାସିଂହା), କଗାଁ ଗଡ, ସାଲେଭଟା ଗଡ, ଭୋଜ ଗଡ, ହମିଦ ଗଡ, ଛେଲିଆ ଗଡ, ରାଜରାନି ଗଡ, ଗୁରାଗଡ, ମାଣିକ ଗଡ, ଖରିଆଡ ଗଡ, ଖୋଲା ଗଡ, ସମଲେଇ ଗଡ, ବୈଦ୍ୟନାଥ ଗଡ, କନକ ଗଡ, ଧମାଗଡ, ହୁମା ଗଡ, ପଥର ଗଡ, ବିଲେଇ ଗଡ, କୁଦେଲ ଗଡ, ଅସୁର ଗଡ, ଅର୍ଜ୍ଜୁଣ୍ଡା ଗଡ, ସର ଗଡ, ରାମ ଗଡ (ରାମପୁର ଗଡ), ତାରାପୁର ଗଡ, ଖାରବେଲ ଗଡ (ଖଲିଗଡ, ଜାମୁଟଗଡ ଆଦି ୩୬ ଗୋଟି ଗଡ ଥିଲା ତାହେ ଯେ ଏକ ବିଶାଳ ରାଜ୍ୟ ନଥିଲା ବୋଲି କହିବା ଧୃଷ୍ଟତା ହେବ ।



ତେବେ ସେ ଯାହା ହେଉ ନା କାହିଁକି ଆସୁରିକ ଶକ୍ତିର ଦୁଃପ୍ରାତକୁ ଦେଖି ମାଁ ଦୁର୍ଗା ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ରୂପ ନେଇ ଏହି ସମସ୍ତ ଆସୁରୀ ଶକ୍ତିର ଦମନ ପାଇଁ ଏହି ସବୁ ଶକ୍ତି ସ୍ୱରୂପାଙ୍କ ମୂର୍ତ୍ତିକୁ ଜନ ମାନସରେ ଚେତନା ଜାଗ୍ରତ କରିବାକୁ ଏକତ୍ରିତ କରିଛନ୍ତି, ଏଥିରେ ସନ୍ଦେହ ନାହିଁ । ମାଁ ଦୁର୍ଗାଙ୍କର ଏହି ରୂପରେ ଭାରତୀୟ ଶକ୍ତି ଭକ୍ତ ମନରେ ଗଭୀରତମ ପ୍ରଦେଶରୁ ଭକ୍ତି ଭାବନା ଉଦ୍ରେକ କରୁଥିବା କାରଣରୁ ହେଉ ଭୟଭକ୍ତି ପ୍ରକାଶ କରିଛି ଏବଂ ତାଙ୍କୁ ଯୋଗିନୀ ବା ଅସୁର ବିନାଶିନୀ ରୂପରେ ପୂଜା କରିଛି । ଅସୁରୀ ଶକ୍ତିର ଯୁଗକୁ ଧ୍ୱଂସ କାରିଣୀ ବା ଯୁଗକୁ ନେଇ ଥିବା ବା ଯଗନେଇ ରୁ ଯୋଗିନୀ ଶବ୍ଦର ନିଷ୍ପନ୍ନରୁ ହେଉ ବା ଯୋଗରତା ମାଁ ଦୁର୍ଗାଙ୍କର ସ୍ୱରୂପା କରଣରୁ ହେଇ, ଆସୁରୀ ଶକ୍ତିର ବିନଷ୍ଟାକାରିଣୀ ମାଁ ଦୁର୍ଗାଙ୍କ ବିଭିନ୍ନ ୬୪ଟି ରୂପ ଶାକ୍ତ ହିନ୍ଦୁଙ୍କୁ ବିଭିନ୍ନ ଭାବରେ ପ୍ରଭାବିତ କରେ ।

ତେଣୁ ଭାରତୀୟ ହିନ୍ଦୁ ମାନେ ୭ ଓ ୯ ଅଙ୍କର ଦୈବୀ ଶକ୍ତିର ଅନୁଭବ କରୁଥିବାରୁ ୭x୯ = ୬୩ ଏବଂ ମାଁ ଦୁର୍ଗାଙ୍କୁ ମିଶାଇ ୬୪ ଯୋଗିନୀ ଯେ ଦୁର୍ଗାଙ୍କର ବା ମାତୃଶକ୍ତିର ବିଭିନ୍ନ ସ୍ୱରୂପ - ଏହା ସ୍ପଷ୍ଟ ।

ତେଣୁ ରାଣୀପୁର ଝରିଏଲ ପାଖରେ ଏବେ ଯେଉଁ ୬୪ ଯୋଗିନୀ କୁଣ୍ଡଳୀ ବିଦ୍ୟମାନ, ତାହା ଲୋକ ଲୋଚନରୁ ଦୂରେ ନ ରଖି ଏହାକୁ ପର୍ଯ୍ୟଟକଙ୍କୁ ଆକର୍ଷଣ କରିବାର ସୁବ୍ୟବସ୍ଥା କରାଯାଇ ଐତିହାସିକତା ଓ ପ୍ରତ୍ନତାତ୍ତ୍ୱିକତା ଦୃଷ୍ଟିରୁ ଗୁରୁତ୍ୱ ଆରୋପ କରାଯାଇ ପାରିଲେ ଏହାର ଉପଯୁକ୍ତ ମର୍ଯ୍ୟାଦା ଦେବାରେ ଓ ସମଗ୍ର ଭାରତ ବର୍ଷରେ ରାଣୀପୁର ଝରିଏଲ କୁ ଏକ ଐତିହାସିକ କ୍ଷେତ୍ରରେ ଚିହ୍ନଟ କରିବାରେ ଯେ ନିର୍ଦ୍ଦିଷ୍ଟ ପଦକ୍ଷେପ ହେବ, ଏକଥା ଅବଶ୍ୟ ସ୍ୱୀକାର୍ଯ୍ୟ ଅଟେ ।








# ଧାଙ୍ଗିରିମୁତା

ଆଗରୁ କୁଆଁରୀପାଟଣାର ସପ୍ତସଖିଙ୍କର ସାଧନା ଓ କାଉଁଗୀ ଶକ୍ତି ସଂପର୍କରେ ଯତ୍‌କିଞ୍ଚିତ ଆଲୋଚନା କରିଛି । ସେହି ସପ୍ତସଖୀ କୁମାରୀ ଜ୍ଞାନଦେଇ, ନିତେଇ, ଲୁହୁରକୁଟୀ, ସୁକୁଟୀ, ପତ୍ରପିନ୍ଧି, ଶୁଆ ଓ ଗାଙ୍ଗୀ ପ୍ରତ୍ୟହ ସାଧନାରତ ଥିଲେ । ସେମାନେ ପ୍ରତ୍ୟୁଷରୁ କାଠି ଓ କାଠର ନାମରେ ଘରୁ ବାହାରି ଛୁଆଲିଉଦର (ବର୍ହାଛାପର ନିକଟବର୍ତ୍ତୀ ଏକ ନିଭୃତ ସ୍ଥାନ) କୁ ଯାଉଥିଲେ । ସେମାନେ ତାକୁ ସାଧନା ପୀଠ ବାଛି ନେଇଥିଲେ । ପ୍ରାକୃତିକ ପରିବେଶ ଅତ୍ୟନ୍ତ ମନୋରମ ଥିଲା । ନିଛାଟିଆ ଥିଲା । ଜଙ୍ଗଲ ମଧ୍ୟସ୍ଥ ଏକ କ୍ଷୁଦ୍ର ଜଳାଶୟ (ଦର୍ହ) ନିକଟରେ କୁଆଁରୀ କାମଚଣ୍ଡୀ ଦେବୀଙ୍କୁ ଆରଧନା କରୁଥିଲେ । ହାଟଯୋଗରେ ସେମାନେ ଦେବୀଙ୍କୁ ସନ୍ତୁଷ୍ଟ କରୁଥିଲେ । ମାଟି ଉପରେ ପ୍ରାୟ ଏକଫୁଟ ଉଚ୍ଚ ଶୂନ୍ୟରେ ବସି ମାଁ କାମଚଣ୍ଡୀଙ୍କୁ ଆରାଧନା କରୁଥିଲେ । ଦକ୍ଷିଣ ଦେଶ ନିବାସୀ ଜନୈକ ଗୁରୁ ଧନ୍ୱନ୍ତରୀ ଏମାନଙ୍କୁ ଏହି ବିଦ୍ୟାରେ ପ୍ରବୀଣା କରିଥିଲେ ବୋଲି ୰ ରାମଚନ୍ଦ୍ର ମଲ୍ଲିକଙ୍କ କୋଶଳ ଇତିହାସ ସାକ୍ଷ୍ୟ ଦିଏ ।

ସେ ଯାହାହେଉ, ଯେଉଁ କୁଆଁରୀପାଟଣା ମାଟିର ପ୍ରତ୍ୟେକ ଅବିବାହିତ ଓ ଅବିବାହିତା ଯୁବକ ଯୁବତୀ ଙ୍କ ଠାରୁ ଆରମ୍ଭ କରି ଆବାଳ ବୃଦ୍ଧ ବନିତା ଏପରି କି ରାଜଦଣ୍ଡ ମଧ୍ୟ ଯାଦୁ ବିଦ୍ୟାରେ ଆଗ୍ରହ ରଖୁଥିଲେ, ସେହି ବିଦ୍ୟା ଯେ ଅନୀତି ନଥିଲା, ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ । ସମାଜରେ ସାମୁହିକ ଭାବରେ କରୁଥିବା କାର୍ଯ୍ୟ ଯାହା ହୋଇଥାଏ ଓ ଯାହା ସମସ୍ତଙ୍କର ଗ୍ରହଣୀୟ ହୁଏ ତାହାହିଁ ନୀତି ବୋଲି ଯୁଗେ ଯୁଗେ ମାନବର ସ୍ୱୀକୃତି ମିଳି ସାରିଛି । ସେହି ଅନୁସାରେ କୁଆଁରୀ ପାଟଣାର ଅବିବାହିତା ଯୁବତୀମାନେ ଯେ ଶାଶୁ ଘରକୁ ଯିବା ପୂର୍ବରୁ ଯାଦୁ ବିଦ୍ୟାରେ ସଂପୂର୍ଣ୍ଣ ନିପୁଣା ହେଉଥିଲେ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କୁଆଁରୀ କନ୍ୟାମାନେ ଜନହିତକର କାର୍ଯ୍ୟରେ ଏବଂ ମାନବ ସେବାରେ ନିଜକୁ ନିୟୋଜିତ କରିବାକୁ ହିଁ ଏଠାକାର ତାତ୍କାଳିକ ସମାଜ ନାରୀଜାତିକୁ ଏହି ବିଦ୍ୟାଶିକ୍ଷା କରିବାକୁ



ସ୍ୱୀକୃତି ଦେଇଥିଲା । ଅର୍ଥାତ୍ ଏହି ବିଦ୍ୟା ଶିକ୍ଷା ଦେବାର ମୂଳ ଉଦ୍ଦେଶ୍ୟ ଜନ ସେବା ହିଁ ଥିଲା । ତେଣୁ ହିଁ କୁଆଁରୀ ପାଟଣାର ଖ୍ୟାତି ସମଗ୍ର ଭାରତ ବର୍ଷରେ ପ୍ରଚଳିତ ଥିଲା ।

ପ୍ରତ୍ୟେକ କୁଆଁରୀ ସାଧିକା ସାଧନାରେ ନିପୁଣା ଥିଲା । ସାମଗ୍ରିକ ସାଧନା ଯେ କେତେ ବଳବାନ ହୋଇ ନଥିବ ଏହା କଳ୍ପନାତୀତ ଥିଲା । କଥିତ ଅଛି, ଏମାନଙ୍କର ସାମଗ୍ରିକ ଇଚ୍ଛା ସଙ୍ଗେ ସଙ୍ଗେ କାର୍ଯ୍ୟରେ ପରିଣତ ହେଉଥିଲା ।

ଦିନକର କଥା -

ଦୈନନ୍ଦିନ ଅଭ୍ୟାସ ଅନୁସାରେ ଏମାନେ ସାଧନା କରି ଠିକ୍ ମଧ୍ୟାହ୍ନରେ ଫେରୁଥିବା ସମୟରେ ବାଟରେ ଜଣେ ପ୍ରାପ୍ତ ବୟସ୍କ ବୃଦ୍ଧ ନିଜର ଜମିର ହିଡକୁ ମରାମତି କରୁଥିବା ଦେଖିଲେ । ପ୍ରତିବର୍ଷ ମୂଷା ମାନଙ୍କ ଦ୍ୱାରା ହିଡ ବିଚିତ୍ର ହୋଇ ପଡେ ଓ କୃଷକ ପ୍ରତ୍ୟେକ ବର୍ଷା ଆସିବା ପୂର୍ବରୁ ତାକୁ ସଜାଡେ । ସେଦିନ ସେହି ସପ୍ତସଖୀ ଥଟ୍ଟା ବିଦ୍ରୂପରେ ମାତି ସାଧନା କ୍ଷେତ୍ରରୁ ଫେରୁ ଥିଲେ । ସେମାନେ ଉକ୍ତ ବୃଦ୍ଧର ପାଖକୁ ଆସି ତା'ର ବୟସ ଓ ମଧ୍ୟାହ୍ନ ସମୟ ଏବଂ କଠିଣ ଶାରୀରିକ ଶ୍ରମକୁ କେନ୍ଦ୍ରକରି ବିଦ୍ରୂପ କଲେ । ବିଦ୍ରୂପ କେବଳ ସେମାନଙ୍କର ଶାରୀରିକ କ୍ଳେଶ କୁ ଲାଘବ କରିବା ଭିତରେ ସୀମିତ ଥିଲା, ବୃଦ୍ଧକୁ ଅଜାକୁ ନାତୁଣୀ ଥଟ୍ଟାର ସୀମା ମଧ୍ୟରେ ସୀମିତ ଥିଲା । ବାର୍ଦ୍ଧକ୍ୟ ସମସ୍ତଙ୍କୁ ଚିଡଚିଡିଆ କରେ । ତେଣୁ ବାର୍ଦ୍ଧକ୍ୟ ଜନିତ ଭାବରେ ବୃଦ୍ଧ ରାଗିଗଲା । ସେ ସେମାନଙ୍କୁ ଗାଳିଦେଲା । ଏପରିକି ସେ ଅଶ୍ଳୀଳ ଭାଷାରେ ମଧ୍ୟ ଗାଳିଦେଲା । ଫଳରେ ସପ୍ତସଖୀଙ୍କ ମଧ୍ୟରୁ ଜଣେ କହିଲା, ଅଭିମନ୍ତ୍ରିତ କୃତ୍ରିମ ବନ୍ୟା ଦ୍ୱାରା ଥଟ୍ଟାକୁ ଆହୁରି ଗତିଶୀଳ କରାଇ ଘଟଣାକୁ ଉପଭୋଗ କରିବା । ସେ କୃତ୍ରିମ ବନ୍ୟା ରଚନାର ଏକ ପ୍ରସ୍ତାବ ଦେଲା ଓ ତାହା ଅନ୍ୟମାନଙ୍କ ଦ୍ୱାରା ସ୍ୱୀକୃତ ମଧ୍ୟ ହେଲା ।

ବୁଢାକୁ ଏପରି ବିଦ୍ରୂପ ଆହୁରି ବାଧିଲା । ସେ ଉତ୍କ୍ଷିପ୍ତ ହୋଇ ଆହୁରି ଗାଳିଦେଲା ଓ ବାଡିରେ ପିଟିବାକୁ ଉଦ୍ୟତ ହେଲା । କୁମାରୀମାନେ ଜଣକୁ ରଗେଇ ମଜା ଦେଖିବାକୁ ଭଲ ପାଆନ୍ତି, ଖୁବ୍ ହସନ୍ତି । ସେହି ହିସାବରେ ବୁଢାର ଏତାଦୃଶ ରାଗ ଦେଖି ଆହୁରି ହସିଲେ ବୁଢା ଆହୁରି ରାଗିଲା । ଶେଷରେ



ମଦନା (ଜ୍ଞାନଦେଇ) କୃତ୍ରିମ ବନ୍ୟା ରଚନାର ଆଦେଶ ଦେଲା । ସବୁକୁମାରୀ ଜ୍ଞାନଦେଇ ମୁହଁରୁ ବାହାରୁଥିବା କଥା ମାନୁଥିଲେ । ସମସ୍ତେ ଏକ ସାଙ୍ଗରେ କୃତ୍ରିମ ବନ୍ୟା ରଚନାର ସିଦ୍ଧ ମନ୍ତ୍ର ପ୍ରୟୋଗ କଲେ । ତାହା ସାଧରଣ ନଥିଲା, ଯାଦୁଗରୀ ମନ୍ତ୍ରରେ ମନ୍ତ୍ରିତ କାଉଁରୀ ବିଦ୍ୟାରେ ସିକ୍ତ ଥିଲା । ସମସ୍ତେ ଏକା ସମୟରେ ଶରିରର ନିଗିଡ଼ା ଜଳ ବିକ୍ଷେପିଲେ । ସଙ୍ଗେ ସଙ୍ଗେ ତାହା ଭୀଷଣ ଆକାର ଧାରଣ କଲା, ତାହା ବନ୍ୟାଜଳପରି ପ୍ଲାବିତ ହେଲା ଓ ବୃଦ୍ଧ ଠିଆ ହୋଇଥିବା ଆଡେ ଅଗ୍ରସର ହେଲା । ତାହା ଭୀଷଣ ଆକାର ହୋଇ ଉଗ୍ର ରୂପ ଧାରଣ କଲା । ଉଗ୍ର ମୂର୍ତ୍ତି ଧାରଣକରିଥିବା ଉକ୍ତ ବନ୍ୟାଜଳରେ ବୃଦ୍ଧ ଓ ତା'ର ମାଟି ତାଡିବା ସମସ୍ତ ସରଞ୍ଜାମ ବୋହି ଗଲେ । ବୃଦ୍ଧ ବହୁ କଷ୍ଟରେ ଅନେକ ବାଟ ଉକ୍ତ ବନ୍ୟାରେ ବୋହି ଗଲାପରେ କୌଣସି ଏକ ଆମ୍ବଡାଳରେ ଲଟକିଲା । ପରେ ବନ୍ୟା ଛାଡିଲା ପରେ ସେ ସ୍ଥାନରେ ଏକ ନାଳରେ ସୃଷ୍ଟି ହେଲା

ହଁ ଉକ୍ତ ସ୍ଥାନକୁ ସପ୍ତସଖିଙ୍କ ଶରୀର ନିସୃତ ତ୍ୟକ୍ତ ଜଳରୁ ଉତ୍ପନ୍ନ ହେତୁ "ଧାଙ୍ଗରୀମୁତା" ନାମରେ ନାମିତ ହେଲା । ପ୍ରାୟ ୨୦୦୦ ବର୍ଷ ପୂର୍ବରୁ ଏହି ନାମକରଣର ସ୍ଥାନଟି ଏବେ କୁଟମୁଣ୍ଡା ଲିଙ୍କରୋଡରୁ ପ୍ରାୟ ୨୦୦ମି. ଉତ୍ତରକୁ ବର୍ହାଛାପର ଯିବା ପାଖରେ ଏବେବି ନାମିତ ଅଛି । ବୂଢା ଆମ୍ବଡାଳଟି ଧରି ଲଟକିଥିବାରୁ ସେହି ଦିନୁ ସେଠାରେ ନିଶ୍ଚୟ ଏକ ଆମ୍ବବୃକ୍ଷ ରହୁଛି କେଉଁ ଆବାହମାନ କାଳରୁ । ଏବେ ମଧ୍ୟ ଉକ୍ତ ସ୍ଥାନଟି ଜନ ମୁଖରେ ଧାଙ୍ଗରିମୁତା ନାମିତ ରହିଛି ।

ତେବେ ପ୍ରଶ୍ନ ଉଠେ, ଏହି ନାମ କରଣର ପରିବର୍ତ୍ତନ କିଏ କାହିଁକି ନକଲେ ଏବଂ ଏପରି ଏକ ଅଶ୍ଳୀଳ ଶବ୍ଦ ଉକ୍ତ ପବିତ୍ରସ୍ଥାନ ପାଇଁ କାହିଁକି ପ୍ରୟୋଗ କରାଯାଇଛି । ଆମେ ଏତିକି ମଧ୍ୟ ମନେ ରଖିବା ଉଚିତ୍ ଯେ ଦୀର୍ଘ ୨୦୦୦ ବର୍ଷର ଜନମୁଖରେ ପ୍ରବହମାନ ଅବସ୍ଥାରେ ଥିବା ଜନଶ୍ରୁତି ଜନିତ ନାମ କରଣକୁ କିଏ ଦିନକରେ କିପରି ପରିବର୍ତ୍ତନ କରିପାରିବ ?





# ଆବିର୍ଭୂତା ମାଁ ପାଟଣେଶ୍ୱରୀ

ପଶ୍ଚିମ ଓଡିଶାର ସର୍ବପ୍ରାଚୀନ ରାଜ ଅଧିଷ୍ଠାତ୍ରୀ ଦେବୀ ମାଁ ପାଟଣେଶ୍ୱରୀଙ୍କର ଆବିର୍ଭାବ ସଂପର୍କୀୟ କିମ୍ବଦନ୍ତୀକୁ କୋଶଳ ଇତିହାସ ସ୍ପଷ୍ଟଭାବେ ବଖାଣିବାରେ ଯତ୍ନ କରିନଥିଲେ ମଧ୍ୟ ଦେବୀଙ୍କର ସମ୍ଭୂତର କାହାଣୀ ଅତ୍ୟନ୍ତ ମନୋରଞ୍ଜକ ବୋଲି ବିଭିନ୍ନ ଆଧାର କହେ । ମାଁ ପାଟଣେଶ୍ୱରୀ ବନଦୁର୍ଗା ଥିଲେ । କାମାନ୍ତପୁର ବା ବାବନୀ ଓ ପରବର୍ତ୍ତୀ କାଳରେ କୁଆଁରୀ ପାଟଣା ନାମଧାରୀ ଏହି କୋଶଳ ଗଡର ରାଜା ମାଧବ ଚନ୍ଦ୍ର ଦେବଙ୍କୁ ଦେବୀ ହଠାତ୍ ବନ ମଧ୍ୟରେ ଦେଖାଦେବା, ରାଜା ମାଁ ବନଦୁର୍ଗାଙ୍କୁ ରାଜ୍ୟର ଅଧିଷ୍ଠାତ୍ରୀ ଦେବୀ ରୂପେ ବରଣ କରିନେବା, ପାରଂପରିକ 'ବଏଲ' ଯାତ୍ରାର ଆରମ୍ଭ କରିବା ଆଦି କାହାଣୀ ଅଲୌକିକ ଏବଂ ରୋମାଞ୍ଚକ ମଧ୍ୟ ।

ମାଧବଚନ୍ଦ୍ର ଦେବ କୋଶଳଗଡ (କୁଆଁରୀପାଟଣା)ର ସୁଶାସକ ଜନପ୍ରୀୟ ଓ ପ୍ରଜାବତ୍ସଳ ରାଜା ଥିଲେ । ପ୍ରଜା ପୀଡନ ତାଙ୍କ ହୃଦୟକୁ ଆଘାତ ଦେଉଥିଲା, କିନ୍ତୁ ଜଙ୍ଗଲ ପରିବେଷ୍ଟିତ ଏହି ରାଜ୍ୟର ରାଜଧାନୀରେ ହିଂସ୍ର ଜନ୍ତୁଙ୍କର ସମୟ ସମୟରେ କୋପ ଦୃଷ୍ଟି ଥିଲା । ସେମାନଙ୍କର ଉତ୍ପିଡନ ପ୍ରଜା ସମେତ ରାଜାଙ୍କୁ ମଧ୍ୟ ବିଚିବ୍ୟସ୍ତ କରି ଦେଉଥିଲା ।

ଥରେ ଜଙ୍ଗଲ ମଧ୍ୟରୁ ଏକ ଗଣ୍ଡାରର ଦୌରାତ୍ମ୍ୟ ରାଜଧାନୀ ପାଟଣାରେ ବୃଦ୍ଧି ପାଇଲା । ଗଣ୍ଡାରଟି ଏତେ ଚତୁର ଥିଲା ଯେ ଗାଈ ଗୋରୁ ଏପରିକି ମଣିଷକୁ ମଧ୍ୟ ଖାଇ ଯାଉଥାଏ । ବିଭିନ୍ନ ଉପାୟରେ ତାକୁ ମାରିବା କିମ୍ବା ଧରିବାରେ ରାଜକର୍ମଚାରୀଙ୍କ ପ୍ରଚେଷ୍ଟା ବିଫଳ ହେଲାରୁ ରାଜା ବାଧ୍ୟ ହୋଇ ନିଜେ ଏ ବିଷୟରେ ଚେଷ୍ଟା କରିବାକୁ ଘୋଷଣା କଲେ । ମନୁଷ୍ୟର ସବୁଚେଷ୍ଟା ବିଫଳ ହେଲେ ସେ ଏକ ଚରମ ପଦକ୍ଷେପ ନେବାକୁ ବାଧ୍ୟ ହୋଇଥାଏ । ଠିକ୍ ଏହି କାରଣରୁ ହିଁ ରାଜା ସ୍ୱୟଂ ସାମାନ୍ୟ ଏକ ଗଣ୍ଡାର ମାରିବା ପାଇଁ ଜାତୀୟ ସ୍ତରରେ ସମସ୍ତ



ପ୍ରଜାଙ୍କୁ ଆହ୍ୱାନକରି ଦିନେ ଶିକାରେ ବାହାରି ପଡିଲେ । ସିଦ୍ଧାନ୍ତ ଓ ଆହ୍ୱାନ ଅନୁସାରେ ଅସଂଖ୍ୟ ପ୍ରଜା ରାଜାଙ୍କୁ ସାହାଯ୍ୟ କରିବା ପାଇଁ ଜଙ୍ଗଲକୁ ଗଣ୍ଡାର ଅନ୍ୱେଷଣରେ ବାହାରିଲେ । ଜଙ୍ଗଲ ମଧ୍ୟରେ ଗଣ୍ଡାର ଖୋଜା ଚାଲିଥାଏ, କିନ୍ତୁ ସମସ୍ତ ଜଙ୍ଗଲ ଛାନବିନ କଲାପରେ ମଧ୍ୟ ଗଣ୍ଡାରର ଚିହ୍ନ ବର୍ଣ୍ଣ ନଥିଲା ପରି ବୋଧ ହେଲା । ରାଜା ଅପରାହ୍ନ ପର୍ଯ୍ୟନ୍ତ ଖୋଜି କ୍ଳାନ୍ତ-ବିସନ୍ନ ହୋଇ ବିଫଳ ହେଲେ ଗଣ୍ଡାରକୁ ଠାବ କରିବା ପାଇଁ । ଶେଷରେ ନିରୁପାୟ ହୋଇ ହତାଶାରେ ଏକ ବିଶାଳ ଆମ୍ରବୃକ୍ଷ ମୂଳରେ ଯାଇ ବିଶ୍ରାମ ନେଲେ । ଘର୍ମାକ୍ତ କ୍ଳାନ୍ତ ଶରୀର ଭୂମି ଉପରିସ୍ଥ ସବୁଜ ଘାସରେ ଠିକ୍ ଲୋଟାଇ ଦେବାକୁ ବସୁଥିବା ବେଳେ ଓ ଅନ୍ୟ ପକ୍ଷରେ ଆଗ୍ରହୀ ପ୍ରଜାକୁଳ ଗଗନ ପବନ ପ୍ରକମ୍ପିତ କରୁଥିବା ସମୟରେ ହଠାତ୍ ରାଜା ଏକ ସୁଲଳିତ ନାରୀ କଣ୍ଠର ସ୍ୱର ଶୁଣିବାକୁ ପାଇଲେ । ଭାବିଲେ, ନିକଟବର୍ତ୍ତୀ କୌଣସି ଗ୍ରାମର ଏକ ତରୁଣୀ କଣ୍ଠସ୍ୱର ହୋଇଥିବ । କିନ୍ତୁ ପରମୁହୂର୍ତ୍ତରେ ନିକଟରେ କୌଣସି ଗ୍ରାମ ଥିବାର ସ୍ମରଣ କରି ନ ପାରି ସଙ୍ଗେ ସଙ୍ଗେ ମନ୍ତ୍ରୀଙ୍କୁ ନାରୀ ଆଗମନର କାରଣ ପଚାରିଲେ । ମନ୍ତ୍ରୀ କିଛି ସମୟ ପରେ ନିଜର ଅସାମର୍ଥ୍ୟତା ପ୍ରକାଶ କଲାରୁ ରାଜା ନିଜେ କଣ୍ଠସ୍ୱର ଉତ୍ପନ୍ନକାରୀ ନାରୀକୁ ଆବିଷ୍କାର କରିବାକୁ ଗଲେ, କିନ୍ତୁ ବିଫଳ ହୋଇ ଫେରିଲେ । ରାଜା ଚିନ୍ତାମଗ୍ନ ହେଲେ, ତାଙ୍କର ହୃଦସ୍ପନ୍ଦନ ଦ୍ୱିଗୁଣିତ ହେଲା । ସେ କିଂକର୍ତ୍ତବ୍ୟ ବିମୂଢ଼ତା ପ୍ରକାଶ କରୁଥିବା ସମୟରେ ପୁଣି ସେହି ନାରୀ କଣ୍ଠ ମହାଶୂନ୍ୟରୁ ଉଦ୍‌ଭାସିତ ହୋଇ ଉଠିଲା - ରାଜନ ! ମୁଁ ତୋତେ ପରୀକ୍ଷା କରିବା ପାଇଁ ଏଠାକୁ ଆଣିଛି । ମୁଁ ଗନଦୁର୍ଗା ।

ରାଜା ଅବାକ୍ ହୋଇ କଣ୍ଠସ୍ୱର ଭାସି ଆସୁଥିବା ଦିଗକୁ ଅନାଇଲେ । ନୀଳ ଆକାଶ ପର୍ଦ୍ଦାରେ ଆଲୋକରାଶି ବିଚ୍ଛୁରିତ ହୋଇ ବିଦ୍ୟୁତ ପରି ରାଜା ମୁହଁରେ ଝଟକି ଉଠିଲା । ସେହି ଅପରିସୀମ ବିଦ୍ୟୁତ ମଧ୍ୟରୁ ଲାଲ ଟହଟହ ହୋଇ ଏକ ନାରୀ ଛାୟା ମୂର୍ତ୍ତି ସୃଷ୍ଟି ହେଲା । ମୂର୍ତ୍ତି ଦୁର୍ଗାଙ୍କର ସମସ୍ତ ଆୟୁଧ ଦଶଭୂଜରେ ଧାରଣ କରି ରାଜାପ୍ରତି ବାତ୍ସଲ୍ୟଭରା ନୟନରେ ଅନାଇ ହସୁଥିଲା । କହିଲା - ରାଜନ ! ଶୁଣିଛି ତୁ ପ୍ରଜା ବତ୍ସଳ ଅଟୁ, ଧାର୍ମିକ ଓ ନ୍ୟାୟବନ୍ତ ମଧ୍ୟ । ତେଣୁ ତୋ ଉପରେ ପ୍ରୀତ ହୋଇ ତୋତେ ଦେଖା ଦେଲି । ଶୁଣିଛି ତୁ ମୋର ଭକ୍ତ ବୋଲି । ତେଣୁ ତୋ






ଉପରେ ମୁଁ ସନ୍ତୁଷ୍ଟ ।

ରାଜା ଧର୍ମାକ୍ତ ଥିଲେ, ଆବାକ୍ ଥିଲେ, ଚେତା ଶୂନ୍ୟ ପ୍ରାୟ ଥିଲେ । ସେ ମାଁ ମାଁ ବୋଲି ସାଷ୍ଟାମ ପ୍ରଣାମ କରିବାକୁ ତଥାପି ଭୁଲିଲେ ନାହିଁ । ସେହିପରି ସାଷ୍ଟାମ ପ୍ରଣିପାତ କରି କହିଲେ "ମାଁ ତୁ ମୋର ଇଷ୍ଟଦେବୀ ହୁଅ । ଏତିକି ମୋର ତୋ ଠାରେ ଅଛି ।"

ଦେବୀ ତତ୍‌କ୍ଷଣାତ୍ କହି ଉଠିଲେ - ମୁଁ ବନଦୁର୍ଗା । ନଗରରେ ଲୋକାରଣ୍ୟରେ ମୋର ସ୍ଥାନ ନାହିଁ । ବନଦେବୀ ମୁଁ, ବନରେ ରହିବି । ଏହି ସର୍ତ୍ତରେ ତୁ ଯଦି ସମ୍ମତ, ତେବେ ମୁଁ ତୋର ଇଷ୍ଟଦେବୀ ହେବାକୁ ମଧ୍ୟ ଅଙ୍ଗୀକାର କରୁଛି ।

ରାଜା କାକୁତିରେ କହିଲେ - 'ମୁଁ ରାଜା ହୋଇ ନଗରରେ ରହିବି, ତୋର ସେବା ପ୍ରତିଦିନ କରିବି କିପରି ମାଁ' ?

ଦେବୀ କହିଲେ - ଏହି 'ବୁଢି କୁଞ୍ଚେର' ଜଙ୍ଗଲର ଠିକ୍ କେନ୍ଦ୍ରରେ ଏକ ନିରୋଳ ସ୍ଥାନ ଅଛି । ସେଠାରେ ତିନୋଟି ସାହାଡା ବୃକ୍ଷ ପୂର୍ବରୁ ପଶ୍ଚିମ କୁ ତିନି ତିନି ହାତ ବ୍ୟବଧାନରେ ପୂର୍ବମୁହା ହୋଇ ରହିଛନ୍ତି । ତାହାହିଁ ମୋର ନିବାସ ସ୍ଥାନ ଅଟେ । ତୁ ମୋତେ ସେଠାରେ ପୂଜା ଦେବୁ । ତୁ ଯଦି ମୋତେ ତୋର ନଗର କୁ ନେବାକୁ ଚାହୁଁଛୁ, ତାହାହେଲେ ମୁଁ ମଣିଷ (ବରୁଆ) ଦେହରେ ବର୍ଷକୁ ଥରେ ଆଶ୍ୱିନ ଶୁକ୍ଳ ନବମୀ ତିଥିରେ ଯିବି ଓ ସେ ଦିନ ସମସ୍ତ ପ୍ରଜାଙ୍କୁ ଦର୍ଶନ ଦେବି ।

ରାଜା ଦେବୀଙ୍କ କଥାରେ ମୁଣ୍ଡ ହଲାଇ ଗଦଗଦ ହୋଇ ସ୍ୱୀକାର କଲେ ଦେବୀଙ୍କ ଆଦେଶକୁ ଅପେକ୍ଷା କଲେ ।

ଏବଂ ସେହି ଦିନଠାରୁ ମାଁ ବନଦୁର୍ଗା ଏହି ବାବନୀ ବା ପତ୍ତନଗଡର ଅଧିଷ୍ଠାତ୍ରୀ ଦେବୀ ହେତୁ ତାଙ୍କୁ ପତ୍ତନେଶ୍ୱରୀ ବୋଲି ଅଭିହିତ ମଧ୍ୟ କରାଇଲେ । ପରବର୍ତ୍ତୀ ଯୁଗରେ ପତ୍ତନଗଡ ନାମଟି ପାଟଣାଗଡରେ ରୂପାନ୍ତରିତ ହେବାରୁ ଦେବୀଙ୍କର ନାମ ମଧ୍ୟ ରୂପାନ୍ତରିତ ହୋଇ ପାଟଣେଶ୍ୱରୀ ହେଲା । ଏଯାବତ୍



ପ୍ରତିବର୍ଷ ପାଟଣା ରାଜ୍ୟର ଅଧିଷ୍ଠାତ୍ରୀ ଦେବୀ ପାଟଣେଶ୍ୱରୀଙ୍କର ବଏଲଯାତ୍ରା ପାଳିତ ହୋଇ ଆସୁଅଛି । ପରବର୍ତ୍ତୀ ସମୟ ସ୍ରୋତରେ ଡଙ୍ଗେଇ ଓ ମାଁ ସମଲେଇ ମଧ ମାଁ ପାଟଣେଶ୍ୱରୀଙ୍କର ଭଉଣୀ ହିସାବରେ ପୂଜିତା ହେଲେ ଏବଂ ସେମାନେ ମଧ ବଡ ଭଉଣୀ ପରି ବଏଲ ମାଧମରେ ସର୍ବ ସାଧାରଣରେ ମଣିଷ (ବରୁଆ) ଦେହରେ ବିରାଜିତ ହୋଇ ଦର୍ଶନ ଦେଲେ ।

ସୁତରାଂ ମାଁ ପାଟଣେଶ୍ୱରୀ, ଦୁର୍ଗାଙ୍କର ଏକ ଆଦିରୂପ ଏବଂ ସେ ସ୍ୱଇଛାରେ ଆବିର୍ଭୂତା ହୋଇ ଏହି ପଶ୍ଚିମ ଓଡିଶାର ପ୍ରଚୀନତମ ସହର ଓ କେନ୍ଦ୍ରବିନ୍ଦୁ ପାଟଣାଗଡର (ପାଟଣା ରାଜ୍ୟର) ଅଧିଷ୍ଠାତ୍ରୀ ଦେବୀ ହୋଇ ସମଗ୍ର ପଶ୍ଚିମାଞ୍ଚଳ (ଆଧୁନିକ) ଅଗ୍ରପୂଜା ଜଗତ୍‌ଜନନୀ ମାଁ ରୂପେ ଆଦରଣୀୟା ହୋଇଛନ୍ତି । ତେଣୁ ଶକ୍ତି ପୀଠ ପାଟଣାରାଜ୍ୟର ଶକ୍ତି ଉପାସନା ପରଂପରା ଦୌଡରେ କୁଆଁରୀପାଟଣାର ସ୍ଥାନ ସର୍ବାଗ୍ରେ ଅବଶ୍ୟ ରହିଛି ବୋଲି ଗବେଷକ ମାନେ ସ୍ୱୀକାର କରନ୍ତି । ମାଁ ପାଟଣେଶ୍ୱରୀଙ୍କୁ କୋଶଳୀ ଭାଷା ଭାଷୀ ଅଞ୍ଚଳର ଶକ୍ତି ସ୍ୱରୂପିଣୀ ମାଁ ଦୁର୍ଗାଙ୍କର ଜ୍ୟେଷ୍ଠା ରୂପବୋଲି ସ୍ୱୀକାର କରନ୍ତି । ଜଗତ୍‌ଜନନୀଙ୍କର ସାକ୍ଷାତ୍ ସ୍ୱରୂପ ଦକ୍ଷିଣ କାଳୀର ପ୍ରତିନିଧିତ୍ୱ କରୁଥିବା ଆଦିଶକ୍ତି ସ୍ୱରୂପା ମାଁ ପାଟଣେଶ୍ୱରୀଙ୍କୁ କୁଆଁରୀ ପାଟଣା ଅଞ୍ଚଳରେ ପ୍ରତ୍ୟକ୍ଷ ଦେବୀ ରୂପେ ସମ୍ମାନ ଓ ଶ୍ରଦ୍ଧା କରନ୍ତି । କୋଶଳୀ ଭାଷାଭାଷୀ ପ୍ରତ୍ୟେକ ଜନତା ତା'ଙ୍କୁ କୁଆଁରୀ କାମଚଣ୍ଡୀଙ୍କ ସ୍ୱରୂପ ମନେ କରନ୍ତି ।





# ଆଠମଲ୍ଲିକେ ଲେମ୍ବୁରାଜା

ଦୀର୍ଘ ସମୟ ଧରି କୁଆଁରୀ ପାଟଣା ର ତନ୍ତ-ମନ୍ତ୍ର ସମ୍ବନ୍ଧରେ ଆପଣମାନଙ୍କୁ କହି ଆସୁଥିଲି ଏବଂ ସେହି ସ୍ରୋତରୁ ସାମାନ୍ୟ ବିରତି ନେବା ଉଚିତ ମନେକରି ଏବେ ପାଟଣାର ଚୈହାନ ରାଜତ୍ୱର ମୂଳଦୁଆ ଦେଇ ଥିବା ସେହି ମହାନ ବ୍ୟକ୍ତିତ୍ୱ ସମ୍ବନ୍ଧରେ ଆପଣମାନଙ୍କ ଅବଗତି ନିମନ୍ତେ "ଆଠ ମଲ୍ଲିକେ ଲେମ୍ବୁରଜା" କଥା କହୁଛି ।

ସ୍ଥାନୀୟ ସାମନ୍ତ ରାଜା କୃତିବାସ ଦେଓ ୧୧୩୧ ଖ୍ରୀଷ୍ଟାବ୍ଦରେ ପରଲୋକ ଗମନକଲେ ଏବଂ ସେ ଅପୁତ୍ରିକ ଥିବାରୁ ତାଙ୍କର ବିଧବା ରାଣୀ ହେମନ୍ତ କୁମାରୀ ରାଜ କାର୍ଯ୍ୟ ପରିଚାଳନା କଲେ । ଶୃଙ୍ଖଳା ଓ ଦକ୍ଷ ଶାସନ ନିମିତ୍ତ ରାଜ୍ୟର ବିଭିନ୍ନ ପ୍ରାନ୍ତରୁ ସାତଜଣ ସ୍ୱନାମଧନ୍ୟ ବ୍ୟକ୍ତିଙ୍କର ଏକ ସ୍ୱଚ୍ଛ ଶାସନ ପରିଚାଳନା ସମିତି ଗଠନ କଲେ । ମଲ୍ଲଯୁଦ୍ଧରେ ନିପୁଣ ଥିବାରୁ ସେମାନଙ୍କୁ ମଲ୍ଲିକ ମଧ କୁହାଯାଉଥିଲା । ମଲ୍ଲିକମାନଙ୍କ ମଧରୁ ମୁଖ୍ୟ ମଲ୍ଲିକଙ୍କୁ "ମୁଣ୍ଡମଲ୍ଲିକ" କୁହାଯାଉଥିଲା । ଘାଗୁର୍ଲିର ଚକ୍ରଧର ପାଣିଗ୍ରାହୀ ମୁଣ୍ଡମଲ୍ଲିକର ପଦବୀ ଅଳଂକୃତ କରୁଥିଲେ । ଥରେ ସେ ଏକ ବିରାଟ ଶାବଳକୁ ଛାତିରେ ଭାଙ୍ଗି ଦେଇଥିଲେ ବୋଲି ତାଙ୍କୁ ଶାବଳଭଙ୍ଗା ପାଣିଗ୍ରାହୀ ବୋଲି ଲୋକେ ଶ୍ରଦ୍ଧାରେ ଡାକୁଥିଲେ । ତାଙ୍କ ପଛକୁ ଐତିହାସିକ ରାମଚନ୍ଦ୍ର ମଲ୍ଲିକଙ୍କର ପୂର୍ବ ବଂଶଧର "ଝାଡୁଆ କେଉଁଟ" ଥିଲେ । ଜଣେ ସେମଲି କେଉଁଟ (ପାଇକ ସମରାର), ଜଣେ ବିଂଝାଲ ମଲ୍ଲିକ (ବୈଜଲ ସାଗରର), ଜଣେ ଚଅଁଳା ପଇକ (ପାଟଣାଗଡ-ସାଲେଭଟାର), ଜଣେ ଗଉଡ ଜାତିର (ଉଟବାଲିର) ଏବଂ ଜଣେ ପାଇକ (ବୁଡେକ) ଏହିପରି ମଲ୍ଲିକ ୭ଜଣ ଥିଲେ । ଲେମ୍ବୁକୁ ମିଶାଇ ଆଠ ମଲ୍ଲିକ କୁହାଯାଉଥିଲା ।

ଅଷ୍ଟ ମଲ୍ଲିକଙ୍କର ଶାସନ ପଦ୍ଧତି ଓ ରାଜକାର୍ଯ୍ୟ ପରିଚାଳନା ପ୍ରଣାଳୀ ଅତୀବ ବିଚିତ୍ର ଥିଲା । ସେମାନେ ଲେମ୍ବୁକୁ ସିଂହାସନରେ ବସାଇ ନିଜ ନିଜର ପାଳି ଅନୁଯାୟୀ ରାଜକାର୍ଯ୍ୟ ଚଳାଉଥିଲେ । ମଲ୍ଲିକ ମାନେ ବୃତ୍ତାକାରେ ବସି ମଝିରେ



ସୁନାର ଲେମ୍ବୁକୁ ଘୁରାଉଥିଲେ । ଲେମ୍ବୁଟି ଟା'ର ମେରୁରେ ଘୁରି ଘୁରି ତଳେ ପଡି ଗଡି ଗଡି ଯାଇ ଜଣକର କୋଳ ପର୍ଯ୍ୟନ୍ତ ପହଞ୍ଚୁଥିଲା ଏବଂ ପରବର୍ତ୍ତୀ ୭ ଦିନ ସେ ପାଟଣାର ରାଜକାର୍ଯ୍ୟ ପରିଚାଳନା କରୁଥିଲେ । ଅବଶିଷ୍ଟ ୬ ଜଣ ତାଙ୍କୁ ଶାସନ କାର୍ଯ୍ୟରେ ସାହାଯ୍ୟ କରୁଥିଲେ । ରାଣୀଙ୍କ ନାମରେ ୮ ବର୍ଷ ଏହି ପରି ଲେମ୍ବୁ ଜରିଆରେ ଶାସନ ହେଲା ଉତ୍ତାରୁ ୧୧୩୮ ଖ୍ରୀଷ୍ଟାବ୍ଦରେ ରାଣୀଙ୍କର ଦେହାନ୍ତ ହେଲା । ତଥାପି ତାଙ୍କର ଉତ୍ତରାଧିକାରୀ କେହି ନଥିଲେ ମଧ୍ୟ ଶୃଙ୍ଖଳିତ ଭାବେ ଅଷ୍ଟମଲ୍ଲିକ ୧୧୫୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଗଣତାନ୍ତ୍ରୀକ ପଦ୍ଧତି ବଜାୟ ରଖିଥିଲେ ।

ପାଟଣାରେ ଅଷ୍ଟ ମଲ୍ଲିକଙ୍କର ଶାସନକାଳ ମଧ୍ୟରେ ଚୌହାନ ବଂଶର ବିଶାଳ ରାଓଙ୍କ ଜଣେ ବଂଶଧର ରାଜପୁତନାର ହୀରାବତୀ ରାଜ୍ୟରୁ ପଳାଇଆସି ମଇନିପୁର ଓ ପରବର୍ତ୍ତୀ ସମୟରେ ଅନ୍ୟ ଜଣେ ଭ୍ରାତା ମଇନିପୁରୁ ଆସି ଖରିଆଡରେ ରାଜା ହେଲେ । ତାଙ୍କ ବଂଶର ହଟ୍ଟ ହମିର ଦେଓ ନାମକ ଜଣେ ରାଜା ଖରିଆଡ ସିଂହାସନରେ ବସିଥିଲେ । କିନ୍ତୁ ଅନ୍ୟ ଏକ ଅଖ୍ୟାୟିକା ଅନୁସାରେ ଦିଲ୍ଲୀର ସମ୍ରାଟ ପୃଥ୍ୱୀରାଜ ଚୌହାନ ଯୁଦ୍ଧକ୍ଷେତ୍ରରେ ପ୍ରାଣବଳୀ ଦେଲାପରେ ତାଙ୍କର ଜଣେ ପୁତ୍ର ହମିର ଦେଓ ଗନ୍ଧମାର୍ଦ୍ଦନ ପାହାଡର ଏକ କ୍ଷୁଦ୍ର ପାହାଡକୁ ଖୋଲି ଗଡ ନିର୍ମାଣ କଲେ, ଯେଉଁଠାରେ କି ଅଦ୍ୟାବଧି ଶହଶହ ଗୁମ୍ଫା ଓ ବିରାଟ ବିରାଟ ଅସ୍ତ୍ର ବିଦ୍ୟମାନ ଅଛି । ହମିର ଦେଓଙ୍କର ପୂର୍ବ ବଂଶଧର ଯିଏ ହୋଇଥାନ୍ତୁ ନା କାହିଁକି କାଳର ବିସ୍ମୃତି ଗର୍ଭରେ ଲୁପ୍ତପ୍ରାୟ ଗଡ ପର୍ବତ ହମିର ଗଡ ହିଁ ଥିଲା ।

ଥରେ ତ୍ରୀକଳିଙ୍ଗନାଥଙ୍କର ଆହ୍ୱାନ କ୍ରମେ ସେ ସସୈନ୍ୟ ଯୁଦ୍ଧକ୍ଷେତ୍ରକୁ ବାହାରିଲେ । ଯିବା ସମୟରେ ଦୁଇଗୋଟି ସୁଶିକ୍ଷିତ ପାରା ନେଇ କହିଗଲେ - ଯଦି ପାରା ଦ୍ୱୟ ଫେରିଆସନ୍ତି, ତେବେ ସେ ଯୁଦ୍ଧ କ୍ଷେତ୍ରରେ ପ୍ରାଣ ବିସର୍ଜନ କରିଛନ୍ତି । ଅନ୍ୟ ପକ୍ଷରେ ଜୀବିତ ଥିଲେ ପାରା ଦ୍ୱୟ ତାଙ୍କ ସାଙ୍ଗରେ ଫେରିବେ । ଦିନେ ଦୈବାତ ଦୁର୍ଭାଗ୍ୟ ବଶତଃ ପାରା ଦ୍ୱୟ ମୁକୁଳି କ୍ଷୀପ୍ର ଗତିରେ ଗଡପର୍ବତ ଭିତରେ ପହଞ୍ଚିଯିବାରୁ ରାଜା ଯୁଦ୍ଧରେ ଶହୀଦ ହେଲେ ଭାବି ତିନି ରାଣି ସତୀ ହେବାର ସିଦ୍ଧାନ୍ତ କଲେ । ବଡ ଦୁଇ ରାଣୀ ସାନ ରାଣୀର ଗର୍ଭସ୍ଥ ସନ୍ତାନକୁ ବଂଶରକ୍ଷା କରିବୁ ବୋଲି ଜନ୍ମ ଦେବାକୁ ସେଠାରୁ ପଳାୟନର ପରାମର୍ଶ ଦେଲେ ଓ "ରାଣୀଦହ" ରେ ଝାସଦେଇ ସତୀ ହେଲେ । କିନ୍ତୁ ହମିର ଦେଓ





ଯୁଦ୍ଧ ସରିଗଲା ପରେ ଗଡକୁ ଫେରି ସବୁ ବିଷୟ ଜାଣି ମ୍ରିୟମାଣ ହୋଇ ଅବଶିଷ୍ଟ ଜୀବନକୁ ଗୁରାଗଡଠାରେ ସନ୍ୟାସୀ ପରି ଅତିବାହିତ କରି କଟାଇଲେ ।

ଗର୍ଭବତୀ ରାଣୀ ଜୟନ୍ତୀ ଗୋଟିଏ ଛୋଟହାତୀ, ଜଣେ ଧାତ୍ରୀ ଓ ମାହୁନ୍ତ ତଥା ଅପରିସୀମ ଧନ ଧରି ଆସି ଡକଲା ଜଙ୍ଗଲରେ ପହଞ୍ଚିଲେ । ସେମାନେ ଏକ ଝରଣା ଦେଖି ସେଠାରେ ବିଶ୍ରାମ କରିବା ଆଳରେ ରାଣୀଙ୍କୁ ଏକୁଟିଆ ଛାଡି ହାତୀ ସହ ମାହୁନ୍ତ ଓ ଧାତ୍ରୀ ସେଠାରୁ ପଳାୟନ କଲେ । କୁହାଯାଏ ମାହୁନ୍ତ ଓ ଧାତ୍ରୀଙ୍କର ଆଗରୁ ଦୈହିକ ସଂପର୍କ ଥିଲା ଓ ସେମାନେ ଯୋଜନା ବଦ୍ଧ ଭାବେ ଏବଂ ଉଦ୍ଦେଶ୍ୟ ରଖି ରାଣୀଙ୍କ ସହଗାମୀ ହୋଇଥିଲେ ।

ଇତି ମଧ୍ୟରେ ରାଣୀଙ୍କର ପ୍ରସବ ବେଦନା ଅସହ୍ୟ ହୋଇ ବସିବାରୁ ସେ ଅଧିକରୁ ଅଧିକ ପ୍ରଳାପ କରିବାକୁ ଲାଗିଲେ । ସୂର୍ଯ୍ୟଙ୍କର ପ୍ରଖର କିରଣ ସାଙ୍ଗକୁ ପ୍ରସବ ବେଦନା ବୃଦ୍ଧି ହେଉଥାଏ । ଠିକ୍ ସେତେବେଳେ ଡ଼କଲା ଗ୍ରାମର ଝାଙ୍କର ଓ ଝାଙ୍କରାଣୀ କାଠିପତ୍ର ସଂଗ୍ରହ ପାଇଁ ଜଙ୍ଗଲ କୁ ଆସିଥିଲେ । ରାଣୀଙ୍କର ଆକୁଳ କ୍ରନ୍ଦନ ଶୁଣି ପ୍ରଥମେ ପିଶାଚୀ ବୋଲି ଭାବୁଥିଲେ ମଧ ପରେ ମାନବୀ ବୋଲି ସଂଦେହମୁକ୍ତ ହୋଇ ଦୁହେଁ ରାଣୀଙ୍କ ପାଖକୁ ଆସିଲେ । ଝାଙ୍କରର ନିର୍ଦ୍ଦେଶରେ ଝାଙ୍କରାଣୀ ରାଣୀଙ୍କୁ ସାହାଯ୍ୟ କଲା । ରାଣୀ ବିଳମ୍ବିତ ଦ୍ୱି-ପ୍ରହରେ ଏକ ଦିବ୍ୟ ସୁନ୍ଦର ପୁତ୍ରସଂତାନ ଜନ୍ମ ଦେଲେ ଓ ପ୍ରସବ ବେଦନାରୁ ମୁକ୍ତ ହେଲେ ।

ମାହୁନ୍ତ ଓ ଧାତ୍ରୀ ହାତୀ ସହ ପଳାୟନ କଥା ଜୟନ୍ତୀ ଉପଲବ୍ଧି କରି ସାରିଥିଲେ ଓ କିଂକର୍ତ୍ତବ୍ୟ ବିମୂଢ଼ ହୋଇ ଦେବଦୂତ ପରି ସହାୟତା କରିଥିବା ଝାଙ୍କର ଓ ଝାଙ୍କରାଣୀଙ୍କର ସହ ନବଜାତ ପୁତ୍ରକୁ ଧରି ଡକଲା ଆସିବାକୁ ବାଧ ହୋଇଥିଲେ । ନିରାଶ୍ରୟା ଥିଲେ ସେ । ନିରୁପାୟ ହୋଇ ରାଜ ବ୍ୟଞ୍ଜନ ପରିବର୍ତ୍ତେ କୁଦୋଭାତ ଓ ମାଣ୍ଡିଆ ଜଉ ସହ କନ୍ଦମୂଳ ଆହାର କରିବାକୁ ବାଧହେଲେ । ଏକୋଇଶ ଦିନ କୌଣସି ପ୍ରକାରେ ଝାଙ୍କର ସମ୍ଭାଳି ନେଲା, କିନ୍ତୁ ରାଜ ଲକ୍ଷଣ ଦେଖି ଜୟନ୍ତୀକୁ ସମ୍ଭାଳିବା ଅସମ୍ଭବ ହେବ ମନେକରି ସେ ଅଞ୍ଚଳର ସବୁ ଗାଁର ଲୋକଙ୍କର ଏକ ବେହେରେନ କଲା । ବେହେରେନଟି ଆଧୁନିକ କଣ୍ଟାବାଞ୍ଜୀ ଠାରୁ ପାଞ୍ଚ କି.ମି. ଦୂରେ ଏକ ଟଟାଣ ଉପରେ ହୋଇଥିଲା ଏବଂ ସେହି ଅନୁସାରେ






ବର୍ତ୍ତମାନ ମଧ ଉକ୍ତ ସ୍ଥାନ ଓ ତା' ପାଖରେ ପରବର୍ତ୍ତୀ ସମୟରେ ବସିଥିବା ଗ୍ରାମର ନାମ ବେହେରେନ ସିଲେଟ ହୋଇଛି । ଉକ୍ତ ବେହେରନରେ ସ୍ଥିର ହେଲା ଯେ ଜୟନ୍ତୀକୁ ମୁଣ୍ଡ ମଲ୍ଲିକ ଚକ୍ରଧର ପାଣିଗ୍ରାହୀଙ୍କୁ ଅର୍ପଣ କରି ମାତା ପୁତ୍ରଙ୍କର ଭରଣ ପୋଷଣ ଦାୟିତ୍ୱ ଅର୍ପଣ କରାଯିବ ।

ଜୟନ୍ତୀକୁ ଯଥା ସମୟରେ ପାଣିଗ୍ରହୀ କୁ ଅର୍ପଣ କରାଗଲା । ପାଣିଗ୍ରାହୀ ନିଃସନ୍ତାନୀ ଥିଲେ ଓ ଜୟନ୍ତୀକୁ ନିଜର କନ୍ୟା ହିସାବରେ ଗ୍ରହଣ କରିବାକୁ ଅଙ୍ଗୀକାର କଲେ ।

ଏବଂ ସେହି ଦିନ ଠାରୁ ମାତାପୁତ୍ର ଉଭୟେ ଚକ୍ରଧର ପାଣିଗ୍ରହୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରହିଲେ । ପୁତ୍ରର ନାମ ରମାଇ ରଖାଗଲା । ରମାଇକୁ ସାତବର୍ଷ ହେଲା । ତାକୁ ଛେଳି ଜଗିବା କାର୍ଯ୍ୟରେ ନିୟୋଜିତ କରାଗଲା । କିନ୍ତୁ ପରେ ସ୍ୱୀୟ ଯୋଗ୍ୟତା ବଳରେ ସେ ମୁଣ୍ଡ ମଲ୍ଲିକଙ୍କ ର ଅଧିକ ଶ୍ରଦ୍ଧାଭାଜନ ହୋଇ ଶେଷରେ ପୌଷ୍ୟପୁତ୍ରର ମର୍ଯ୍ୟାଦା ପାଇଲେ । ଜୟନ୍ତୀ ରମାଇକୁ ଯୁଦ୍ଧବିଦ୍ୟା ଶିକ୍ଷା ଦେଉଥିଲେ ସମସ୍ତଙ୍କର ଅଲକ୍ଷ୍ୟରେ । ଥରେ ରମାଇ ଜମେଇଗଣ୍ଡଠାରୁ ଏକ ବିଚକ୍ଷଣ ଓ ଅଲୌକିକ ଶକ୍ତି ସମ୍ପନ୍ନ ଖଣ୍ଡା ଅକ୍ତିଆର କରି ଶେଷରେ ସେହି ଖଣ୍ଡା ବଳରେ ନିଜର ଭବିଷ୍ୟତ ଗଢିଥିଲେ ।

ଦିନେ ଶାବଳଭଙ୍ଗା ପାଣିଗ୍ରହୀଙ୍କର ପାଟଣାର ଶାସନ ପାଳି ପଡିଲା । କିନ୍ତୁ ପାଟଣା ରୁ ଘାଗୁର୍ଲି ପହଞ୍ଚିଲା ବେଳକୁ ସଂଧ୍ୟାରେ ପ୍ରବଳ ଜ୍ୱରରେ ପୀଡିତ ହେଲେ ଓ ଶେଯରୁ ଉଠି ପାରିଲେ ନାହିଁ । ଫଳରେ ଭୋର ସକାଳୁ ରମାଇକୁ ଡାକି ଦିନକ ପାଇଁ ରାଜକାର୍ଯ୍ୟ ପରିଚାଳନା କରିବାକୁ କହି ସୁନା ଲେମ୍ବୁ ଦେଲେ । ରମାଇ ସୁଯୋଗର ଅପେକ୍ଷାରେ ଥିଲେ । ଲେମ୍ବୁ ଧରି ଆସି ପ୍ରଥମେ ତାକୁ ସିଂହାସନରେ ବସାଇ ରାଜକାର୍ଯ୍ୟ ଆରମ୍ଭ କଲେ । ସର୍ବ ପ୍ରଥମେ ସେ କୌଶଳକ୍ରମେ ଆଦେଶ ଦେଇ ଛଅଜଣ ମଲ୍ଲିକଙ୍କର ଶିରଛେଦ କଲେ ଓ ଲେମ୍ବୁ ବଦଳରେ ନିଜେ ସିଂହାସନରେ ବସିବାକୁ ଉଦ୍ୟତ ହେଲାରୁ କଟାମୁଣ୍ଡମାନେ ଚାଛଲ୍ୟ କଲେ ଓ କହିଲେ ମୁଣ୍ଡ ମଲ୍ଲିକଙ୍କର ଶିରଛେଦ କରି ସେମାନଙ୍କ ମଧରେ ଦେବାପାଇଁ । ପରିଶେଷରେ ରମାଇ ଚକ୍ରଧର ପାଣିଗ୍ରାହୀଙ୍କ ନାମରେ ଏକ ମେଣ୍ଢାକୁ ବଳିଦେଇ



ମେଣ୍ଢାମୁଣ୍ଡକୁ ଉକ୍ତ ମୁଣ୍ଡମାନଙ୍କ ସହ ମିଶାଇବାରୁ ସେମାନେ ଶାନ୍ତ ହେଲେ । ପରେ ଜାନୁ, ମୁଣ୍ଡ, ଗଣ୍ଡି ଓ ବାହୁକୁ ସ୍ୱତନ୍ତ୍ର ଭାବେ ଅଲଗା କରି ବିଭିନ୍ନ ସ୍ଥାନରେ ପୋତାଇଲେ ଓ ଜାନୁ ପୋତା ସ୍ଥାନରେ ସିଂହାସନ ସ୍ଥାପନ କରି ରାଜକାର୍ଯ୍ୟ ପରିଚାଳନା କଲେ ।

ଏବଂ ରମାଇ ଦେଓ ସହିଦିନ ଠାରୁ ହେଲେ ପାଟଣା ଚୌହାନ ବଂଶର ପ୍ରଥମ ରାଜା ଓ ଏଠାରେ ଭାରତ ସ୍ୱାଧୀନ ହେବା ପର୍ଯ୍ୟନ୍ତ ଚୌହାନ ବଂଶର ରାଜତ୍ୱ ଚାଲିଥିଲା ।

ରମାଇ ଦେଓଙ୍କ ପିତା ହମିର ଦେଓ ଯେଉଁ ସ୍ଥାନରେ ସନ୍ୟାସୀ ପରି ଚପରଚ୍ନା କରିଥିଲେ, ସେହି ସ୍ଥାନରେ ତାଙ୍କୁ ବୁଢ଼ାରଜା ଦେବତା ରୂପେ ଏପର୍ଯ୍ୟନ୍ତ ପୂଜା ଦେଇ ଆସୁଛନ୍ତି ।





# ରମାଇ ଦେଓ ଏବଂ ରାଜତନ୍ତ୍ର ପ୍ରତିଷ୍ଠା

ଅଷ୍ଟ ମଲ୍ଲିକଙ୍କୁ ହତ୍ୟା କରି ତାଙ୍କ ଅଙ୍ଗ ପ୍ରତ୍ୟଙ୍ଗକୁ ବିଭିନ୍ନ ସ୍ଥାନରେ କବର ଦେବା ପରେ ଜାନୁକ ଉପରେ ରମାଇ ଦେଓ ସିଂହାସନ ସ୍ଥାପନ କଲେ ଏବଂ ସେହିଦିନ ଠାରୁ ପାଟଣାରାଜ୍ୟରେ ଥିବା ଦୋଦୁଲ୍ୟମାନ ମଲ୍ଲିକ ଶାସନର ଅବସାନ ହେଲା । ତଥାକଥିତ ଗଣତନ୍ତ୍ର ଶାସନର ଅବସାନ ଘଟିଲା ପରେ ଯେହେତୁ ଅଷ୍ଟ ମଲ୍ଲିକ ନିଜର ପ୍ରଭାବ ଓ ବାହୁବଳରେ ରାଜ୍ୟ ଶାସନର ସୁଯୋଗ ପାଇଥିଲେ, ସେମାନେ ଜନ ପ୍ରତିନିଧି ନ ଥିଲେ କିମ୍ବା ପ୍ରଜାଙ୍କର ହିତ ପାଇଁ ସୀମିତ ଓ ଅନିଶ୍ଚିତ ଲଟେରୀ ମାଧମର ଶାସନରେ ଏମାନେ କୌଣସି ପ୍ରଜା ରଂଜନ ମୂଳକ କାର୍ଯ୍ୟ କରି ପାରୁ ନଥିଲେ, ରମାଇ ଦେଓ ଏହି ପ୍ରକାର ଶାସନର ଅବସାନ ପାଇଁ ସମୟ ଓ ସୁଯୋଗ ମଧ୍ୟ ଖୋଜୁଥିଲେ ବୋଧହୁଏ ।

ଅଷ୍ଟ ମଲ୍ଲିକଙ୍କର ଶାସନରେ ପ୍ରଜାକୁଳ ଅତିଷ୍ଠପ୍ରାୟ ଥିଲେ । ତେଣୁ ତତ୍କାଳିନ ପାଟଣା ରାଜ୍ୟ ଜଣେ ଉତ୍ତମ ରାଜାର ଅନ୍ୱେଷଣରେ ଥିଲାବୋଲି କୋଶଳ ଇତିହାସରୁ ଜଣାଯାଏ; କାରଣ ରମାଇ ଦେଓ କୁ ରାଜା କରିବା ପାଇଁ ପାଟଣା ନାଗରିକ ବୃନ୍ଦ ତୋରଣ ସଜ୍ଜାରେ ସ୍ୱାଗତର ଆୟୋଜନ କରିଥିବାର ଉଲ୍ଲେଖ ଅଛି ମଧ୍ୟ। ଆଗରୁ ପାଟଣା ରାଜ୍ୟରେ ଗଡ କୁ ଲାଗି ଏକ ଗଣ୍ଡାରର ଦୌରାତ୍ମ୍ୟ ଥିଲା ଓ ତାକୁ ମାରିବାକୁ ଅନେକ ସୈନ୍ୟ ଏପରିକି ସେନାପତି ଏବଂ ଏହି ଅଷ୍ଟ ମଲ୍ଲିକ ବିଫଳ ହୋଇ ସାରିଥିଲେ । ତେଣୁ ସେହି ଗଣ୍ଡାରକୁ ରମାଇ ଦେଓ ଯେତେବେଳେ କୌଶଳ କ୍ରମେ ହାଣି ଦେଇଥିଲେ, ପାଟଣାର ପ୍ରଜାକୁଳ ଶୂନ୍ୟଥିବା ସିଂହାସନରେ ଯୁବକ ରମାଇକୁ ବସାଇବାକୁ ଚାହୁଁଥିବା କଥା କୋଶଳ ଇତିହାସରୁ ସୂଚନା ମଧ୍ୟ ମିଳେ । ତେଣୁ ଇମାଇ ରାଜା ହେବା ପରେ ପାଟଣା ପ୍ରଜା ନୂତନ ପୁଣି ଉପସିତ ପ୍ରିୟ ରାଜାଙ୍କୁ ସ୍ୱାଗତ କରିବା ସ୍ୱାଭାବିକ ଥିଲା ।

ଜଙ୍ଗଲ ପରିବେଷ୍ଟିତ କୁଆଁରୀ ପାଟଣାରେ ଭାରତର ଶେଷ ସ୍ୱାଧିନ ହିନ୍ଦୁ ସମ୍ରାଟଙ୍କର ନାତି ରମାଇ ଦେଓ ରାଜା ହୋଇଥିବା ଆଖ୍ୟାୟିକା ବାସି ହୋଇ



ସାରିଥିବା ହେତୁ ଇତିହାସ ଏହାକୁ ସ୍ୱୀକାର କରୁ ବା ନ କରୁ ପାଟଣାର ଜନ
ଚୌହାନ ପୃଥ୍ୱୀରାଜଙ୍କର ଦାୟାଦର ଅବଶ୍ୟ ସ୍ୱୀକାର କରେ । ସେହି ମହା
ଆଖ୍ୟାୟିକା ପୁରୁଷ (ଐତିହାସିକ ପୁରୁଷ ?) ପାଟଣାରେ ସୁଶାସନ ଦେଇ
ମାଟିରୁ ବୀର ମାଟିର ମର୍ଯ୍ୟାଦା ଦେବାରେ ସଫଳ କାମ ହୋଇଥିଲେ । ରମାଇ
ଦେଓଙ୍କର ବାହୁ ଛାୟା ତଳେ ପାଟଣା ମାଟିର ପ୍ରଜାକୁଳ ଏତିକି ଆଶ୍ୱସ୍ତ ଥିଲେ
ଯେ ତାଙ୍କର ରାଜା ଜଣେ ବୀରପୁରୁଷ ଓ ସେ ଚମତ୍କାର ସୃଷ୍ଟି କରି ପାରିଥିବା ଯୁଗ
ପୁରୁଷ ବୋଲି ଗର୍ବିତ ଥିଲେ । ରମାଇ ଖଣ୍ଡା (ଦମାଇଖଣ୍ଡା) ଉପରେ ରମାଇ
ଦେଓ ସଂପୂର୍ଣ୍ଣ ଭରସା କରି ପାଟଣା ସୀମାକୁ ବୃଦ୍ଧି କରିବାର ମନସ୍ଥ ମଧ୍ୟ କଲେ ।
ରମାଇ ରାଜା ହେବା ସଙ୍ଗେ ସଙ୍ଗେ ରାଜ୍ୟରେ ଥିବା ସମସ୍ତ ଉମ୍ରା ଓ ଜମିଦାରଙ୍କୁ
ଶାସନକାର୍ଯ୍ୟରେ ସାହାଯ୍ୟ ଓ ସହଯୋଗ କରିବାକୁ ନିମନ୍ତ୍ରଣ କଲେ, କିନ୍ତୁ କେତେ
ଜଣ ଉମ୍ରା ଓ ଜମିଦାର ରମାଇକୁ ବାଳକ ରାଜା ଭାବି ନିଜେ ବାଚାଳତା କଲେ
ଏବଂ ବେଖାତିରି ମନୋଭାବ ପୋଷଣ ପୂର୍ବକ ଆସିଲେ ନାହିଁ । ନିମନ୍ତ୍ରଣ ରକ୍ଷା
ନ ହେବାରୁ ରମାଇ ଅତ୍ୟନ୍ତ କ୍ଷୁବଧ ହୋଇ ଉକ୍ତ ଉମ୍ରା ଓ ଜମିଦାରଙ୍କ ସହ ଯୁଦ୍ଧ
କରି ଅକ୍ଳେଶରେ ସେମାନଙ୍କୁ ଦମନ କରି ତାଙ୍କର ବଶ କରାଇଲେ ।

ଅଷ୍ଟ ମଲ୍ଲିକଙ୍କର ବଧ ଓ କେତେ ଜଣ ଉମ୍ରା ଏବଂ ଜମିଦାରଙ୍କୁ ଦମନ କଲା ପରେ ରମାଇ ଦେଓ ପାଟଣା ରାଜ୍ୟର ସୀମାକୁ ବୃଦ୍ଧି କରିବାକୁ ମନସ୍ଥ କଲେ । ତେଣୁ ସର୍ବ ପ୍ରଥମେ ସୀମାର ନିକଟବର୍ତ୍ତୀ ରାଜ୍ୟ (ପଡୋଶୀ ରାଜ୍ୟ) ବୌଦ୍ଧକୁ ଆକ୍ରମଣ କରି ରାଜାଙ୍କୁ ପରାସ୍ତ କଲେ ଓ ପରେ ବୌଦ୍ଧରାଜା ପାଟଣାର ଅଧୀନତା ସ୍ୱୀକାର କରି କରଦ ରାଜ୍ୟ ହୋଇ ଏହାର ଅଂଶ ବିଶେଷ ହୋଇ ରହିଲା । ପରେ ସେ ବଡମ୍ବା, ବାମଣ୍ଡା, ନରସିଂହପୁର ଆଦି ରାଜ୍ୟ ଜୟ କଲାପରେ ଢେଙ୍କାନାଳକୁ ଆକ୍ରମଣ କଲେ ଓ ଜୟ କଲେ ।

ଯୁଦ୍ଧରେ କ୍ଳାନ୍ତ ହୋଇପଡି ଥିବା ରମାଇ ଦେଓ ଜଗନ୍ନାଥଙ୍କ ଦର୍ଶନ ଅଭିପ୍ରାୟରେ ଶ୍ରୀକ୍ଷେତ୍ର ଗମନ କଲେ । ପୁରୀରେ ସେତେବେଳେ ରାଜରାଜେଶ୍ୱର ଦେବ ଗଜପତି ଥିଲେ । ସେ ରମାଇ ଦେଓଙ୍କର ବୀରତ୍ୱ ଗାଥା ଶୁଣି ସାରିଥିଲେ ଓ ତାଙ୍କୁ ସସମ୍ମାନେ ସ୍ୱାଗତ କଲେ । ରମାଇ ରାଜ ଅତିଥି ହୋଇ ମଧ୍ୟ ରାଜ ଉଆସରେ ନରହି ଶ୍ରୀମନ୍ଦିର ମଧ୍ୟରେ ରହିବାକୁ ଇଚ୍ଛାକଲେ । ଦିନେ ରମାଇ



ମୁକ୍ତିମଣ୍ଡପରେ ଶୋଇଥିବା ବେଳେ ପୁରୀ ରାଜମାତା ଜଗନ୍ନାଥ ଦର୍ଶନରୁ ଫେରୁଥିଲେ । ସେ ରମାଇଙ୍କଠାରେ ଶଙ୍ଖ-ଚକ୍ର-ଗଦା-ପଦ୍ମରେ ମଣ୍ଡିତ ପୁରୁଷୋତ୍ତମଙ୍କର ରୂପ ଦର୍ଶନ କଲେ । ଏକଥା ଆସି ନିଜ ପୁତ୍ର ପୁରୀ ରାଜାଙ୍କୁ କହିଲାରୁ ସେ ତା' ପରଦିନ ମୁକ୍ତି ମଣ୍ଡପରେ ଯାଇ ଶୋଇଥିଲେ । ଗଜପତିଙ୍କୁ ମଧ ରାଜମାତା ଏହି ରୂପରେ ଦେଖିଥିଲେ । ତେଣୁ ଗଜପତି ଓ ରମାଇ ଉଭୟେ ବିଷ୍ଣୁ ଅଂଶରେ ଜନ୍ମ ବୋଲି ସେ ଘୋଷଣା କରି ବନ୍ଧୁ ସୂତ୍ରରେ ଆବଦ୍ଧ ହେବାକୁ ପ୍ରବର୍ତ୍ତାଇ ଥିଲେ ।

ପୁରୀରେ ଅବସ୍ଥାନ ସମୟରେ ରମାଇ ଦେଓଙ୍କୁ ଗଜପତି ଅନ୍ତଃପୁର ମଧକୁ ନିମନ୍ତ୍ରଣ କଲେ । ଏକ ନିଭୃତ କକ୍ଷରେ ଉଭୟେ ହସ ଖୁସିରେ ବ୍ୟସ୍ତ ଥିବା ବେଳେ ରମାଇଙ୍କର କ୍ଷତ୍ରିୟତ୍ୱକୁ ପରଖିବା ପାଇଁ ଗଜପତି ଆକ୍ରମଣର ଅଭିନୟ କଲେ । ରମାଇ ହଠାତ୍ ନିଜ ଦେହରେ ଲୁଚାଇଥିବା ଖଣ୍ଡା ବାହାର କରି ପ୍ରଦର୍ଶନ କଲାରୁ ଗଜପତି ଅତ୍ୟନ୍ତ ପ୍ରିତ ହୋଇ ତାଙ୍କର ଭାଇଙ୍କର ଝିଅକୁ ବିବାହ ଦେବାକୁ ପ୍ରସ୍ତାବ ଦେଲେ । ରମାଇ ଏଥିରେ ସମ୍ମତି ଜଣାଇଲେ ଓ ସେ ସର୍ତ୍ତ ରଖିଲେ ଯେ ପୁରୀ ଓ ପାଟଣାର ମଧବର୍ତ୍ତୀ ସୀମା ଦଶପଲ୍ଲା ନିକଟବର୍ତ୍ତୀ ସ୍ଥାନରେ ଏକ ଛାମୁଣ୍ଡିଆ କରି ବିବାହ କାର୍ଯ୍ୟ ସଂପନ୍ନ କରାଯିବ । କାର୍ଯ୍ୟସୂଚୀ ଅନୁସାରେ ବିବାହ ସେଠାରେ ସମ୍ପନ୍ନ ହେବା ହେତୁ ଉକ୍ତ ସ୍ଥାନର ନାମ (ଗ୍ରାମର) ଏବେ ମଧ ଛାମୁଣ୍ଡିଆ ହୋଇ ରହିଛି ।

ପାଟଣା ରାଜ୍ୟ କୋଶଳର ଏକ ଅଂଶ ବିଶେଷ ଥିଲା ଏବଂ ଏହାର ନାମ ଥିଲା କାମାନ୍ତପୁର । ଏହା ତୋଷଳା ଓ ପାଟଣାକୁ ନେଇ ଗଠିତ ଥିଲା । ଏହାର ଅଧିନସ୍ଥ ରାଜାଥିଲେ ସୁବର୍ଣ୍ଣପୁର, ବୌଦ୍ଧ, ସେମେଲେଇପୁର (ସମ୍ବଲପୁର), ବେନ୍ଦ୍ରା, ଖଡିଆଲ, ନୂଆଁଗଡ, ଛତିଶଗଡର କିଛି ଅଂଶ, ଛୋଟନାଗପୁରର କିଛି ଅଂଶ, ବାମଣ୍ଡା, ବଡମ୍ବା, ନରସିଂହପୁର, ଢେଙ୍କାନାଳ, ବୁଢାସମ୍ବର ଆଦି । ଅନ୍ୟଏକ ଦୁର୍ଗକୁ ପିତଳଗଡ କହୁଥିଲେ କାରଣ ଏହା ତିନି ମହଲା(ତଳ) ବିଶିଷ୍ଟ ଥିଲା । ପରବର୍ତ୍ତୀ କାଳରେ ଏହା ଟିଟିଲାଗଡ ହେଲା । ତେଣୁ ପାଟଣାରସୀମା ଏକ ବିଶାଳ ଭୂଖଣ୍ଡ ଥିଲା ବୋଲି କୋଶଳ ଇତିହାସ କହେ ।



ସେହିପରି ସେତେବେଳେ ପାଟଣା ଦୁର୍ଗ ମଧ୍ୟ ଅଭେଦ୍ୟ ଥିଲା । ପାଟଣା ଦୁର୍ଗକୁ ଗଡ ମଧ୍ୟ କହୁଥିଲେ ବୋଲି ଏହାକୁ ପାଟଣାଗଡ କୁହାଗଲା । ପାଟଣା ଶବ୍ଦର ଅର୍ଥ ରାଜଧାନୀ । ଏହି ବିଶାଳ ଭୂଖଣ୍ଡ ଅନେକ ଛୋଟ ଛୋଟ ରାଜ୍ୟରେ ବିଭକ୍ତ ହୋଇ ଏହାର କେନ୍ଦ୍ରୀୟ ରାଜଧାନୀ କାମାନ୍ତପୁର ରେ ଥିବାରୁ ଏହାର ନାମ ପାଟଣା ଓ ଗଡ ଥିବାରୁ ପାଟଣାଗଡ ହେଲା ।

ପାଟଣାଗଡ ଦୁର୍ଗଟି ଅଭେଦ୍ୟ ଥିଲା । ଦୁର୍ଗ ମଧ୍ୟକୁ ପ୍ରବେଶ କରିବା ପୂର୍ବରୁ ୩ଟି ସ୍ଥାନରେ ଜଳ ଓ ୨ ଟି ସ୍ଥାନରେ କଟଙ୍ଗ ବାଉଁଶର ପ୍ରତିବନ୍ଧକ ଅତିକ୍ରମ କରିବାକୁ ହେଉଥିଲା ।

ଗଡର ଚତୁର୍ଦ୍ଦିଗରେ ଖାଇଥିଲା ଓ ଏହା ଜଳପୂର୍ଣ୍ଣ ଥିଲା । ଏହାର ଉଭୟ ପାର୍ଶ୍ୱରେ କଟଙ୍ଗ ବାଉଁଶର ବଣଥିଲା । ଖାଇ ଅପର ପାର୍ଶ୍ୱସ୍ଥ କଟଙ୍ଗ ବଣକୁ ପାର ହେଲେ ଗଡର କାନ୍ଥ ଓ କାନ୍ଥ ଦେହରେ କଟଙ୍ଗ ବଣ ପଡୁଥିଲା । ଏହା ସଘନ ଥିଲା ଓ ପିମ୍ପୁଡି ମଧ୍ୟ ଗଳି ଆସି ପାରୁ ନଥିଲା । ପୁଣି କାନ୍ଥ ପରେ ଜଳାଶୟ ଜଳାଶୟର ଉଭୟ ପାର୍ଶ୍ୱରେ କଟଙ୍ଗ ବାଉଁଶ । ଏହାପରେ ଦୁଇଟି ବିରାଟ ଦ୍ୱାର ଓ ସଥିରେ ଥିବା ବିରାଟ କବାଟ । ସୁତରାଂ ଅଭେଦ୍ୟ ପାଟଣାଦୁର୍ଗକୁ ପ୍ରବେଶ କରିବା ଅତ୍ୟନ୍ତ କଷ୍ଟ ସାଧ୍ୟ ଥିଲା ।

ଦୁର୍ଗ ମଧ୍ୟରେ ୪ଟି ଦ୍ୱାର ଥିଲା । ପୂର୍ବରେ ସୋନପୁର ଦ୍ୱାର, ଦକ୍ଷିଣରେ ସିଂହଦ୍ୱାର, ଉତ୍ତରରେ ଘସିଏନ ଦ୍ୱାର ଓ ପଶ୍ଚିମରେ ଚୁର୍ଣ୍ଣଦ୍ୱାର । ଚୂର୍ଣ୍ଣଦ୍ୱାର ଦେଇ ପ୍ରବେଶ କରୁଥିବା ବ୍ୟକ୍ତିର ଶିର ଛେଦ କରାଯାଉଥିଲା ବୋଲି ଆଜିବି ପ୍ରଜା କହେ ।

ରାଜାଙ୍କ ପାଇକ ଉପରେ ଅମାପ ବିଶ୍ୱାସ ଥାଏ । ଦଶହରା ବେଳେ ରାଜା ୩୬,୦୦୦ ପାଇକ ଗହଣରେ ମନ୍ଦିର ଦର୍ଶନ କରି ଆସୁଥିଲେ ବୋଲି କୁହାଯାଇଛି ଯାହାକି ଅବିଶ୍ୱାସନୀୟ ହେଲେ ମଧ୍ୟ ଅସଂଖ୍ୟ ପାଇକଙ୍କବସ୍ତୀକୁ ଦେଖି ଅବିଶ୍ୱାସ କରିହୁଏ ନାହିଁ । ପାଇକଙ୍କ ସେନାପତିଙ୍କୁ ବୁଡେକ କହୁଥିଲେ ଓ ବୁଡେକ ବିଶାଳ ପାଇକ ସମାବେଶର ନେତୃତ୍ୱ ନେଇ ରାଜାଙ୍କୁ ଦେବୀ ଦର୍ଶନ କରାଉଥିଲେ ।



ସୁତରାଂ ରମାଇ ଦେଓ ଏକ ସୁସ୍ଥ ରାଜତନ୍ତ୍ର ପ୍ରତିଷ୍ଠା କରି ତଥା କଥିତ ଅଷ୍ଟ ମଲ୍ଲିକଙ୍କର ସୁବିଧାବାଦୀ ଗଣତନ୍ତ୍ରର ଯବନିକା ପତନ ଘଟାଇବାର କାରଣ ହୋଇ ଐତିହାସିକ ପୁରୁଷ ?) ଭାବେ ଚୌହାନ ବଂଶର ପ୍ରତିଷ୍ଠାତା ଭାବେ ଏପରି ଭାବେ ଅଭ୍ରାନ୍ତ ହୋଇ ପାରିଥିଲେ ବୋଲି କହିବା ବାହୁଲ୍ୟ ହେବ । ତେଣୁ ପାଟଣାର ବିଧିବଦ୍ଧ ଇତିହାସ ରମାଇ ଦେଓଙ୍କ ଠାରୁ ଆରମ୍ଭ ହୁଏ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ରମାଇ ଦେଓଙ୍କର ବୀରତ୍ୱ ଓ ଚତୁରଣକୁ ଲକ୍ଷ୍ୟ କଲେ ସେ ଯେ ଭାରତର ଶେଷ ହିନ୍ଦୁ ସମ୍ରାଟ ପୃଥ୍ୱୀରାଜ ଚୌହାନଙ୍କର ନାତି ହୋଇଥିବାର କିମ୍ବଦନ୍ତୀକୁ ଅସ୍ୱୀକାର କରାଯିବାର କେତେଦୂର ଯୁକ୍ତି ସଙ୍ଗତ ହେବ, କିଏ କହିବ ? ତେଣୁ ରମାଇ ଦେଓ ଚୌହାନ ବଂଶର ପ୍ରତିଷ୍ଠା କରି ପାଟଣା ରାଜ୍ୟକୁ ଏକ ସ୍ଥାୟୀ ରାଜବଂଶର ଶାସନ ସ୍ୱାଧୀନତା ପର୍ଯ୍ୟନ୍ତ ଦେଇ ପାରିଥିବା କଥା ଅନସ୍ୱୀକାର୍ଯ୍ୟ ଅବଶ୍ୟ ।









# ବଏଲ

ମଧ୍ୟାହ୍ନ ! ଆଶ୍ୱିନ ଶୁକ୍ଳ ଅଷ୍ଟମୀ ତିଥି । ମେଘମାଳା ସୁଉଚ୍ଚରେ ମୁକ୍ତ ବିଚରଣ କରୁଥାନ୍ତି । ବର୍ଷାର ସମ୍ଭାବନା ନଥିଲେ ମଧ୍ୟ ଦୁର୍ଗାମେଘିଆ ବର୍ଷାକୁ ଏଡାଇ ଦିଆଯାଇ ପାରୁ ନ ଥାଏ । ନିର୍ଦ୍ଦିଷ୍ଟ ଗଣ୍ଡାରର ଶିକାର ନ ପାଇ କୋଶଳ ନରେଶ ମାଧବ ଚନ୍ଦ୍ରଦେବ ବୁଠି କୁଢେଇ ବନ ମଧ୍ୟସ୍ଥ ଏକ ବିରାଟ ଆମ୍ବ ଛାୟାରେ ହତାଶାରେ ଆକାଶରୁ ନିଜର ବିଫଳତାକୁ ଖୋଜୁଥିଲେ । ତାଙ୍କର ସଫଳତାକୁ ମେଞ୍ଚା ମେଞ୍ଚା ମେଘମାଳା ସତେକି ବିଦ୍ରୂପ କରୁଥିବା ପରି ସେ ମନେ କରୁଥିଲେ ସେ ।

ହଠାତ୍ ଶୂନ୍ୟବାଣୀ ଉଦ୍‌ଭାସି ଉଠିଲା । ଚକିତ ହୋଇ ଉଠିଲେ କୋଶଳ ନରେଶ ମାଧବଚନ୍ଦ୍ର ଦେବ । ବନଦୁର୍ଗା ରାଜାଙ୍କୁ କୋଶଳର ରାଜଧାନୀ ପତ୍ତନଗଡର ଅଧିଷ୍ଠାତ୍ରୀ ଦେବୀ ହେବାର ଆଗ୍ରହ ରଖୁଥିଲେ । ମାଧବଚନ୍ଦ୍ର ଦେବ ପରମ ସନ୍ତୁଷ୍ଟିରେ ମାଁ ବନଦୁର୍ଗାଙ୍କର ଆଦେଶକୁ ଶିରୋଧାର୍ଯ୍ୟ କଲେ, ସ୍ୱୀକାର କଲେ ।

ରାଜାଙ୍କ ଉପରେ ଦେବୀଙ୍କର ସର୍ତ୍ତ ଆରୋପିତ ହେଲା – ବଗୁଆ ଦେହରେ ବିଜେକରି ବର୍ଷକୁ ଥରେ ସେହି ଆଶ୍ୱିନ ଶୁକ୍ଳ ନବମୀ ତିଥିରେ ହିଁ କୋଶଳର ରାଜଧାନୀରେ ସର୍ବସାଧାରଣରେ ଦେଖା ଦେବେ, ପ୍ରଜାଙ୍କର ଦୁଃଖ ମୋଚନ କରିବେ ଏବଂ ଅନ୍ୟ ସମୟ ମାନଙ୍କରେ ସେହି ବୁଠି କୁଢେଇ ବନ ମଧ୍ୟରେ ଧାଡିରେ ଥିବା ସାହାଡା ବୃକ୍ଷଠାରେ ହିଁ ପୂଜା ପାଇବେ ।

ଘର୍ମାକ୍ତ ରାଜ ଶରୀର ପୁଲକି ଉଠିଲା । ରାଜା ମା ବନଦୁର୍ଗାଙ୍କୁ ଆମନ୍ତ୍ରଣ କଲେ ଏବଂ ଦେବୀ ଅଙ୍ଗୀକାର କରି ଅନ୍ତର୍ଦ୍ଧାନ ହେଲେ ।

ଏବଂ–

ସେହି ଦିନରୁ ଦ୍ୱାଦଶ ଖ୍ରୀଷ୍ଟାବ୍ଦୀ ପର୍ଯ୍ୟନ୍ତ ଏହି ପରଂପରା ଚାଲି ଆସୁଥାଏ । ଦେବୀ ପ୍ରତିବର୍ଷରେ ଏହି ଦିବସରେ ବୁଠି କୁଢେଇ ବନ ମଧ୍ୟରୁ ବଗୁଆ ଦେହରେ



ବିଜେ କରି ନାଚି ନାଚି ପଉନଗଡ (ପାଟଣାଗଡ) ପର୍ଯ୍ୟନ୍ତ ଆସି ଦର୍ଶନ ହେଲା ପରେ ପୁନଃ ପ୍ରତ୍ୟାବର୍ତ୍ତନ କରୁଥିଲେ । ଦେବୀ ବରୁଆ ଦେହରେ ବିଜେ କରି ସର୍ବସାଧାରଣର ଦୁଃଖ ଦୁର୍ଦ୍ଦଶା ବୁଝିବା ପରଂପରାକୁ ହିଁ ବଏଲ କୁହାଯାଇ ଆସୁଅଛି ।

ମାଁ ବନଦୁର୍ଗାଙ୍କୁ ପଉନେଶ୍ୱରୀର ମର୍ଯ୍ୟାଦା ଦିଆଗଲା । ପରବର୍ତ୍ତୀ ସମୟରେ ସେହି ମାଁ ବନଦୁର୍ଗାଙ୍କଠାରେ ପଉନେଶ୍ୱରୀ ରହି ହୋଇଗଲା ଏବଂ ସେହିଁ ପଉନେଶ୍ୱରୀ ବୋଲାଇଲେ ।

ମାଁ ପଉନେଶ୍ୱରୀ ସର୍ବଦା ଦକ୍ଷିଣ ମୁହାଁ ହୋଇ ରହିଲେ । ତାଙ୍କୁ କୋଶଳରେ ଦକ୍ଷିଣ କାଳୀ ରୂପରେ ପୂଜା କଲେ । ସେ ମାଁ ଦକ୍ଷିଣ କାଳୀ ହେଲେ ।

ପରବର୍ତ୍ତୀ ସମୟ ମାନଙ୍କରେ ପଉନଗଡର ନାମ ଅପଭ୍ରଂଶିତ ହୋଇ ପାଟଣାଗଡ ହେଲା ଏବଂ ସେହି ଅନୁସାରେ ମାଁ ପଉନେଶ୍ୱରୀ ହିଁ ପାଟଣେଶ୍ୱରୀ ରୂପେ ସ୍ୱୀକୃତା ହେଲେ । ଷୋଡଷ ଶତାବ୍ଦୀରେ ସେମେଲେଇଗଡ ବା ସେମେଲେଇପୁର ବା ସମ୍ବଲପୁରର ଅଧିଷ୍ଠାତ୍ରୀ ଦେବୀ ରୂପେ ମାଁ ସେମେଲେଇ ବା ସମଲେଇ ସ୍ୱୀକୃତା ହେଲେ ପାଟଣାଗଡ ନେରଶ ନରସିଂ ଦେବଙ୍କ ସାନ ଭାଇ ସମ୍ବଲପୁର ର ରାଜା ବଳରାମ ଦେଓଙ୍କ ଦ୍ୱାରା । ଯେହେତୁ ଭାଇ ଭାଇ ମଧରେ ଅତୁଟ ସ୍ନେହ ଥିଲା, ବଳରାମ ଦେଓଙ୍କ ଇଷ୍ଟଦେବୀ ମାଁ ସମଲେଇଙ୍କୁ ପାଟଣାରେ ମଧ ପୂଜା ଦିଆଗଲା ଏବଂ ପାଟଣା ନରେଶ ନରସିଂହ ଦେବଙ୍କ ଅନୁମତି କ୍ରମେ ସମ୍ବଲପୁରରେ ମାଁ ପାଟଣେଶ୍ୱରୀଙ୍କୁ ନେଇ ବଳରାମ ଦେବ ପୂଜା କଲେ । ମାଁ ସମଲେଇ ଦେବୀ ଅନ୍ନପୂର୍ଣ୍ଣାର ପ୍ରତୀକ ମନେ କରାଗଲା ।

ପାଟଣାଗଡରେ ତତ୍କାଳିନ ପାଟଣା ନରେଶ ଅନନ୍ତ ବର୍ମାଙ୍କ ରାଜତ୍ୱ ସମୟକୁ ବଏଲର ପରଂପରା ଗଙ୍ଗ ବଂଶୀୟ ରାଜ ପରିବାରର ପୂଜାରୀ ମାନଙ୍କ ଦ୍ୱାରା ଖ୍ରୀଷ୍ଟୀୟ ୧୧୧୧ ସମୟରୁ ହୋଇ ଆସୁଥିବାର ୰ ରାମଚନ୍ଦ୍ର ମଲ୍ଲିକଙ୍କ ଇତିହାସରୁ ଜଣାଯାଏ । ବଏଲରେ ପ୍ରଥମେ କେବଳ ପାଟଣେଶ୍ୱରୀଙ୍କର ଆଗମନ ହୋଇ ଆସୁଥିଲେ ମଧ ପରବର୍ତ୍ତୀ ସମୟ ମାନଙ୍କରେ ମାଁ ସମଲେଇ ଏବଂ ମାଁ ଡଙ୍ଗେଇ ଙ୍କୁ ସମ୍ମିଳିତ କରାଯାଇ ଥିଲା । ଏହି ଦେବୀ ଦ୍ୱୟଙ୍କୁ କେବେ ସମ୍ମିଳିତ କରାଯାଇଥିଲା, ତା'ର ନିର୍ଦ୍ଦିଷ୍ଟ ସମୟସୀମାର କିମ୍ବଦନ୍ତୀ କିମ୍ବା ପ୍ରମାଣ ନଥିଲେ



ମଧ୍ୟ ପାଟଣେଶ୍ୱରୀଙ୍କର ଅନୁଗମନକାରିଣୀ ଦେବୀ ହିସାବରେ ଏମାନଙ୍କୁ ସମ୍ମିଳିତ ଦେଖି ପାଟଣାଗଡ ବାସୀ ଦେବୀ ଦର୍ଶନ ଜନିତ ଆନନ୍ଦରେ କୃତ୍ୟକୃତ୍ୟ ହୋଇ ଆସୁଥିବାର ସୁଦୂର ପରଂପରା ଅଦ୍ୟାବିଧି ବିଦ୍ୟମାନ। ଗଡମଧ୍ୟରେ ଏ ଯାବତ୍ ପୂର୍ବ ପରଂପରାର ଆଧାରରେ ବଏଲ ଯାତ୍ରା ହୋଇ ଆସୁଥିବାରୁ ହଜାର ହଜାର ଶ୍ରଦ୍ଧାଳୁ ଭକ୍ତ ରାତ୍ରି ଉଜାଗର ରହି ଦେବୀ କୃପା ଲାଭ କରିବାକୁ ସତତ ଚେଷ୍ଟା କରୁଥିବାର ଲକ୍ଷ୍ୟ କରାଯାଇ ଥାଏ । ତେଣୁ ଏହି ବଏଲ ଯାତ୍ରାର ବିବିଧ ବିଧି ବିଧାନ ଅବଶ୍ୟ ଜ୍ଞାତବ୍ୟ ଅଟେ ।

## ବଏଲ୍ ଯାତ୍ରାର ପୂର୍ବ ପ୍ରସ୍ତୁତି -

ପାଟଣାଗଡ ରାଜ୍ୟରେ ପରବର୍ତ୍ତୀ ସମୟରେ ଅନେକ ରାଜ ବଂଶର ଶାସନ ପ୍ରତିଷ୍ଠିତ ହୋଇଥିଲେ ମଧ୍ୟ ବଏଲ୍ ଯାତ୍ରାର ପରମ୍ପରା ଅକ୍ଷୁର୍ଣ୍ଣ ଥାଏ । ୰ରାମଚନ୍ଦ୍ର ମଲ୍ଲିକଙ୍କ ଅନୁସାରେ ଦକ୍ଷିଣାତ୍ୟରୁ ଆସି କ୍ଷତ୍ରୀୟ ଗଙ୍ଗବଂଶର ପୂଜାରୀମାନେ ପାଟଣେଶ୍ୱରୀଙ୍କୁ ଖ୍ରୀଷ୍ଟୀୟ ୧୧୧୧ରୁ ଅଦ୍ୟାବଧି ସେବା ପୂଜାର ଭାର ବଂଶାନୁକ୍ରମେ ନେଇ ଆସୁଛନ୍ତି । କିନ୍ତୁ ରାଜା ଅନନ୍ତବର୍ମାଙ୍କ ଅମଳରୁ ଏଠାରେ କୁଆଁରୀ ବସା ପରମ୍ପରା ପ୍ରଚଳିତ ଅଛି ।

ତେବେ ପ୍ରଶ୍ନ ଉଠେ କୁଆଁରୀ ବସା କ'ଣ ?

ଗୋଟିଏ ପୀଢୀରୁ ପରବର୍ତ୍ତୀ ପୀଢୀକୁ ଦେବଭାର ଅର୍ପଣ କରିବା ହିଁ କୁଆଁରୀ ବସାର ଏକ ଅଂଗ ଅଟେ । ଏହାର ତାତ୍ପର୍ଯ୍ୟ ଯେ ଅବିବାହିତ ଯୁବକ ଯାହାର ବୟସ ପ୍ରାୟ ୨୦ ବର୍ଷରୁ କମ୍ଥାଏ ଓ ସେ ସଂପୂର୍ଣ୍ଣ କୌମାର୍ଯ୍ୟ ବ୍ରତ ଆଚରଣ କରୁଥାଏ, ତାକୁ କୁଆଁରୀ ବସିବା ପାଇଁ ବଛାଯାଏ । ପରଂପରା କହେ କୁଆଁରୀ ବସା ବର୍ଷର ମାଘ କିମ୍ବା ଫାଲଗୁନ ମାସରେ ଜଣେ ଅପ୍ରାପ୍ତ ବୟସ୍କା କିଶୋରୀଙ୍କୁ ଉକ୍ତ ଯୁବକ ସହ ବିବାହ କରିଦିଆଯାଏ । କିନ୍ତୁ ଆନୁଷ୍ଠାନିକ ବିବାହ କରାଯାଇଥିଲେ ମଧ୍ୟ ଉକ୍ତ ଝିଅ ପୂର୍ଣ୍ଣ ଯୌବନା ଓ ସାବାଳକ ନହେବ ପର୍ଯ୍ୟନ୍ତ ସେମାନଙ୍କର କୌଣସି ଦୈହିକ ସମ୍ପର୍କକୁ ପ୍ରଶ୍ରୟ ନଦେଇ ଝିଅକୁ କୂଳବଧୂ ର ମର୍ଯ୍ୟାଦା ଦିଆଯାଇଥାଏ ଓ ଘରେ ରଖାଯାଏ । ଉକ୍ତ ବିବାହ ବର୍ଷର ଆଶ୍ୱିନ କୃଷ୍ଣ ଅଷ୍ଟମୀ ରେ ହିଁ କାର୍ଯ୍ୟବିଧି ଆରମ୍ଭ ହୋଇଯାଏ । ଏଥିପାଇଁ ମୁଖ୍ୟ ପୂଜକ ଦେବୀଙ୍କର



ଅନୁମତି ମାଗନ୍ତି ଓ ସେହି ଦିନଠାରୁ ହିଁ ପୂଜାକାର୍ଯ୍ୟ ଆରମ୍ଭ ହୋଇଯାଏ । ଯୁବକକୁ ମନ୍ଦିରରେ ରହିବାକୁ ଦିଆଯାଏ ।  ସେହି ଦିନଠାରୁ ସାରାଦିନ କୁଆଁରୀ ବସାର ପୂର୍ବରୁ ଉକ୍ତ ମୂର୍ତ୍ତିର ପଛପଟେ ଲୁଚି ରହେ ଓ ରାତିରେ ଦେବୀ ପାଇଁ ଉଦ୍ଦିଷ୍ଟ ଚାଉଳ ନିର୍ମିତ ଯନ୍ତ୍ର ଉପେରେ ଶୁଏ । ରାତିରେ ବାହାର ପଟୁ ମନ୍ଦିରର କବାଟ ବନ୍ଦ କରି ଦିଆଯାଏ  । ଏହି କାର୍ଯ୍ୟ ଶୁକ୍ଳପକ୍ଷ ପଞ୍ଚମୀ ପର୍ଯ୍ୟନ୍ତ ଚାଲେ। କିନ୍ତୁ ଅମାବାସ୍ୟା ଦିନରୁ  ହିଁ ତାକୁ ଅନ୍ନଭୋଗ ନିଷେଧକରି ବେଳେ ଫଳମୂଳ ଦିଆଯାଏ । ଏହି ଭୋଗ ପୁଣି ସଂପୂର୍ଣ୍ଣ ନିଃଶବ୍ଦ ରଜନୀରେ ନିରୋଳାରେ ଦିଆଯାଏ ।

ସେହି ଯୁବକକୁ ପଞ୍ଚମୀ ଦିନ ଦେବୀ ଯନ୍ତ୍ରକୁ ଡେଇଁବାକୁ ଦେଇ କୁଆଁରୀ ବନ୍ଧକୁ ନିଆଯାଏ । ପାଟଣେଶ୍ୱରୀ ଦେବୀ ମନ୍ଦିରର ୮୦ ମିଟର ପାଖାପାଖି ଉତ୍ତରରେ ଅବସ୍ଥିତ ବନ୍ଧକୁ ହିଁ କୁଆଁରୀବନ୍ଧ କୁହାଯାଏ । ସେଠାରେ ତା'କୁ ଗାଧୋଇ ଦିଆଯାଏ । ପୂର୍ବରୁ ଗୋଟିଏ ଶ୍ରୀଫଳର ଆଖିକୁ କଣା କରି ସେଥିରୁ ସବୁ ପାଣି ନିଗାଡି ଦିଆଯାଇ ଥାଏ । ଉକ୍ତ ଯୁବକର ମୁଣ୍ଡରେ ଏକ କଳସ ସ୍ଥାପନ କରି ବନ୍ଧାଯାଏ ଓ ତାହାରି ଉପରେ ସେହି ଶୂନ୍ୟ ଶ୍ରୀଫଳକୁ ଥୁଆଯାଏ, ତା'ପରେ ଯୁବକକୁ ଗଭୀର ପାଣି ପର୍ଯ୍ୟନ୍ତ ନିଆଯାଏ  । ଶୁନ୍ୟକଳସ ଓ ଶୁନ୍ୟ ଶ୍ରୀଫଳରେ ଜଳ ଭର୍ତ୍ତି ହେବା ପର୍ଯ୍ୟନ୍ତ ଉକ୍ତ ଯୁବକକୁ ପାଣି ମଧ୍ୟରେ ବୁଡାଇ ଧରି ରଖାଯାଏ । ଶ୍ରୀଫଳ ପୂର୍ଣ୍ଣ ହେବା ବେଳକୁ ଯୁବକଟି ସପୂର୍ଣ୍ଣ ଚେତାଶୂନ୍ୟ ହୋଇ ସାରିଥାଏ ଓ ତା'ପରେ ତା'କୁ ଆଡିକୁ ବୋହି ଆଣି ସେହି ଅଚେତ ଅବସ୍ଥାରେ ହିଁ ମନ୍ଦିର ପର୍ଯ୍ୟନ୍ତ ଟେକି ଅଣାଯାଏ । ତା'କୁ ମନ୍ଦିର ମଧ୍ୟରେ ଏକାକି ଶୁଆଇ ବାହାର ପଟୁ କବାଟ ବନ୍ଦ କରି ଦିଆଯାଏ । ସେତେବେଳ ପର୍ଯ୍ୟନ୍ତ ସେ ବନ୍ଦଥାଏ, ଯେତେବେଳେ କି ମନ୍ଦିର ମଧ୍ୟରୁ କୌଣସି ଶବ୍ଦ ନ ବାହାରିଛି । ତେବେ କୌଣସି ଶବ୍ଦ ହେଲେ ମନ୍ଦିର କବାଟ ଖୋଲାଯାଏ ଓ ଆଶ୍ଚର୍ଯ୍ୟ ଏତିକି ଯେ ଉକ୍ତ ଯୁବକ ସୁସ୍ଥଥାଏ ଓ ଦେବୀ ସମ୍ମୁଖରେ ବସିଥାଏ । ପରେ ତାକୁ ଆଣି ଗାଧୋଇ ନବବସ୍ତ୍ର ପରିଧାନ ପୂର୍ବକ ନିରନ୍ନ ଭୋଗ ଖାଇବାକୁ ଦିଆଯାଏ, ଯାହାକୁ ପୂଜା ଭାଷାରେରେ ନିଃସଂକୁଳି କହନ୍ତି ।

ଷଷ୍ଠଦିବସରେ ବରୁଆ ମୁଣ୍ଡରେ ଦେବୀ ବିଜେ କରାଇବାର ଅଭ୍ୟାସ କରାଯାଏ । ତାକୁ ପାରମ୍ପରିକ ଯନ୍ତ୍ର ଉପରେ ବସାଇ ଦେବୀ ସ୍ମରଣପରେ ଉକ୍ତ



ଯୁବକ ବରୁଆ ଦେହରେ ଦେବୀଙ୍କୁ ବିଜେ କରିବା ପାଇଁ ଆହ୍ୱାନ କରାଯାଏ । ଦେବୀ ବିଜେ କରନ୍ତୁ ବା ନ କରନ୍ତୁ ଅଭ୍ୟାସ ଅନିବାର୍ଯ୍ୟ ରୂପେ କରାଯାଏ । ବିଧାନ ଅଛି, ବରୁଆ ନିଶ୍ଚୟ ସମ୍ମୋହିତ ହୁଏ ଓ ସଜ୍ଞାହୀନ ଅନୁଭବ କରେ ।

ପୁଣି ସପ୍ତମୀ ତିଥିରେ ଓ ପରବର୍ତ୍ତୀ ଅଷ୍ଟମୀ ଦିନ ଏହି ଅଭ୍ୟାସ ଚାଲୁ ରହେ । ସେ ଦିନ ଯୁବକ (ବରୁଆ) ଦେବୀଙ୍କ ସମ୍ମୁଖରେ ଶପଥ ନିଏ - ଦେବୀ ସେବାର ଅବଶିଷ୍ଟ ଜୀବନ ସମର୍ପଣ ପାଇଁ । ଏହି ଦିନ ଦୁର୍ଗାଙ୍କ ସାନିଧ ସେ ଅନୁଭବ କରେ । ତା' ପରଦିନ ନବମୀ । ପାରମ୍ପରିକ ସାଜସଜ୍ଜା ସହ ଛତର ଦେବୀ ବାଦ୍ୟ, ପାଟଖଣ୍ଡା, ତୁଳସୀ-ଦହନା ଗୁଚ୍ଛ ଦେବୀ ସମ୍ମୁଖରେ ଶୋଭାପାଏ । ମନ୍ଦିର ମଧ୍ୟରେ ଗମ୍ଭୀର ପରିବେଶ ଥାଏ । ପରେ ବରୁଆ ଦେହରେ ଦେବୀଙ୍କୁ ଆହ୍ୱାନ କରଯାଏ । ଦେବୀ ସେଦିନ ନିଶ୍ଚୟ ବରୁଆର ଦେହରେ ବିଜେ କରିବେ । ଦେବୀ ଅବତରଣ କରନ୍ତି ମଣିଷ ଦେହରେ ଓ ବରୁଆଙ୍କୁ ମାଁ ପାଟଣେଶ୍ୱରୀ ବୋଲି ସମ୍ବୋଧନ କରାଯାଏ ମଧ୍ୟ । ଦହନା ଓ ତୁଳସୀ ଗୁଚ୍ଛରେ ଦେବୀ ମୁଣ୍ଡର ବାଳରେ ବନ୍ଧାଯାଏ ଯେପରି କି ତାହାର ସମଗ୍ର ମୁଖ ମଣ୍ଡଳ ଆଚ୍ଛାଦିତ ରହେ । ପରେ ଦେବୀ ମନ୍ଦିରରୁ ବାହାରି ସର୍ବସାଧାରଣରେ ଦର୍ଶନ ଦିଅନ୍ତି । କୁଆଁରୀବସ୍ଥା ବର୍ଷ ଅତୀବ ଗୁରୁତ୍ୱପୂର୍ଣ୍ଣ ବଏଲ ହୁଏ । କାରଣ ଏହା ପ୍ରତିବର୍ଷ ନହୋଇ ଗୋଟିଏ ପୀଢୀରେ ହୋଇଥାଏ । ଦେବୀ ବାଦ୍ୟର ଧ୍ୱନୀର ସ୍ୱାତନ୍ତ୍ର୍ୟତା ହେତୁ ଭକ୍ତ ଦର୍ଶକ ମନରେ ଭୟ ସଞ୍ଚାର କରେ ।

**କପର ଚୁପା -**

ଗଙ୍ଗବଂଶୀୟ ପାଇକ ମାନେ ପରମ୍ପରା ଅନୁସାରେ ଦେବୀଙ୍କ ପଥ ପ୍ରଦର୍ଶକ ସାଜନ୍ତି । ସେମାନଙ୍କ ଇଚ୍ଛା ଅନୁସାରେ ଦେବୀ ନିୟନ୍ତ୍ରିତ ହୁଅନ୍ତି । ଦେବୀ ମନ୍ଦିରରୁ ବାହାରି ପ୍ରଥମେ ଦୁର୍ଗା ମଣ୍ଡପକୁ ଯାଆନ୍ତି ଓ ଯଥାବିଧି ଆରାଧନା ପରେ କପରଚୁପା କାମ ଆରମ୍ଭ ହୁଏ । ଅଷ୍ଟମଲ୍ଲିକଙ୍କ ଅତୃପ୍ତ ଶରୀରର ବିଭିନ୍ନ ଅଙ୍ଗ ଭିନ୍ନ ଭିନ୍ନ ସ୍ଥାନରେ ପୋତାଯାଇଛି । କୋଶଳ ରାଜ୍ୟର ପ୍ରଥମ ଚୌହାନ ବଂଶର ରାଜା ରମାଇ ଦେଓଙ୍କ ଅମଳରୁ । ଅଷ୍ଟ ମଲ୍ଲୀକଙ୍କର ଜାନୁ ପୋତା ସ୍ଥାନରେ ସିଂହାସନ ସ୍ଥାପନ କରି ଚୌହାନ ବଂଶୀୟ ରାଜାମାନେ ଶାସନ କରୁଥିଲେ । ଏହି ଦୁର୍ଦ୍ଦମନୀୟ ଶକ୍ତିଶାଳୀ ଧାରୀ ଅଷ୍ଟ ମଲ୍ଲିକଙ୍କର ମାରି ଚୌହାନ ବଂଶର ରାଜତ୍ୱ ଆରମ୍ଭ କଲେ



ପ୍ରଥମ ରାଜା ରମାଇ ଦେଓ । ତେଣୁ ଅଷ୍ଟ ମଲ୍ଲିକଙ୍କ ଅତୃପ୍ତ ଆତ୍ମା ଶରୀର ମଧ୍ୟରୁ ପୁନଃ ଉତ୍‌ଥାପନ ଯେପରି ନ ହୁଏ, ଦେବୀ ସେଥିପାଇଁ ବର୍ଷେ ପର୍ଯ୍ୟନ୍ତ ତାଙ୍କୁ କିଳି ଦମନ କରନ୍ତି ଓ ପାଟଖଣ୍ଡାରେ ଏବଂ ପାଇକଙ୍କ ଠେଙ୍ଗାର ଆଘାତରେ ତଥା ଭାବ ବିହ୍ୱଳିତ ଭକ୍ତ ବୃନ୍ଦ କିଳି କିଳା ଧ୍ୱନୀରେ ତାଙ୍କୁ ଦମନ କରନ୍ତି ।

ଖ୍ରୀଷ୍ଟପୂର୍ବ ୩୦ରେ ବିକ୍ରମଦେବ ନାମକ ଜନୈକ ରାଜା କୋଶଳର ରାଜଧାନୀ ଗଡ ପାଟଣାରେ ନିର୍ମାଣ କଲେ । ଏହି ଗଡ ତାନ୍ତ୍ରିକଙ୍କ ଯନ୍ତ୍ରବତ୍ ନିର୍ମିତ ହୋଇଥିଲା ପଞ୍ଚ ସ୍ତରୀୟ ନୀତିରେ । ଏଥିରେ ଗୁପ୍ତଦ୍ୱାର, ଚୂର୍ଣ୍ଣଦ୍ୱାର, ଘସିଏନ ଦ୍ୱାର, ସୋନପୁର (ଭୈରବୀ) ଦ୍ୱାର ଓ ମୁଖ୍ୟ ସିଂହ ଦ୍ୱାର (ଗଣେଶ ଦ୍ୱାର), ଏହିପରି ୪ ଗୋଟି ଦ୍ୱାର ଥିଲା । ଗଡକୁ ସଂପୂର୍ଣ୍ଣ ନିରାପଦ ରଖିବା ପାଇଁ ଦେବୀ ପ୍ରତି ବଏଲରେ ଦ୍ୱାରକୁ କିଳିଥାନ୍ତି । ଦ୍ୱାରକିଳା କାମ ସରିବା ପରେ ଦେବୀ ପାଟଣା ରାଜାଙ୍କର ଖମାର ସ୍ଥିତ ଦଶମତୀ ଦେବୀଙ୍କ ସାକ୍ଷାତ୍ ପାଇଁ ଯାଆନ୍ତି । ଏହି ଅବସରରେ ଦେବୀ ଜନସାଧାରଣ ଘରକୁ ମଧ୍ୟ ଯାଇ ଶ୍ରଦ୍ଧା ଅର୍ଘ୍ୟ ଗ୍ରହଣ କରନ୍ତି ।

**ବଏଲ ର ଦେବୀ ଗଣ -**

ପ୍ରବିଧି ଅନୁସାରେ ବଏଲରେ ପ୍ରଥମେ ପାଟଣେଶ୍ୱରୀ, ଦ୍ୱିତୀୟରେ ଡଙ୍ଗେଇ ଓ ଶେଷରେ ସମଲେଇ ଦେବୀ ଅବିର୍ଭୂତା ହୁଅନ୍ତି । ପାଟଣେଶ୍ୱରୀ ଓ ଡଙ୍ଗେଇ ପାଟଣେଶ୍ୱରୀ ମନ୍ଦିରରୁ ବାହାରିଥାନ୍ତି । ଡଂଗେଇ ଦେବୀଙ୍କର ଐତିହାସିକତା ଓ ଅଧିଷ୍ଠାନ ପ୍ରଶ୍ନବାଚୀ ମଧ୍ୟରେ ଥିଲେ ମଧ୍ୟ ସେ ଏମାନଙ୍କର ସହଗାମୀ ହୁଅନ୍ତି ।

ସୁତରାଂ ବଏଲ ଯାତ୍ରାର ମହାନ ପରମ୍ପରା ଭକ୍ତ ଙ୍କ ମନରେ ଭାବ ପ୍ରବଣତା ଆଣି ଦିଏ ଓ ରାଜତନ୍ତ୍ରକୁ ସ୍ମରଣ କରାଇଥାଏ ମାତ୍ର । ଦୁର୍ଗାଙ୍କର ପ୍ରାକୃତିକ ସ୍ୱରୂପ ଗୁଡିକୁ ପ୍ରାଚୀନ କାଳରୁ ମାଁ ପାଟଣେଶ୍ୱରୀ, ମାଁ ଡଙ୍ଗେଇ ଓ ମାଁ ସମଲେଇ ରୂପରେ ଆରାଧନା କରାଯାଇ ଦେବୀ କୃପା ଲାଭ କରିବାର ପାରମ୍ପାରିକ ଅଭିପ୍‌ସା ଏ ଯାଏ ଚଳି ଆସି ଥିବାରୁ ଦେବୀ ଭକ୍ତ ଆଶ୍ୱସ୍ତ ହୁଏ ।





# ସୁବର୍ଣ୍ଣମେରୁ ମହାଦେବ ଓ ସୁବର୍ଣ୍ଣପୁର

କୋଶଳର ପ୍ରାଚୀନ ସହର ମାନଙ୍କ ମଧ୍ୟରୁ ସୁବର୍ଣ୍ଣପୁର( ସୋନପୁର) ଅନ୍ୟତମ ଥିଲା । ସୋମ ବଂଶର ରାଜାମାନେ କୋଶଳରେ ରାଜତ୍ୱ କରୁଥିବା ସମୟରେ ସେମାନେ ବୌଦ୍ଧ ଧର୍ମାବଲମ୍ବୀ ଥିବାରୁ ହିନ୍ଦୁଦେବାଦେବୀଙ୍କୁ ଆଉ ପୂଜା କଲେ ନାହିଁ । ବୌଦ୍ଧ ମୂର୍ତ୍ତି ପୂଜାରେ ବିଶ୍ୱାସ ରଖେ ନାହିଁ । ତେଣୁ କୋଶଳର ଅଧିକାଂଶ ଅଞ୍ଚଳରେ ହିନ୍ଦୁ ଦେବାଦେବୀ ଅପୂଜିତା ହୋଇଗଲେ । ସାଧାରଣ ଜନତା ମଧ୍ୟ ରାଜ ଧର୍ମକୁ ବାଧ୍ୟ ହୋଇ ଗ୍ରହଣ କରି ନେଉଥିଲେ । ତେଣୁ ହିନ୍ଦୁଙ୍କ ଦେବା ଦେବୀ ଅପୂଜିତ ହୋଇ ରହିଲେ ।

ସୁବର୍ଣ୍ଣପୁର ସହର ସ୍ଥାପିତ ହେଲା କୋଶଳରେ ସୋମବଂଶୀ ବୌଦ୍ଧ ଧର୍ମାବଲମ୍ବୀ ଜନୈକ ରାଜାଙ୍କର ରାଜତ୍ୱ ସମୟରେ । ତା'ପୂର୍ବରୁ ଏଠାରେ ଏକ କ୍ଷୁଦ୍ର ଗ୍ରାମ ଥିଲେ । ସେହି ଗ୍ରାମର ତେଲି ଜାତିର ଜଣେ ବ୍ୟବସାୟୀ ସାଧୁ ସାହୁ ଶିବଭକ୍ତ ଥିଲେ, ହିନ୍ଦୁ ଥିଲେ । ସେ ଦେବାଦେବୀଙ୍କ ମୂର୍ତ୍ତିକୁ ଶ୍ରଦ୍ଧାର ସହ ପୂଜା କରୁଥିଲେ ।

ଦିନେ ଲଦା ବଳଦ ଧରି ତେଲ ନଦୀର ଦକ୍ଷିଣ କୂଳସ୍ଥ ଅଞ୍ଚଳରେ ଗୁଡ଼ଜ ବିକ୍ରୟ କରିବାକୁ ସେ ବାହାରିଲେ । ବଳଦ ଓ ଗୁଡ଼ଜ ସହ ନଦୀକୁଠିକ୍ ପାରି ହେଲା ବେଳକୁ ହଠାତ୍ କୁଆଡୁ ମେଘ ଆସି ପ୍ରବଳ ବର୍ଷା ହେଲା । ନିରୁପାୟ ହୋଇ ସାଧୁ ସାହୁ ନିକଟସ୍ଥ ଏକ ବିରାଟ ପୁରୁଣା ବରଗଛ ମୂଳକୁ ଯାଇ ଆଶ୍ରୟ ନେଉଥିବା ସମୟରେ ଭିଜି ଯାଇ ଥିବା କେତୋଟି କଣା ବସ୍ତାକୁ ସିଲେଇ କରିଦେବା ପାଇଁ ପଟ ଓ ଡାପନ ବାହାର କଲେ । ଡାପନ ଭୂତା ଥିଲା । ତେଣୁ ସେ ତାକୁ ଗୋଜିଆ କରିବା ପାଇ ନିକଟରେ ଥିବା ଏକ ବର୍ତ୍ତୁଳାକାର ପଥର ଦେହରେ ତା'ର ମୁନକୁ ଘଷିଲେ । ଆଶ୍ଚର୍ଯ୍ୟର କଥା ଯେ ଉକ୍ତ ଲୁହା ନିର୍ମିତ ଡାପନ ଟି ସଙ୍ଗେ ସଙ୍ଗେ ସୁନାରେ ପରିଣତ ହୋଇଗଲା । ତାହା ସୁବର୍ଣ୍ଣମେରୁ ମହାଦେବଙ୍କ ସ୍ପର୍ଶ ମଣିରେ ନିର୍ମିତ ଲିଙ୍ଗଥିଲା । ସାଧୁ ସାହୁ ବ୍ୟବସାୟୀ ଥିଲା । ସଙ୍ଗେ ସଙ୍ଗେ



ଟା ପାଖରେ ଯେତେ ଲୁହା ଜିନିଷ ଥିଲା, ସେ ସବୁକୁ ଆଣି ଉକ୍ତ ପଥର ଦେହରେ ଘଷିଲା । ପ୍ରକୃତରେ ଉକ୍ତ ପଥରଟି ହିଁ ଶିବ ଲିଙ୍ଗ ଆକୃତିର ସ୍ପରଶ ମଣିଥିବାରୁ ସବୁ ଲୁହା ସୁନାରେ ପରିଣତ ହୋଇ ଗଲିଲା । ସ୍ପରଶ ମଣିରେ ଯେ କୌଣସି ଧାତବ ପଦାର୍ଥର ସ୍ପର୍ଶ କଲେ ତା'ହା ସୁବର୍ଣ୍ଣରେ ରୂପାନ୍ତରିତ ହୁଏ ବୋଲି କୁହାଯାଏ । ତେଣୁ ତା'ପାଖରେ ଥିବା ସମସ୍ତ ଲୁହା ସୁନାରେ ପରିଣତ ହେଲା । ତାକୁ ଏହି ବିଷୟ ଜଣା ନଥିଲା । ଏତେ ଗୁଡିଏ ଲୁହା ସୁନାରେ ପରିଣତ ହୋଇ ଯିବା ପରେ ସେ ହର୍ଷୋତ୍ ଫୁଲ୍ଲିତ ହୋଇ ବଳଦ ଓ ଗଉଳ ସହ ଘରକୁ ଫେରି ଆସିଲା । ଆଶ୍ଚର୍ଯ୍ୟ ଓ ଖୁସିରେ ସେ ରାତିରେ ମାଁ ଲକ୍ଷ୍ମୀଙ୍କୁ ସ୍ମରଣ କରି ମହାଦେବଙ୍କୁ ପ୍ରଣାମ କରି ଶୋଇଲା ।

ରାତିରେ ତାକୁ ସ୍ୱପ୍ନାଦେଶ ହେଲା – "ବରଗଛ ମୂଳରେ ମୁଁ ସୁବର୍ଣ୍ଣମେରୁ ମହାଦେବ ଅଛି । ଲୋକ ଲୋଚନରେ ସ୍ପରଶ ମଣି ରୂପରେ ମୁଁ ଶିବଲିଙ୍ଗ ଅଟେ । ମୁଁ ଦେବ ଦେବ ମହାଦେବ ଅଟେ ଏବଂ ବହୁ କାଳରୁ ପୂଜା ପାଇ ଆସୁଅଛି । ବୌଦ୍ଧଧର୍ମର ପ୍ରାବଲ୍ୟ ହେତୁ ବର୍ତ୍ତମାନ ମୋତେ କେହି ପୂଜା କରୁ ନାହାନ୍ତି । ତେଣୁ ମୁଁ ସୁବର୍ଣ୍ଣମେରୁ ମହାଦେବ ଆଦେଶ ଦେଉଛି – ଏକଥାକୁ ତୁ ସୋମବଂଶୀ କୋଶଳାଧିପତିଙ୍କୁ କହି ମୋର ପୂଜା ଅର୍ଚ୍ଚନା କରାଇବୁ ।"

ସକାଳେ ସାଧୁ ସାହୁ ସୁବର୍ଣ୍ଣମେରୁ ମହାଦେବଙ୍କ ଆଦେଶକୁ କୋଶଳର ରାଜାଙ୍କୁ ଜଣାଇଲା । ରାଜା ମହାଦେବଙ୍କ ଆଦେଶକୁ ସମ୍ମାନ ଦେଲେ ଓ ବରଗଛ ମୂଳରୁ ଶିବ ଲିଙ୍ଗ (ସ୍ପର୍ଶମଣି) କୁ ଅଣାଇ ତେଲ ନଦୀର ଉତ୍ତର ଦିଗରେ ସ୍ଥାପନ କଲେ । ଯେଉଁ ଠାରେ ଶିବ ଲିଙ୍ଗ ସ୍ଥାପନ କଲେ, ତାର ନାମ ଦେଲେ ସୁବର୍ଣ୍ଣମେରୁ ମନ୍ଦିର ଏବଂ ସ୍ଥାନ (ଗ୍ରାମ) ର ନାମ ଦେଲେ ସୁବର୍ଣ୍ଣପୁର ।

ଆଶ୍ଚର୍ଯ୍ୟର କଥା ଯେ, ଯେଉଁଦିନ ସୁବର୍ଣ୍ଣମେରୁ ଶିବଲିଙ୍ଗ ସ୍ଥାପିତ ହେଲା, ସେହି ଦିନ ଆକାଶରୁ ଅସଂଖ୍ୟ ସୁନା ମୋହର ବୃଷ୍ଟି ହେଲା ବୋଲି ଜନ ସ୍ମୃତି କହେ। ଆଜି କାଲି ମଧ ଉକ୍ତ ଅଞ୍ଚଳରୁ କେହି କେହି ସୁନା ପାଉଥିବାର କୁହାଯାଏ । ସୁବର୍ଣ୍ଣମେରୁ ମହାଦେବ ଲିଙ୍ଗରେ ତାମନରେ ଘଷିବାର ଚିହ୍ନ ଏବେବି ମଧ ଅଛି ବୋଲି କୁହାଯାଏ । କେତେଶହ ବର୍ଷ ପରେ ସମ୍ବଲପୁର ରାଜାଙ୍କର ଜଣେ ପୁଅ ମଦନ ଗୋପାଳଙ୍କ ଭାଗରେ ସୁବର୍ଣ୍ଣପୁର ଅଞ୍ଚଳ ପଡିଲା ।



ସେତେବେଳେ ତା'ର ନାମ ଥିଲା ଉଫୁଲାଦେଶ । ମଦନ ଗୋପାଳ ଜଣେ ଶିବ ଭକ୍ତ ଥିଲେ ଏବଂ ଉଫୁଲାର ରାଜଧାନୀ ସୁବର୍ଣ୍ଣମେରୁଙ୍କ ଅବସ୍ଥାନ ସ୍ଥାନରେ ହିଁ ରାଜଧାନୀ ନିର୍ମିତ ହେବା ବିଧେୟ ବୋଲି ଭାବିଲେ । ତେଣୁ ସେ ଏହି ବିଷୟରେ କୋଶଳର ରାଜା (ପାଟଣାରାଜା) ଙ୍କୁ ଜଣାଇଲେ । କୋଶଳାଧିଶ ଏଥିରେ ନିଜର ସମ୍ମତି ଜଣାଇବାରୁ ରାଜା ମଦନ ଗୋପାଳ ଉଫୁଲା ଦେଶର ରାଜଧାନୀ ସୁବର୍ଣ୍ଣପୁରରେ ସ୍ଥାପନ କଲେ । ପରବର୍ତ୍ତୀ ସମୟରେ ରାଜ୍ୟର ରାଜଧାନୀ ଅନୁସାରେ ଉଫୁଲା ଦେଶ ସୁବର୍ଣ୍ଣପୁର ଦେଶ ନାମରେ ନାମାନ୍ତରୀତ ହେଲା ।

ସୁବର୍ଣ୍ଣପୁରରେ ସେତେବେଳେ ଜଣେ ଗଣ୍ଡ ଜାତିର ଗଡଚ୍ୟା ଥିଲେ । ତାଙ୍କର ନାମ ଥିଲା ଡୋମ ଗଣ୍ଡ । ସେ ସମ୍ବଲପୁର ର ତାତ୍କାଳିକ ରାଜା ମଧୁକର ସାଏ ଙ୍କୁ ମାନିଲେ ନାହିଁ । ଫଳରେ ମଧୁକର ସାଏ ବିଦ୍ରୋହୀ ଡୋମ ଗଣ୍ଡକୁ ଆକ୍ରମଣ କରି ପରାସ୍ତ କଲେ । ଡୋମ ଗଣ୍ଡର ଯୁଦ୍ଧ କ୍ଷେତ୍ରରେ ମୃତ୍ୟୁ ହେଲା । ତେଣୁ ସେହି ଦିନ ଠାରୁ ଉଫୁଲାର ରାଜଧାନୀ ରୂପେ ସୁବର୍ଣ୍ଣପୁରକୁ ସର୍ବ ସମ୍ମତ ସ୍ୱୀକୃତି ମିଳିଲା ।

ପାଟଣାରେ ଚୌହାନ ବଂଶର ରାଜା ମାନଙ୍କର ଶାସନ ସମୟରେ ଏହି ସୁବର୍ଣ୍ଣପୁର ଚୌହାନ ମାନଙ୍କର ଶୈଳ ନିବାସ ଥିଲା । ସେମାନେ ଏଠାରେ ଅନେକ ଛୋଟ ଛୋଟ ମନ୍ଦିର ନିର୍ମାଣ କରାଇଥିଲେ । ଏବେ ମଧ୍ୟ ଅନେକ ମନ୍ଦିର ଭଗ୍ନ ବା ଅର୍ଦ୍ଧଭଗ୍ନ ଅବସ୍ଥାରେ ଦୃଷ୍ଟି ଗୋଚର ହୁଏ । ଏବେ ମଧ୍ୟ ଅନେକ ସୁବର୍ଣ୍ଣପୁରକୁ ମନ୍ଦିର ମାଳିନୀ ସୁବର୍ଣ୍ଣପୁର ବୋଲି କହନ୍ତି । ଦୀର୍ଘ ସମୟ ଧରି ବୌଦ୍ଧ ଧର୍ମାବଲମ୍ବୀ ଅନେକ ରାଜା ଏଥିରେ କଡା ନିରାପତ୍ତାର ବ୍ୟବସ୍ଥା କଲେ ମଧ୍ୟ ଏହାର ଶାସନ ହିନ୍ଦୁ ଦେବା ଦେବୀଙ୍କର ନାମାନୁଯାୟୀ ଚାଲିଲା । ଶେଷରେ ସୋମବଂଶୀ ରାଜା ମାନଙ୍କର ଶାନସ ଅବଧି ଦୀର୍ଘ ଦିନ ରହିଲା ଏବଂ ସେମାନେ ଏହାକୁ ସୁବର୍ଣ୍ଣପୁର ରୁ ସୋମପୁର ନାମରେ ନାମିତ କଲେ, ଯାହାକି ଅପଭ୍ରଂଶିତ ହୋଇ ସୋନପୁର ହେଲା । ଏହି ସୋମପୁର ବା ସୋନପୁର ହିଁ ସୁବର୍ଣ୍ଣପୁର ଜିଲ୍ଲାର ସଦର ମହକୁମା ଅଟେ ।





# ପାପକ୍ଷୟ ଘାଟ

ତ୍ରେତୟା ଯୁଗର ପୁରାଣ ବର୍ଣ୍ଣିତ ସ୍ୱର୍ଣ୍ଣମୟୀ ଲଙ୍କା ଆଧୁନିକ ସୁବର୍ଣ୍ଣପୁର (ସୋନପୁର) କୁ କହୁଥିବା ବେଳେ ବିଲଙ୍କାର ଅପଭ୍ରଂଶିତ ନାମ ବିନିକା କୁହାଯାଏ । ଯଦିଓ ଏହିମତ ଅସମର୍ଥିତ ସତ୍ୟ ବୋଲି କେତେ ଐତିହାସିକ ମତ ଦିଅନ୍ତି, ତଥାପି ଏହା ଗବେଷଣା ସାପେକ୍ଷ ନିଶ୍ଚୟ । ଅଧିକନ୍ତୁ ବିନିକା ଯେ ଭୌଗୋଳିକ ତଥା ପ୍ରାକୃତିକ ସୌନ୍ଦର୍ଯ୍ୟରେ ଭରପୁର ଥିବା ଏକ ପବିତ୍ର ପୀଠ, ଏଥିରେ ଦ୍ୱିମତ ହେବାର କିଛି ନାହିଁ । ବିନିକାର ଅଦୂରରେ ଅବସ୍ଥିତ ପାପକ୍ଷୟ ଘାଟ ଏବଂ ସଂପର୍କୀତ କିମ୍ବଦନ୍ତୀ ହିଁ ଏହାର ପବିତ୍ରତା ପ୍ରତି ବିଶ୍ୱାସ ଜନ୍ମାଏ । ଓଡିଶାର ଗଙ୍ଗା ସ୍ୱରୂପିଣୀ ପବିତ୍ର ବୃହତ୍ତମ ନଦୀ ଚିତ୍ରୋତ୍ପଳା (ମହାନଦୀ) କୂଳରେ ଅବସ୍ଥିତ ଏହି କ୍ଷୁଦ୍ର ପ୍ରାଚୀନ ସୁନ୍ଦର ସହରଟି ତାହାର ଅନେକ ସୁଗୁଣ ପାଇଁ ହିଁ ପ୍ରସିଦ୍ଧି ପାଇଥିଲେ ମଧ୍ୟ ପାପକ୍ଷୟ ଘାଟ ପାଇଁ ହିଁ ଏହାର ଅଧିକରୁ ଅଧିକ ମର୍ଯ୍ୟାଦା ବଢିଥାଏ । ଯେଉଁ ପର୍ଯ୍ୟଟକେ ବିନିକା ପରିଭ୍ରମଣରେ ଆସେ, ସେ ଏହି ଘାଟର ପବିତ୍ର ଜଳରେ ସ୍ନାନ ନ କରି ଫେରେ ନାହିଁ - ଏ କଥା ସମସ୍ତେ ଉପଲବ୍ଧି କରନ୍ତି । ଏହି ଉପଲବ୍ଧ ପ୍ରସୂତ ଓ ମାଦଳା ପାଞ୍ଜି ସ୍ୱୀକୃତ ପବିତ୍ର ସ୍ଥଳୀର କିମ୍ବଦନ୍ତୀ (ଇତିହାସ) କୁ ଏ ଅଞ୍ଚଳରେ ଆଧାର କରି ଗୌରବାନ୍ୱିତ ହେଉଥିବାର ଦୃଷ୍ଟିଗୋଚର ହୁଏ । ତେଣୁ ଜଗନ୍ନାଥଙ୍କର ପବିତ୍ର ନାମ ସହ ତଲ୍ଲିଖିତ ଥିବା ଚଳନ୍ତି ବିଷ୍ଣୁ ଦ୍ୱିତୀୟ ଅନଙ୍ଗଭୀମ ଦେବଙ୍କର ଦୁଃସାଧ ରୋଗ ମୁକ୍ତିର ଜନମୁଖର କାହାଣୀ ଏବଂ ମାଦଳା ପାଞ୍ଜିରେ ବର୍ଣ୍ଣିତ, ପାପକ୍ଷୟ ସଂପର୍କୀତ କିମ୍ବଦନ୍ତୀ ହିଁ ଏହି ପବିତ୍ର ସ୍ଥଳୀର ମର୍ଯ୍ୟାଦା ବୃଦ୍ଧି କରାଏ । ତେବେ ଆସନ୍ତୁ, ପ୍ରାଚୀନ କାଳର କୁଆଁରୀ ପାଟଣା ଅଧିନସ୍ଥ ଏହା କୋଶଳାଞ୍ଚଳର କିମ୍ବଦନ୍ତୀ ଓ ସ୍ଥାନର ପବିତ୍ରତାର କାହାଣୀ ଶୁଣିବା ।

ପୁରୀ ଗଜପତି ଚଳନ୍ତି ବିଷ୍ଣୁଙ୍କର ସଜୀବ ସ୍ୱରୂପ ମାନବ ଶରୀରରେ ବିରାଜିତ ବୋଲି ଜଗନ୍ନାଥ ଭକ୍ତିର ସାମଗ୍ରିକ ପରିଧି ମୁକ୍ତ କଣ୍ଠରେ ସ୍ୱୀକାରେ ଓ ଜୟଜୟକାର ମଧ୍ୟରେ ନତମସ୍ତ ହୋଇଥାଏ । ଗଜପତି ସମସ୍ତ ହିନ୍ଦୁ ଜଗତର



ହୃତପିଣ୍ଡ ବୋଲାନ୍ତି ଏବଂ ସେ ଯେକୌଣସି ଆଲୋଚନାର ଉର୍ଦ୍ଧ୍ୱରେ ରହନ୍ତି । ତଥାପି ତାତ୍କାଳିନ ଗଜପତି ଚଳନ୍ତି ବିଷ୍ଣୁ ପ୍ରତିମା ଦ୍ୱିତୀୟ ଅନଙ୍ଗ ଭୀମ ଦେବ ରୋଗାଗ୍ରସ୍ତ (ଛେପରେ ତାଙ୍କର କୀଟ) ଅସାଧ ଏ ରୋଗ । ଚଳନ୍ତି ବିଷ୍ଣୁଙ୍କ ଛେପ ଦୂଷିତ, ମୁଖ କୀଟଗ୍ରସ୍ତ, ବିକାର ଗ୍ରସ୍ତ ଶରୀର । ପଟିଛେପ ବିନ୍ଦୁରେ କୀଟ ହେତୁ ସେ ବିବ୍ରତ । ବୈଦ୍ୟ ବିଶାରଦ ମାନଙ୍କର ଭିତର ସମାପ୍ତି । ରୋଗ ଉପସମର ସମ୍ଭାବନା ନ ଥାଏ । ଦିନୁ ଦିନ ଗଜପତି ଚିନ୍ତାମଗ୍ନ ହେତୁ ତାଙ୍କ ଶରୀର କ୍ଷୀଣତର । ସମଗ୍ର ଆର୍ଯ୍ୟାବର୍ତ୍ତର ସମସ୍ତ ବୈଦ୍ୟ ପରାଭୂତ । ଗଜପତିଙ୍କ ଚିନ୍ତାର ସୀମା ନ ଥାଏ । ହତାଶାରେ ଦୈବୀ ଶକ୍ତି ଉପରେ ଭରସା ହିଁ ଚରମ ବିକଳ୍ପ ପନ୍ଥା ।

ଏବଂ-

କାଳ ବିଳମ୍ବ ନ କରି ସେ ଭଗବାନ ତ୍ରିଲୋକନାଥ କୈଳାଶପତି ମହାଯୋଗେଶ୍ୱର ମହାକାଳ ଙ୍କ ମନ୍ଦିରରେ ଧାରଣା ଦିଅନ୍ତି । ଯୋଗେଶ୍ୱର ପୁରୀ ଗଜପତିଙ୍କର କାତର ପ୍ରାର୍ଥନା ଶୁଣି ପାପକ୍ଷୟ ତୀର୍ଥ ବିଷୟରେ କହନ୍ତି । ଚିତ୍ରୋତ୍ପଳାର ପବିତ୍ର କୂଳେ କୂଳେ ଯାଇ ପ୍ରତି ରାତି ଯୋଜନରେ (ଅର୍ଥାତ୍ ଏକ ଦିନର ରାତ୍ରି ଯାପନ ସମୟର ବ୍ୟବଧାନରେ) ଶିବ ମନ୍ଦିର ନିର୍ମାଣ କରିବାର ନିର୍ଦ୍ଦେଶ କୁ ସ୍ୱୀକାର କରିବାର ସିଦ୍ଧାନ୍ତ ନିଅନ୍ତି ଅନଙ୍ଗ ଭୀମ ଦେବ ଗଜପତି । ଶିବଙ୍କର ଆଦେଶ ଅମାନ୍ୟର ପ୍ରଶ୍ନ ଉଠୁନ ଥାଏ । ସ୍ୱପ୍ନାଦେଶ ହିଁ ଗଜପତିଙ୍କର ଜୀବନର ପରିବର୍ତ୍ତନ ଆଣେ ।

ତତ୍କ୍ଷଣାତ୍ ଅନଙ୍ଗ ଭୀମ ଦେବ ଚିତ୍ରୋତ୍ପଳା ର କୂଳେ କୂଳେ ଜଙ୍ଗଲ ଧାରେ ଧାରେ ପଶ୍ଚିମାଭିମୁଖୀ ହୋଇ ଚାଲିବା ଆରମ୍ଭ କଲେ । ସମସ୍ତ ରାଜକୁଳ ଗଜପତିଙ୍କୁ ଅନୁଗମନ କଲା । ପ୍ରତି ରାତି ଯୋଜନ ବ୍ୟବଧାନରେ ଏକ ଶିବ ମନ୍ଦିର ନିର୍ମାଣ କଲା ପରେ ସ୍ଥାନ ତ୍ୟାଗ ଓ ପୁନଶ୍ଚ ପଶ୍ଚିମାଭିମୁଖୀ ଯାତ୍ରା ଆରମ୍ଭ ହୁଏ । ତାଙ୍କର ଦୈବୀ ଆଦେଶ ଶିରୋଧାର୍ଯ୍ୟ ଓ ତାହା ଅକ୍ଷରେ ଅକ୍ଷର କାର୍ଯ୍ୟକାରୀ ହୋଇ ଚାଲିଥାଏ ଭକ୍ତିପୂତ ଭାବୋଚ୍ଛ୍ୱାସରେ । ଏକବେଳା ପବିତ୍ର ଅରୁଆର ଭୋଗ । କୁଶାସନ ଓ କୁଶଶଯ୍ୟା ହିଁ ଏକମାତ୍ର ଅଧିଷ୍ଠାନ । ଖାଲି ପାଦ, ଅବିରାମ,



ଯୋଡହସ୍ତରେ ଗଭୀର ଭକ୍ତି ଭାବନା ନେଇ ଚାଲିଥାନ୍ତି ତାଙ୍କର ପୂର୍ବଜନ୍ମ ଅର୍ଜିତ ପାପକ୍ଷୟ ନିମିତ୍ତ ଉଦ୍ଦିଷ୍ଟ ଓ ନିର୍ଦ୍ଦେଶିତ ଥିବା ପବିତ୍ର ଚିନିକା ନିକଟବର୍ତ୍ତୀ ଅଞ୍ଚଳକୁ ।

ଚିତୋତ୍ପଳାର ପବିତ୍ର ନୀର ଗଜପତିଙ୍କୁ ଦୁଷ୍କୃତି ସୂଚକ ରୋଗରୁ ମୁକ୍ତି ଦେବ - ଆଦେଶ ମହାକାଳେଶ୍ୱରଙ୍କର । ଅବିରାମ ନିର୍ଦ୍ଦେଶିତ ଆଦେଶର ପଦେ ପଦେ ପାଳନ ସସତର୍କ ଭାବନାର ସହ ତାଙ୍କର କାମ୍ୟ ଥିଲା ।

ତେଲନଦୀ ସଙ୍ଗମ ନିକଟରେ ଗଜପତି ପହଞ୍ଚିଲେ । ସେ ଭୁଲ ବଶତଃ ତେଲନଦୀକୁ ମହାନଦୀ ମନେ କରି ତେଲର ଶଯ୍ୟାର କୂଳେ କୂଳେ ପଶ୍ଚିମାଭିମୁଖୀ ହେଲେ । ପ୍ରତି ଚାରି ଯୋଜନ ବ୍ୟବଧାନର ବା ଏକ ଦିନର ବାଟର ବ୍ୟବଧାନରେ ଶିବଲିଙ୍ଗ ସ୍ଥାପନ ର ନିର୍ଦ୍ଦେଶ ଅନୁସାରେ ବର୍ତ୍ତମାନର ବୈଦ୍ୟନାଥ ଠାରେ ଏକ ଶିବଲିଙ୍ଗ ସ୍ଥାପନ ଓ ମନ୍ଦିର ନିର୍ମାଣ କରାଇଲେ । ଏତିକି ଗଜପତି କରୁଥିଲେ ଯେ ବିଭିନ୍ନ ସ୍ଥାନରେ ନିର୍ମିତ ପ୍ରତିଟି ଶିବ ମନ୍ଦିରର ଭିନ୍ନ ଭିନ୍ନ ନାମ ସେ ଦେଉଥିଲେ । ତେଣୁ ସେଠାରେ ସ୍ଥାପିତ ଶିବଙ୍କର ନାମ ବୈଦ୍ୟନାଥ ହେଲା । ମନ୍ଦିର କୁ କେନ୍ଦ୍ର କରି ପରବର୍ତ୍ତୀ ସମୟରେ ସ୍ଥାପିତ ହୋଇଥିବା ଗ୍ରାମର ନାମ ମଧ୍ୟ ବୈଦ୍ୟନାଥ ହେଲା ।

କିନ୍ତୁ ମନ୍ଦିର ନିର୍ମାଣ ଶେଷରେ ଗଜପତି ଭୁଲ କ୍ରମେ ମହାନଦୀ ଶଯ୍ୟା ଛାଡି ତେଲନଦୀର ଶଯ୍ୟାରେ ଆସିଥିବାର ଜାଣି ପାରି ପୁଣି ପ୍ରତ୍ୟାବର୍ତ୍ତନ କଲେ । ସେ ମିଳନ ସ୍ଥଳରେ ହିଁ ତେଲ ନଦୀକୁ ପାରି ହୋଇ ପୁଣି ମହାନଦୀର ଧାରେ ଧାରେ ଭକ୍ତି ଭାବରେ ଚାଲିଲେ ।

ସଙ୍ଗମର ଚାରିଯୋଜନ ବ୍ୟବଧାନରେ ଅବସ୍ଥିତ ଏକ ଗ୍ରାମରେ ସନ୍ଧ୍ୟା ଯାପନ ହେଲା । ରାତ୍ର ଶୟନର ସ୍ୱପ୍ନରେ ଗଜପତିଙ୍କୁ ତାହା ଶେଷ ଯାତ୍ରା ବୋଲି ଶିବଙ୍କର ସୂଚନା ମିଳିଲା । ପାପକ୍ଷୟ ନୀର ର ନିକଟବର୍ତ୍ତୀ ହୋଇଛନ୍ତି ଜାଣି ଗଜପତି ସ୍ୱପ୍ନରେ ମଧ୍ୟ ଉତ୍ ଫୁଲ୍ଲିତ ହେଲେ । ଆଦେଶ ହେଲା - ଏକ ସୁଡଙ୍ଗ ଦେଇ ଅହରହ ଉଛୁଳି ପଡୁଥିବା ଏକ କ୍ଷୁଦ୍ର ଜଳଧାର ଯାହାକି ମହାନଦୀର ସ୍ରୋତରେ ସମ୍ମିଳିତ ହୁଏ, ସେଥିରେ ସ୍ନାନ ସାରି ଉକ୍ତ ପଶ୍ଚିମାଭିମୁଖୀ ପ୍ରାନ୍ତର ଓ କ୍ଷୁଦ୍ର ପାହାଡ ଅତିକ୍ରମ କରି ଏକ କୋଶ ପଥ ଅତିକ୍ରମ କଲା ପରେ ଚରଦା



. ନିକଟରେ ଥିବା ଶିବ ମନ୍ଦିର ଦର୍ଶନ କର । ଦୃଷ୍ଟି ଚି ସୂଚକ ରୋଗର ଏହା ମୁକ୍ତିର ବିଧାନ ।

ଶିବାଦେଶ ଗଜପତିଙ୍କର ଶିରୋଧାର୍ଯ୍ୟ ହୁଏ । ସୂର୍ଯ୍ୟୋଦୟ ସମୟର ପ୍ରତୀକ୍ଷା । ସେ ଦିନର ପବିତ୍ର ସୂର୍ଯ୍ୟୋଦୟ ଗଜପତିଙ୍କ ଜୀବନର ଏକ ଚିର ସ୍ମରଣୀୟ ମୁହୂର୍ତ୍ତ ହେବ । ଆଦେଶ ମତେ ଗଜପତି ଙ୍କୁ ନିର୍ଦ୍ଦେଶିତ ସ୍ଥାନରେ ପବିତ୍ର ସ୍ନାନ କରିବାକୁ ଅବେଗଭରା ପ୍ରତୀକ୍ଷା । ବ୍ରାହ୍ମ୍ୟ ମୁହୂର୍ତ୍ତରେ ଉପସ୍ଥିତି ହୁଏ ଏବଂ ଗଜପତି ଆଦେଶକୁ ପାଳନ କଲେ । ସ୍ନାନ ପରେ ସେ ରୋଗମୁକ୍ତ ହେଲେ, ଛେପ ରେ ଆଉ କୀଟ ପଡୁ ନାହିଁ । ଆନନ୍ଦ ବିଭୋର ଗଜପତି ପଶ୍ଚିମାଭିମୁଖୀ ହୋଇ ମୁଖରିତ ଭୂମିରେ ଖାଲିପାଦରେ ଚାଲିଲେ ଚରଦା ଅଭିମୁଖେ ।

ଚରଦାରେ ଉପସ୍ଥିତ ହୋଇ ଅପୂର୍ବ ଦୃଶ୍ୟ ଦେଖି ସ୍ତବ୍ଧ ହେଲେ ଗଜପତି । ଏକ କଳାଗାଈ ଉଭାର୍ଜ୍ୟୋତିର୍ଲିଙ୍ଗ ଉପରେ କ୍ଷୀର ଢାଳୁଥିବାର ଦୃଶ୍ୟ ତାଙ୍କୁ ସ୍ତମ୍ଭୀଭୂତ କଲା । ସେଠାରେ ସେ ଏକ ମନ୍ଦିର ନିର୍ମାଣ କଲେ । ଶିବ ଙ୍କୁ ନୀଳ କଣ୍ଠେଶ୍ୱର ନାମ ଦେଲେ । ଗଜପତିଙ୍କର ଶେଷ ରହଣି ସ୍ଥାନଟି ବା ରହିଲା କ୍ଷୁଦ୍ର ଗ୍ରାମଟିର ନାମ "ରହିଲା" ହିଁ ଦେଲେ । ଏବେ ମଧ୍ୟ ଉକ୍ତ ଗ୍ରାମର ନାମ "ରହିଲା" ରହିଛି ।

ତେଣୁ କୋଶଳାଞ୍ଚଳରେ ଥିବା ବିନିକାର ମାତ୍ର ଏକ ମାଇଲ (ପ୍ରାୟ ୨ କି.ମି.) ଦୂରବର୍ତ୍ତୀ ସ୍ଥାନଟି ଗଜପତିଙ୍କର ଅନେକ ଦିନର ଓ ଚିର ଅକାଂକ୍ଷିତ ଦୃଷ୍ଟି ଚି ଲବ୍ଧ ରୋଗର ମୁକ୍ତିର କାରଣ ଥିବା ହେତୁ ସେହି ଦିନଠାରୁ ନାମ ପରିବର୍ତ୍ତିତ ହୋଇ ତା'ର ନାମ ପାପକ୍ଷୟ ତୀର୍ଥ ହେଲା ।

ନୀଳକଣ୍ଠେଶ୍ୱର ମହାଦେବ ଚରଦା ଠାରେ ପୂଜିତ ହେଲେ । କିମ୍ବଦନ୍ତୀ ଅନୁସାରେ - ତାରାପୁରଗଡର ମାଁ ଦୁର୍ଗା ଚରଦା କୁ ଶିବାଶ୍ରୟ ଆଶାରେ ଆସି ନୀଳକଣ୍ଠେଶ୍ୱର ନିକଟରେ ବିରାଜିଲେ । ଲୋକେ ଶ୍ରଦ୍ଧାରେ ତାଙ୍କୁ ଚରଦେଇ ବୋଲି ସମ୍ବୋଧି ସଶ୍ରଦ୍ଧ ଭକ୍ତିପୂତ ପୂଜନରେ ଆପ୍ୟାୟୀତ କଲେ । ଚରଦାର ନୀଳକଣ୍ଠେଶ୍ୱର ଏବଂ ଶକ୍ତି ସ୍ୱରୂପିଣୀ ଚରଦେଇ ପ୍ରତ୍ୟହ ଫୁଲ ଦେବାର ବ୍ୟବସ୍ଥା ହେଲା । ଏକ ନିର୍ଦ୍ଦିଷ୍ଟ ଗ୍ରାମର ଏତେ ଫୁଲର ଚାଷ କରାଗଲା । ଏକ ନିର୍ଦ୍ଦିଷ୍ଟ ସମ୍ପ୍ରଦାୟ ର ଲୋକେ ଫୁଲ ଅର୍ପଣର ଭାର ନେଲେ । ତେଣୁ ଫୁଲ ଚାଷ



କରାଯାଇଥିବା ସ୍ଥାନଟିରେ ଗଢି ଉଠିଲା ଏକ କ୍ଷୁଦ୍ର ଗ୍ରାମ ଏବଂ ନାମ ଦେଲେ ଫୁଲମୁଠା ।ପୁଣି ଚରଦା ମନ୍ଦିରରେ ଏକ ପୂଜାରୀ ସଂପ୍ରଦାୟର ଏକ ସଂଗରେ ଅନେକ ଶଙ୍ଖ ବାଜାଇ ନୀଳକଣ୍ଠେଶ୍ୱର ଙ୍କୁ ଆରାଧନ କଲେ । ପରବର୍ତ୍ତୀ ସମୟରେ ସେମାନେ ବସବାସ କରୁଥିବାର ଗ୍ରାମର ନାମ ଶଙ୍ଖୁଆ ବାଶଙ୍ଖରା ଦେଲେ ।

ପୁରାଣ ବର୍ଣ୍ଣିତ ନୈମିଷ ଅରଣ୍ୟର ଅନ୍ତର୍ଗତ ଏହି ସ୍ଥାନଟିକୁ ଦ୍ୱାପର ଯୁଗରେ ରାଧାମାଧବଙ୍କ ଯୁଗଳ ମୂର୍ତ୍ତି ପ୍ରାକୃତିକ ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ ବିରାଜି ଥିଲେ । ତା' ପୂର୍ବରୁ ତ୍ରେତୟା ଯୁଗରେ ମଧ୍ୟ ଭଗବାନ ରାମଚନ୍ଦ୍ର ପବିତ୍ର ଜଳର ଆକର୍ଷଣ ରେ ଏଠାରେ ସ୍ନାନ କରିଥିବାର ପ୍ରବାଦ ଜନ ମୁଖରେ ମୁଖରିତ ହୁଏ । ଉକ୍ତର ମୁହଁରେ ଗଦ ଗଦ ଭାବ ବହେ ଏବଂ ସ୍ଥାନୀୟ ଜନ ମାନସରେ ଗର୍ବଭାବ ପୋଷିତ ହୁଏ ।

ପୁଣି ପୁରାଣ ବର୍ଣ୍ଣିତ ଶାମ୍ବଙ୍କର ଅର୍କତୀର୍ଥ ବା ପବିତ୍ର ଚନ୍ଦ୍ରଭାଗା ସ୍ନାନରେ କୁଷ୍ଠ ରୋଗମୁକ୍ତିର କିମ୍ବଦନ୍ତୀ ପରି ପୁରୀ ଗଜପତି ଅନଙ୍ଗଭୀମ ଦେବଙ୍କର ଅସାଧ୍ୟ ଛେପର କୀଟ ଦର୍ଶନ ରୋଗର ଦୂରକାରୀ ପବିତ୍ର ସ୍ଥଳୀ ପାପକ୍ଷୟ ଘାଟ ହିଁ ବୋଲି ସେତେ ମର୍ଯ୍ୟାଦା ରଖୁ ଥିବାରୁ ପ୍ରତି ପରାଗ, ଗ୍ରହଣ ଓ ତିଳ ସପ୍ତମୀ ଦିନ ପ୍ରତି ବର୍ଷ ଏହି ପାପକ୍ଷୟ ତୀର୍ଥରେ ଲକ୍ଷାଧିକ ଜନତାଙ୍କ ବୁଡ ପଡେ, ମେଳା ହୁଏ ଓ ସ୍ଥାନୀୟ ଜନମାନସ କୃତକୃତ୍ୟ ହୁଏ ।

ଏଠାରେ ଥିବା ବିରାଟ ପ୍ରାଚୀନ ବରଗଛ ମୂଳରେ ଥିବା ସରୁଫାଙ୍କ ଦେଇ ଅତିରୁ ଅତି ମୋଟା ଲୋକ ମଧ୍ୟ ଗଳି ଯାଇ ପାରୁଥିବା ଦୃଶ୍ୟ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଥାଏ ଏବଂ ସହସ୍ରାଧିକ ବର୍ଷରୁ ଦଣ୍ଡାୟମାନ ଅନେକ ଓହଳ ସ୍ତମ୍ଭ ଯୁକ୍ତ ବରଗଛଟି ବୋଧହୁଏ ସମସ୍ତ ପ୍ରଚୀନତା, ପବିତ୍ରତା ଏବଂ ଐତିହାସିକତା କୁ ଜୀର୍ଣ୍ଣ ଓ ଗର୍ଭଗତ କରି ମୁକସାକ୍ଷୀ ରୂପେ ଠିଆ ହୋଇ ଦର୍ଶକଙ୍କୁ ଆଶୀର୍ବାଦ ଦିଏ, ଶୀତଳ ଛାୟାରେ ଆଶ୍ରୟ ଦିଏ । ମହାବଳୀ ହନୁମାନ ମନ୍ଦିର, ସୂର୍ଯ୍ୟ ମନ୍ଦିର ଏବଂ କ୍ଷୁଦ୍ର ଧର୍ମଶାଳା, ନଦୀ ପର୍ଯ୍ୟନ୍ତ ପାବଛ ଆକର୍ଷଣୀୟ ହୋଇଥିବା ବେଳେ ଏହା ଯେ ସୁଦୂର ଅତୀତରେ କୋଶଳର ଏବଂ କୁଆଁରୀ ପାଟଣାର ଏକ ଗର୍ବର ପୀଠ ଥିଲା ଏହା ଅବଶ୍ୟ ସ୍ୱୀକାର୍ଯ୍ୟ । ଚରଦାର ଏହି ଜ୍ୟୋତିର୍ଲିଙ୍ଗ ଉପରେ



କପିଳା ବର୍ଣ୍ଣର ଗାଈ କ୍ଷୀର ଢାଳୁଥିବା ରୁ ତା'ର ନାମ କପିଳେଶ୍ୱର ମହାଦେବ ଥିଲା । ଡଃ ହରେକୃଷ୍ଣ ମହତାବଙ୍କ ଅନୁସାରେ ଏହି ଶିବ ଲିଙ୍ଗର ନାମ କପିଳେଶ୍ୱର ଆଗରୁ ଥିଲେ ମଧ୍ୟ ଗଜପତି ଏହାକୁ ନୀଳକଣ୍ଠେଶ୍ୱର ବୋଲି ନାମ ଦେଲେ । ତଥାପି ଜନ ମାନସରେ ଏହି ମନ୍ଦିର ର ପୂର୍ବ ନାମ କପିଲେଶ୍ୱର ର ଛାପ ସର୍ବଦା ରହିଛି ଏବଂ ଶ୍ରଦ୍ଧାଳୁ ଭକ୍ତ ସଶ୍ରଦ୍ଧ ଏହାକୁ କପିଳେଶ୍ୱର ବୋଲି ଡାକେ । ଯଦିଓ ମାଦଳାପଞ୍ଜି ଓ ଗଜପତି ଙ୍କ ନାମ ସହ ନୀଳକଣ୍ଠେଶ୍ୱର ଙ୍କ ନାମ ସମିଶ୍ରିତ ତଥାପି ଶ୍ରଦ୍ଧାଳୁ ଭକ୍ତ ଯେ କପିଳେଶ୍ୱର ମନ୍ଦିର ବୋଲି ଏହି ମନ୍ଦିରକୁ ପରଂପରା ଅନୁସାରେ ବୁଝି ଆସିଛି । ତେବେ କପିଳେଶ୍ୱର ବା ନୀଳକଣ୍ଠେଶ୍ୱର ଯେ ମାଦଳାପଞ୍ଜିରେ ପାପକ୍ଷୟ ଘାଟର ମହିମା ପ୍ରଚ୍ଛରର ଉତ୍ସ ଏ କଥା ପାରମ୍ପାରିକ କିମ୍ବଦନ୍ତୀ ଓ ଜନ ମାନସର ଗର୍ବର ପ୍ରତୀକ । ତେଣୁ ଏହି ପବିତ୍ର ସ୍ଥଳକୁ ପର୍ଯ୍ୟଟନ କେନ୍ଦ୍ରର ମର୍ଯ୍ୟାଦା ମିଳିବା ଉଚିତ୍ ହେବ ବୋଲି ମତ ଆସେ ।





# ଯମୁନା କଂଧେନ୍

ଯୁଗେ ଯୁଗେ ଆଦିବାସୀଙ୍କର ଜୀବନ ଯାତ୍ରା ସହ ଭଗବାନଙ୍କର ନିଗୂଢ଼ ସମ୍ପର୍କ ରହି ଆସିଥିବା କଥା ପୁରାଣ କହେ । ପୁରାଣ ଯୁଗର ଶବରୀ ରାମଚନ୍ଦ୍ରଙ୍କ ଠାରୁ ବିଶ୍ୱାବସୁ-ଜଗନ୍ନାଥ ଐତିହାସିକ ଯୁଗ ପର୍ଯ୍ୟନ୍ତ ଭଗବାନଙ୍କର ପ୍ରିୟଭକ୍ତ ଆଦିବାସୀ ହିଁ ରହିଆସିଛି । ଐତିହାସିକ ଆଖ୍ୟାୟିକା ଜଗନ୍ନାଥ ଧାମର ପୁରୁଷୋତ୍ତମ ମହାପ୍ରଭୁ ଜଗନ୍ନାଥଙ୍କର ଆବିର୍ଭାବ ଶବର ଭଗବାନଙ୍କର ଆଦିବାସୀ ପ୍ରୀତିର ରୋଚକ କିମ୍ବଦନ୍ତୀ ପରି କନ୍ଧ ଜାତି ସହ ଭଗବାନଙ୍କର ସମ୍ପର୍କରେ ଗନ୍ଧମାର୍ଦ୍ଦନ ସ୍ଥିତ ନୃସିହନାଥ ହରିଶଙ୍କର ପରି ତୀର୍ଥସ୍ଥାନ ସୃଷ୍ଟିର ଏବଂ ଐତିହାସିକ କାହାଣୀ ପଶ୍ଚିମ ଓଡିଶାର ସର୍ବଶ୍ରେଷ୍ଠ ଦର୍ଶନୀୟ ତୀର୍ଥ ସ୍ଥଳୀର ସମ୍ପର୍କକୁ ଆଦିବାସୀ ସଭ୍ୟତା ସହ ଭଗବାନଙ୍କର ସମ୍ପର୍କ ଆଦିବାସୀ ଜୀବନ ଯାତ୍ରାର ନିଷ୍କପଟ ଉତ୍କର୍ଷତାର ପରିଚାୟକ ଅଟେ । ତେବେ ନୃସିହନାଥ ଓ ହରିଶଙ୍କର ର ଅବିର୍ଭାବ ସହ କନ୍ଧ ଜାତିର ଜଣେ ବୃଦ୍ଧା କିପରି ଭଗବାନଙ୍କର ମାତୃସ୍ଥାନ ଅଧିକାର କରିପାରିଥିଲା, ଆସନ୍ତୁ ସେ କାହାଣୀ ଶୁଣିବା ।

ଯମୁନା ମନସିଂ ଗ୍ରାମରକଂନ୍ଧ ଜାତିର ଜଣେ ବୃଦ୍ଧା ଥିଲା । ପବିତ୍ର ଗନ୍ଧମାର୍ଦ୍ଦନରେ ନିର୍ଝରିତ ୩୨ ଗୋଟି ମୁଖ୍ୟ ଝରଣା ମଧ୍ୟରୁ ପାଇକମାଲ (ବର୍ତ୍ତମାନ ନୃସିଂହନାଥ ମନ୍ଦିର) ଆଡକୁ ପ୍ରଧାବିତ ଝରଣାର କୂଳେ କୂଳେ ଏକ ପ୍ରକାର କନ୍ଦା ଉତ୍ପନ୍ନ ହେଉଥିଲା । ଏହି କନ୍ଦାକୁ ସମସ୍ତ ଆଦିବାସୀ ସଂପ୍ରଦାୟର ଲୋକେ ପିଠା ପୋଡାଇ ଖାଉଥିଲେ । ଏହା ଅତ୍ୟନ୍ତ ସୁମିଷ୍ଟ ଥିଲା । ନିଜର ଭାବୀ ଜୀବନର ଏହା ମିତ୍ର ସଦୃଶ ଥିଲା । ଅନ୍ୟମାନଙ୍କ ପରି ଯମୁନା କଂଧେନ ମଧ୍ୟ ଏହି ସୁମିଷ୍ଟ ପିଠା ପ୍ରସ୍ତୁତ କରି ତା'କୁ ପ୍ରଧାନ ଖାଦ୍ୟ ରୂପେ ବ୍ୟବହାର କରି ଆସୁଥିଲା । ପ୍ରତିଦିନ ସକାଳେ ଝରଣା କୂଳରୁ କନ୍ଦା କୋଡି ଆଣିବା, ବିଶେଷ କରି ସେହି ଅଞ୍ଚଳର ଆଦିବାସୀ ସ୍ତ୍ରୀ ମାନଙ୍କର ଏକ ନିତ୍ୟକର୍ମ ଥିଲା ମଧ୍ୟ । ଉଦର ପୋଷଣର ଏକମାତ୍ର ଆଧାର ଏହି ପିଠା କନ୍ଦା ହିଁ ଥିଲା ।



ଦିନେ ଯମୁନା ଉକ୍ତ ଝରଣା କୂଳକୁ କନ୍ଦା ସଂଗ୍ରହ କରିବାକୁ କୋଡି, ଗଏଁଟି ଓ ଡଲା ସହ ଗଲା । ସେତେବେଳେ ଯମୁନାର ବୟସ ପଚାଶ ପାଖାପାଖି ଥିଲା । ବନଚରୀ ଆଦିବାସୀ ମହିଳା ସୁଲଭ ଗୁଣ ସବୁ ଯମୁନା ପାଖରେ ଥିବାରୁ ନିର୍ଭୀକା ହୋଇ ବଣ ପାହାଡରେ ମୁକ୍ତ ବିଚରଣ କରୁଥିଲା ।

ସେ ଦିନ ଝରଣା କୂଳରେ ପହଞ୍ଚି କନ୍ଦା ଲତା ଠାବକରି କନ୍ଦା କୋଡିବାକୁ ଆରମ୍ଭ କଲା । ସେ ରଫା ଓ ପରେ ଗଇଁତିରେ କନ୍ଦା କୋଡୁଥାଏ ଓ ସଂଗ୍ରହ କରି ଥୋଉ ଥାଏ ଡଲାରେ । ହଠାତ୍ ଗଇଁତି ପ୍ରହାରରେ କନ୍ଦା ପରିବର୍ତ୍ତେ ଅନ୍ୟ କୌଣସି ଠାରେ ପଡିବାରୁ ଗୋରସ ଧାରର ଝର ତୀବ୍ର ବେଗରେ ଉର୍ଦ୍ଧଗାମୀ ହୋଇ ମାଟିଭିତରୁ ଛିଞ୍ଚାମାରି ବାହାରିଲା । ଯମୁନା ଗୋରସରେ ସଂମ୍ପୂର୍ଣ୍ଣ ଭିଜିଗଲା । ବନଚରୀ ଯମୁନା ନିର୍ଭୀକା ଥିଲେ ମଧ୍ୟ ଅସ୍ୱାଭାବକ ଘଟଣାରେ ସମ୍ପୂର୍ଣ୍ଣ ଡରିଗଲା । ହତସ୍ତମ୍ଭ ହୋଇ ନିର୍ଭୀକତା ହରାଇ ହିତାହିତ ଜ୍ଞାନଶୂନ୍ୟା ହେଲା ଓ ପ୍ରବଳ ଭୟରେ ସଂଜ୍ଞାହୀନ ପ୍ରାୟ ହେଲା । ମନୁଷ୍ୟ ଅନେକ ସମୟରେ ନିଜର ଅଜାଣତରେ ଅନେକ କାର୍ଯ୍ୟକୁ ସ୍ୱତଃ ସ୍ୱଭାବିକ କ୍ରମରେ କରିଥିଲେ ଏବଂ ତା' ପାଇଁ କୌଣସି ପ୍ରୟାସର ଆବଶ୍ୟକତା ନଥାଏ । ଯମୁନାର ମଧ୍ୟ ତାହାହିଁ ହେଲା । ସେ ନିଜର ଅଜାଣତରେ ଦୌଡିବା ଆରମ୍ଭ କରିଦେଲା । ଦୌଡି ଦୌଡି ସେ ଘରେ ପହଞ୍ଚି ସଂଜ୍ଞାହୀନ ହୋଇ ଭୂଇଁରେ ପଡିଗଲା ।

ସେତେବେଳେ ଯମୁନା ର ପତି ହରି ଗନ୍ଧୁଆରେ ଖଟ ଗୁନ୍ଥୁଥାଏ । ଯମୁନାର ଏପରି ଅବସ୍ଥା ଦେଖି ଘବରେଇ ଗଲା ଏବଂ କୋଣସି ବିଷାକ୍ତ ଜୀବ ଦଂଶନ କରି ଥିବାର ଦୁଶ୍ଚିନ୍ତା ତା' ମନକୁ ହଠାତ୍ ସ୍ପର୍ଶ କଲା । ଆମ ମନ ଏପରି କେତେକ ଉପାଦାନରେ ଗଠିତ ଯେ ସମୟ ବିଶେଷରେ ହଠାତ୍ ପ୍ରଥମେ ବିପରୀତ କିମ୍ୱା ମନ୍ଦ ଚିନ୍ତାକୁ ସ୍ପର୍ଶ କରେ । ତେଣୁ ବିଷାକ୍ତ ଜୀବ ଦଂଶନର କୌଣସି ସଂକେତ ନ ପାଇ ସେ ବୁଢ଼ିର ସଂଜ୍ଞା ଫେରାଇ ଆଣିବା ପାଇଁ ଚେଷ୍ଟା କଲା । ଅନେକ ସମୟ ପାଣି ଓ ଲେମ୍ବୁର ସ୍ଥାନୀୟ ଉପଚାର ପରେ ବୁଢ଼ି ସଂଜ୍ଞା ଲାଭ କଲା ରୁ ତା' ଠାରୁ ସମସ୍ତ ବିଷୟ ଅବଗତ ହେଲା ଏବଂ ଭଗବାନଙ୍କର ତା'ପ୍ରତି ନିଶ୍ଚିତ ଦୟାଥିବାର ଅନୁମାନ କରି ନେଲା । କାରଣ କନ୍ଧ ଶୁଣିଥାଏ ଯେ,



ଭଗବାନଙ୍କର ମୂର୍ତ୍ତି କିମ୍ବା ସତ୍ତାରୁ ହିଁ କ୍ଷୀର ବିର୍ଗତ ହୁଏ । ବିଶେଷ କରି ପ୍ରାଚୀନ ଜ୍ୟୋତିର୍ଲିଙ୍ଗ କିମ୍ବା ମୂର୍ତ୍ତି ବୋଲି । ତାହା ସମ୍ଭବ ଥିବ ବୋଲି ସେ ଆନନ୍ଦିତ ହେଲା ।

ସେ ଯମୁନାକୁ ଉକ୍ତ ସ୍ଥାନ ଚିହ୍ନେଇ ଦେବାପାଇଁ କହି ତାକୁ ସଙ୍ଗରେ ନେଇ ନିର୍ଦ୍ଦିଷ୍ଟ ଝରଣା କୂଳର କ୍ଷୀର ନିର୍ଗତ ସ୍ଥାନକୁ ଗଲା । ସେଠାରେ ସେତେବେଳ ପର୍ଯ୍ୟନ୍ତ ଅବିରାମ ଗତିରେ କ୍ଷୀର ନିର୍ଗତ ହେଉଥାଏ । ଅନୁମାନ ଆଶାରେ ପରିଣତ ହେବ ବୋଲି ବୁଢା ନିଶ୍ଚିତ ହୋଇଗଲା । ସେ ମାଟି ଖୋଲି ସତ୍ୟର ଉଦ୍‌ଘାଟନ ପାଇଁ ଆଗେଇ ଆସିଲା । ମାଟି ଖୋଲିବା ଆରମ୍ଭ କରିଦେଲା ସେ । କିଛି ସମୟ ପରେ ସେଥିରୁ ନୃସିଂହ ଅବତାରର ଏକସୁନ୍ଦର ପ୍ରାଚୀନ ମୂର୍ତ୍ତି ବାହାର କରିବାରେ ସେ ସମର୍ଥ ହେଲା ।

ଉଭୟ ବୁଢା-ବୁଢୀ ମୂର୍ତ୍ତିଟିକୁ ଆନନ୍ଦ ମନରେ ଝରଣାରେ ଧୋଇ ଦେଇ ନିଜ ଘରକୁ ନେଲେ । ପୁଣି ଘରେ ତୁଳସୀ ପତ୍ର ଜଳରେ ପବିତ୍ର ସ୍ନାନ କରାଇ ଏକ ନୂଆ ଭୁଗାରେ ରଖିଲେ । ରାତିରେ ବୁଢାକୁ ସ୍ୱପ୍ନା ଦେଶ ହେଲା "ମୁଁ ନୃସିଂହନାଥ ଅଟେ । ପାଟଣା ରାଜାଙ୍କୁ ତୁ ଏହା ମୋର ଆଦେଶ କହି ମୋର ପୂଜା ଆରାଧନାର ବ୍ୟବସ୍ଥା କରାଅ ।

ବୁଢାର ନିଦ୍ରାଭଙ୍ଗ ହେଲାପରେ ଆନନ୍ଦରେ ବୁଢୀକୁ ଡାକିଲା । ବୁଢୀ ବି ଠିକ୍ ସେତିକି ବେଳେ ଏହି ସ୍ୱପ୍ନ ଦେଖୁ ଥିଲା । ସେ ବୁଢାକୁ ନିଜର ସ୍ୱପ୍ନ ବିଷୟରେ କହିଲା । ତେଣୁ ଉଭୟ ପତି-ପତ୍ନୀ ଏକ ସମୟରେ ନିର୍ଦ୍ଦିଷ୍ଟ ସ୍ୱପ୍ନ ଦେଖିଥିବା ହେତୁ ଏହାକୁ ଭଗବାନଙ୍କ କୃପା ମନେ କରି ପାଟଣା ମାହାରାଜାଙ୍କୁ ଏ ବିଷୟରେ ଅବଗତ କରାଇବାକୁ ସେମାନେ ନିଶ୍ଚୟ କଲେ ଓ ଶୁଭ ଦିନ ଦେଖି ପାଟଣାକୁ ଆସିବାକୁ ମନସ୍ଥ କଲେ ।

କିନ୍ତୁ ଭଗବାନଙ୍କର ମହିମା ଦେବ ମାନବେ ଆଗୋଚର ବୋଲି ଶାସ୍ତ୍ର କହେ । ସେତେବେଳେ ପାଟଣାରେ ମହାପ୍ରତାପୀ ଧାର୍ମିକ ରାଜା ବୈଜଳଦେବ ରାଜତ୍ୱ କରୁଥିଲେ । ତାଙ୍କ ରାଣୀଙ୍କର ନାମ ଦୁର୍ଲ୍ଲଭା ଥିଲା । ଯେଉଁଦିନ ଯମୁନା ତା'ର ସ୍ୱାମୀ ହରିବନ୍ଧୁ କୁ ସ୍ୱପ୍ନାଦେଶ ହେଲା, ଠିକ୍ ସେହି ଦିନ ରାଜା ବୈଜଳ





ଦେବଙ୍କୁ ମଧ୍ୟ ସ୍ୱପ୍ନାଦେଶ ହେଲା । ମୁଁ ଯମୁନା କନ୍ଧେନ ଘରେ ଏବେ ଅଛି । ରାଣୀଙ୍କୁ ପଚରି ଅନ୍ୟ ବିଗ୍ରହ ବିଷୟରେ ଜାଣି ବୁଝ । ରାଜା ସଙ୍ଗେ ସଙ୍ଗେ ରାଣୀଙ୍କୁ ଉଠାଇଲେ ରାଣୀ ଠିକ୍ ସେତେବେଳେ ସ୍ୱପ୍ନ ଦେଖି ସାରିଥିଲେ । ସେ ରାଜାଙ୍କୁ କହିଲେ, ଗନ୍ଧମାର୍ଦ୍ଦନ ପର୍ବତର ପୂର୍ବ ପ୍ରାନ୍ତରେ ଭଗବାନ ହରି ଓ ଶଙ୍କରଙ୍କର ଯୁଗଳ ମୂର୍ତ୍ତି ଏକ ପଥର ଖୋଲରେ ପୋତି ହୋଇଛନ୍ତି । ତା'ଙ୍କୁ ଆଣି ପୂଜା କରିବାକୁ ମୋତେ ଆଦେଶ ଦେଇଛନ୍ତି ।

ରାଜା ରାଣୀଙ୍କୁ ପରଦିନ ସକାଳୁ ନେଇ ଗନ୍ଧମାର୍ଦ୍ଦନର ପୂର୍ବ ଦିଗସ୍ଥ ପାଦ ଦେଶକୁ ଗଲେ । ରାଣୀ ସ୍ୱପ୍ନରେ ଦେଖିଥିବା ସ୍ଥାନର ଚିହ୍ନଟ କଲେ ଏବଂ ରାଜା ସେହି ସ୍ଥାନ ମଧ୍ୟରୁ ମାଟି ଭିତରୁ ହରିଶଙ୍କରଙ୍କର ଯୁଗଳ ମୂର୍ତ୍ତି ଉଦ୍ଧାର କଲେ ।

ରାଜାଙ୍କର କୌତୁହଳ ବଢିଗଲା । ସେ ରାଣୀଙ୍କୁ ନେଇ ଗନ୍ଧ ମାର୍ଦ୍ଦନର ପଶ୍ଚିମ ପାର୍ଶ୍ୱକୁ ପାଇକମାଲ ଠାରେ ପହଞ୍ଚି ଯମୁନା କନ୍ଧେନ ଘର ଖୋଜି ଗଲେ । ଯମୁନା ଓ ତା'ର ପତି ମହାରାଜ ଏବଂ ମହାରାଣୀଙ୍କୁ ତାଙ୍କର ଛିତ୍କି କୁଡିଆରେ ଉପସ୍ଥିତ ହେବାର ଦେଖି ଆନନ୍ଦରେ ଗଦ୍ ଗଦ୍ ହୋଇ ଉଠିଲେ ଏବଂ ସ୍ୱପ୍ନାଦେଶ କଥା ରାଜାଙ୍କୁ ଜଣାଇଲେ । ରାଜା ଯମୁନା କନ୍ଧେନ ଠାରୁ ମୂର୍ତ୍ତି ଗ୍ରହଣ କରି ମୂର୍ତ୍ତି ମିଳିଥିବା ଝରଣା କୂଳରେ ନୃସିଂହନାଥ ଙ୍କର ମନ୍ଦିର ନିର୍ମାଣ କରାଇବେ ବୋଲି ପ୍ରତିଶ୍ରୁତି ଦେଲେ । ପ୍ରତିଶ୍ରୁତି ପାଇ ଯମୁନା ଓ ତା'ର ପତି ହରି କନ୍ଧ କୃତକୃତ୍ୟ ହେଲେ, ଆନନ୍ଦରେ ବିଭୋର ହେଲେ ।

ପରବର୍ତ୍ତୀ ସମୟ ମାନଙ୍କରେ ରାଜା ବୈଜଲଦେବ ନୃସିଂହନାଥ ଦେବଙ୍କରଏକ କ୍ଷୁଦ୍ର ମନ୍ଦିର ଉକ୍ତ ଝରଣା କୂଳରେ ନିର୍ମାଣ କରାଇ ଯମୁନା ଓ ତା'ର ପତି ହରିକୁ ସେବା ପୂଜା କରିବାର ଭାର ଅର୍ପଣ କଲେ । ପୂର୍ବପ୍ରାନ୍ତରେ ନାନ୍ଦୁପଲା ପାଖରେ ମୂର୍ତ୍ତି ମିଳିଥିବା ସ୍ଥାନରେ ହରିଶଙ୍କର ମନ୍ଦିର ନିର୍ମାଣ କରାଇ ହରି କନ୍ଧର ଭାଇ ମହାଦେବକୁ ପୂଜାର ଭାର ଅର୍ପଣ କଲେ । କୌଣସି ଅଘଟଣା ଓ ଅସୌଜନ୍ୟ ଘଟଣାକୁ କେନ୍ଦ୍ର କରି ନୃସିଂହନାଥ ମନ୍ଦିରର ପୂଜାଭାର ଉକ୍ତ ବ୍ରହ୍ମଘରୀ ବ୍ରାହ୍ମଣ ହାତକୁ ଚାଲି ଆସିଥିଲା । ସେବେକାର ଇଂରେଜ ରାଜତ୍ୱ ବେଳେ ଏହି ପୂଜା ବ୍ୟବସ୍ଥା ତତ୍କାଳିନ ସଖୀକଣ୍ଢେଇ ରାଜାଙ୍କ ଦ୍ୱାରା ସ୍ୱୀକୃତ ହେଲା ଓ ସେହି






ଦିନ ଠାରୁ ନୃସିହନାଥଙ୍କର ପୂଜାଭାର ବ୍ରାହ୍ମଣ ବ୍ରହ୍ମଚାରୀଙ୍କ ହାତକୁ ଚାଲିଗଲା ।

ସୁତରାଂ ମୂଷିକ ଦୈତ୍ୟକୁ ଜଗି ରହିଥିବା ଭଗବାନଙ୍କର ମାର୍ଜାର ରୂପର ନୃସିଂହନାଥ ଓ ଭାଗବାନ ଶଙ୍କରଙ୍କର ରୂପ ହରିଶଙ୍କର କୁ ମଧ୍ୟଯୁଗର ପରଂପରା ଭଙ୍ଗକରି କଂଧ ଜାତିରୁ ପୂଜାଭାର ଅନ୍ୟ ଜାତିକୁ ଚାଲିଯାଇଥିବା ଘଟଣା ଅଘଟଣ ଓ ଅଶକୁନ କୁହାଯଉଥିବା ସ୍ଥଳେ ସେହି ମହାନ ଭଗବାନଙ୍କର ସଦୟ ଉକ୍ତ ଯମୁନା କଂନ୍ଧେନ ପ୍ରତି ଏହା ଅସମ୍ମାନ ପ୍ରଦର୍ଶନ ସୂଚକ କଥା ବୋଲି ମନେ ହୁଏ ଏବଂ ପୁନଶ୍ଚ ସେମାନଙ୍କ ବଂଶଧରଙ୍କୁ ପୂଜାଭାର ଅର୍ପଣ କରି ପବିତ୍ରତାକୁ ବଜାୟ ରଖିବା ବିଧେୟ ହେବ ବୋଲି ଆଶା କରାଯାଏ । ସେ ଯାହାହେଉ, ଅତ୍ୟାଚାରୀ ମୂଷିକ ଦୈତ୍ୟକୁ ଏବେ ମଧ ଜଗି ରହିଥିବା ଏହି ଦୁଇ ଭଗବାନଙ୍କର ସ୍ଥାପନା କ୍ଷେତ୍ରରେ ଯମୁନା କନ୍ଧେନର ପବିତ୍ର ହାତ ଥିଲା - ଏ କଥା  ଅବଶ୍ୟ ସ୍ୱୀକାର୍ଯ୍ୟ ଅଟେ ।





# ବସ୍ତର ବିଜୟ

ପାଟଣାରାଜ୍ୟର ପ୍ରତ୍ୟେକ ଗ୍ରାମରେ ଗ୍ରାମଦେବୀ ରୂପେ ପୂଜା ପାଉଥିବା ମା ବସ୍ତରେନ ବସ୍ତରଗଡ ରାଜ୍ୟର ଅଧିଷ୍ଠାତ୍ରୀ ଦେବୀ ଥିଲେ ଓ ତାଙ୍କ ନାମ ଦନ୍ତେଶ୍ୱରୀ ଦେବୀ ଥିଲା । ତେବେ ପ୍ରଶ୍ନ ଉଠେ ବସ୍ତରର ଅଧିଷ୍ଠାତ୍ରୀଦେବୀ ପାଟଣା ରାଜ୍ୟର ଗ୍ରାମେ ଗ୍ରାମେ ପୂଜିତା ହେଲେ କିପରି ? ଆସନ୍ତୁ, ଐତିହାସିକତା ରଖୁଥିବା ଏକ କିମ୍ବଦନ୍ତୀ ଶୁଣିବା -

ଖ୍ରୀଷ୍ଟାବ୍ଦ ୧୨୧୭ ରୁ ୧୨୪୭ ପର୍ଯ୍ୟନ୍ତ ମହାଲିଙ୍ଗ ଦେଓଙ୍କର ସୁପୁତ୍ର ବସ୍ତରାଜ ଦେଓ ପାଟଣା ସିଂହାସନରେ ଅଧିଷ୍ଠିତ ହେଲେ । ସେ ନିଜର ଶକ୍ତି ବୃଦ୍ଧି ପାଇଁ ବତିଶ ହଜାର ଗୋଟି ଖଣ୍ଡା ତିଆରି କରାଇଲେ ।

ବସ୍ତରାଜ ଦେଓଙ୍କର ଏକ ସୁନ୍ଦରୀ କନ୍ୟା ଥିଲା । ତା'ର ବିବାହ ବସ୍ତରର ଯୁବରାଜ ସହ ସ୍ଥିର ହେଲା । କିନ୍ତୁ ନିର୍ବନ୍ଧ ପରେ ବସ୍ତରର ରାଜା ପାଟଣା ରାଜାଙ୍କ ଠାରୁ "ରମାଇଁ ଖଣ୍ଡା" ଦାବୀ କଲେ ଯୌତୁକ ସ୍ୱରୂପ । ରମାଇ ଖଣ୍ଡା ଚୌହାନ ବଂଶର ପ୍ରତିଷ୍ଠା ଓ ବଂଶର ମର୍ଯ୍ୟାଦା ସ୍ୱରୂପ ପରିଗଣିତ ହେଉଥିଲେ ମଧ ବାଧ ହୋଇ ତାହା ଯୌତୁକ ସ୍ୱରୂପ ଦେବାକୁ ବସ୍ତରାଜ ରାଜି ହେଲେ ।

ବିବାହ କାର୍ଯ୍ୟ ସଂପନ୍ନ ହେଲାପରେ ଝିଅ ସହ ରମାଇଁ ଖଣ୍ଡାକୁ ପୃଥକ ପୃଥକ ପାଲିଙ୍କି ମଧରେ ଯଥା ସମୟରେ ପାଟଣା ରାଜା ବସ୍ତରାଜ ପଠାଇଲେ । ପାଲିଙ୍କି ପହଞ୍ଚିବା ପରେ ବସ୍ତର ରାଜା ଏବଂ ଯୁବରାଜ ପାଟଣା ରାଜକୁମାରୀ ଅପେକ୍ଷା ଅଗ୍ରାଧିକାର ଦେଲେ ରମାଇଁ ଖଣ୍ଡାକୁ ଦେଖିବାକୁ ଏବଂ ତତ୍‌କ୍ଷଣାତ୍ ରମାଇଁ ଖଣ୍ଡା ଥିବା ପାଲିଙ୍କି ଆଡକୁ ଧାଇଁଲେ । ପାଲିଙ୍କି ଦ୍ୱାର ଖୋଲି ଦେଖିଲେ ଖଣ୍ଡାକୁ ଏକ ନାଗସାପ ଜଗି ରହିଛି । କୌଣସି ପ୍ରକାରେ ପାଲିଙ୍କିରୁ ନାଗସାପ ଅପସରିଗଲା ଓ ରମାଇ ଖଣ୍ଡା ବସ୍ତର ରାଜ ପ୍ରସାଦକୁ ସସମ୍ମାନେ ନିଆଗଲା । କିନ୍ତୁ ବସ୍ତର ରାଜା ଭାବିଲେ - ପାଟଣା ରାଜା ଆମକୁ ସର୍ପ ଦଂଶନ କରାଇ



ମାରିବାକୁ ଯୋଜନା ରଚନା କରି ଥିଲେ । ସେ ଯାହାହେଉ, ପାଟଣା ରାଜ କୁମାରୀ ସହ ରମାଇଁ ଖଣ୍ଡା ମଧ୍ୟ ବସ୍ତର ରେ ରହିଲା ।

ଏହି ଘଟଣାରେ ଉତ୍କ୍ଷିପ୍ତ ହୋଇ ପ୍ରତିଶୋଧ ପରାୟଣ ବସ୍ତର ରାଜା ବସ୍ୱରାଜ ଓ ତାଙ୍କ ଭାଇ ବଳରାମଙ୍କ ନାମରେ ଦୁଇଟି କୁକୁର ପାଳନ୍ତ କଲେ । ସେ ବଡ କୁକୁର ର ନାମ ବସ୍ୱରାଜ ଓ ସାନର ନାମ ବଳରାମ ଦେଲେ । ଉକ୍ତ ନାମରେ ଡାକିଲେ କୁକୁର ଦ୍ୱୟ ସଙ୍ଗେ ସଙ୍ଗେ ଦୌଡି ଆସୁଥିଲେ । ପାଟଣା ରାଜକୁମାରୀ ବସ୍ତରରେ ନିଜପିତା ଓ କାକାର ନାମରେ କୁକୁର ପୋଷିବା ଘଟଣାରେ ଘୋର ଅପମାନିତା ହୋଇ ପିତ୍ରାଳୟକୁ ଖବର ଦେଲେ । ପାଟଣା ରାଜା ଏଥିରେ ଅତ୍ୟନ୍ତ ରାଗିଗଲେ ଏବଂ ଏହାର ପ୍ରତିଶୋଧ ନେବା ପାଇଁ ସଙ୍ଗେ ସଙ୍ଗେ ଯୋଜନା କଲେ ।

ସେ କାଳ ବିଳମ୍ବ ନକରି ସଙ୍ଗେ ସଙ୍ଗେ ବସ୍ତରକୁ ଆକ୍ରମଣ କଲେ । ବସ୍ତର ଓ ପାଟଣା ସୀମାରେ ଘୋର ଯୁଦ୍ଧହେଲା । ବସ୍ତର ରାଜା ପୃଷ୍ଠ ପ୍ରଦର୍ଶନ କରି ପଳାୟନ କଲେ ଏବଂ ବସ୍ତରର ଦୁର୍ଗ ମଧ୍ୟରେ ଲୁଚି ରହି ଦୁର୍ଗ ଦ୍ୱାର୍କୁ ବନ୍ଦ କରିଦେଲେ ଓ ଭିତରେ ଆତ୍ମଗୋପନ କଲେ । ଯେତେ ଚେଷ୍ଟା କଲେ ମଧ୍ୟ ପାଟଣାର ସୈନ୍ୟ ଦୁର୍ଗ ମଧ୍ୟରେ ପଶି ପାରିଲେ ନାହିଁ । ଦୁର୍ଗ ର ଚତୁର୍ପାର୍ଶ୍ୱରେ ଘେରି ରହିଲେ ପାଟଣାର ସୈନ୍ୟମାନେ । ଡେରା ପକାଇ ଏହି ଘଟଣା କେତେ ମାସ ପର୍ଯ୍ୟନ୍ତ ଚାଲିଥିଲେ ମଧ୍ୟ ପାଟଣା ସୈନ୍ୟ ଦୁର୍ଗ ମଧ୍ୟରେ ପଶି ପାରିଲେ ନାହିଁ ।

ଇତି ମଧ୍ୟରେ ସୈନ୍ୟ ଛାଉଣୀକୁ କେତେ ବେଳେ ଗଉଡୁଣି ବେଶରେ କ୍ଷୀର, ଦହୀ, ସର ବିକିବାକୁ ତ କେତେବେଳେ ଗୁଡିଆଣୀ ବେଶରେ ଲଡୁ, ମିଠାଇ ଧରି ଆସିଲେ ବସ୍ତର ର ଅଧିଷ୍ଠାତ୍ରୀ ଦେବୀ ଦନ୍ତେଶ୍ୱରୀ । ତାଙ୍କଠାରୁ ଯେଉଁ ସୈନ୍ୟ ଏସବୁ କିଣି ଖାଇଲା ଝାଡା ବାନ୍ତି ହୋଇ ମଲା । ଧିରେ ଧିରେ ସୈନ୍ୟ ସଂଖ୍ୟା ହ୍ରାସ ହେଲାରୁ ପାଟଣା ମହାରାଜ ମଦନ ଓ ହୀରା ନାମକ ଦୁଇ ଜଣ ସେନାପତି (ଭାଇ)ଙ୍କୁ ବସ୍ତର ପଠାଇଲେ । ଉକ୍ତ ଦୁଇଭାଇ ଅତ୍ୟନ୍ତ ବୁଦ୍ଧିମାନ ଥିଲେ । ସେମାନେ ଗଉଡୁଣୀ ବା ଗୁଡିଆଣି ବେଶରେ ସ୍ୱୟଂ ଦେବୀ ଖାଦ୍ୟ ଓ ପାନୀୟ ବିକୁ ଥିବା ବେଳେ ଦିନେ ତାଙ୍କୁ ଚିହ୍ନିପାରି ଦେବୀଙ୍କ ପାଦତଳେ



ପଡିଗଲେ । ଦେବୀ ସେନାପତି ଭାଇ ଦ୍ୱୟଙ୍କ ଏତାଦୃଶ ବ୍ୟବହାରରେ ଓ ବୁଦ୍ଧିରେ ପ୍ରୀତ ହେଲେ । ମଦନ ଓ ହୀରା ଗଡ ମଧ୍ୟରେ ପ୍ରବେଶ କରିବାର ଉପାୟ ଦେବୀଙ୍କୁ ପଚାରିଲେ ଏବଂ ଦେବୀ ଦନ୍ତେଶ୍ୱରୀ କହିଲେ - ପରବର୍ତ୍ତୀ ସକାଳରେ ଜଣେ ଗର୍ଭବତୀ ସ୍ତ୍ରୀ ଦୁର୍ଗଦ୍ୱାର ଖୋଲିବାକୁ ଆସିଲେ ତାକୁ ଯଦି ସେମାନେ ସଙ୍ଗେ ସଙ୍ଗେ ମାରିଦେବେ, ତେବେ ସେମାନେ ଗଡ ମଧ୍ୟରେ ପ୍ରବେଶ କରି ପାରିବେ । ଦେବୀ ଏହି ସୂଚନା ଦେଇ ଅନ୍ତର୍ଦ୍ଧାନ ହେଲେ ।

ପରବର୍ତ୍ତୀ ସକାଳେ ଦେବୀ ନିର୍ଦ୍ଦେଶ ଅନୁସାରେ ଜଣେ ଗର୍ଭବତୀ ସ୍ତ୍ରୀ ଗଡ ଦ୍ୱାର ଖୋଲିବା ସଙ୍ଗେ ସଙ୍ଗେ ମଦନ ଓ ହୀରା ତା'ର ଶିର ଛେଦ କଲେ ଓ ଗଡ ମଧ୍ୟରେ ପ୍ରବେଶ କରି ପ୍ରବଳ ଯୁଦ୍ଧରେ ବସ୍ତରର ରାଜାଙ୍କୁ ପରାସ୍ତ କଲେ ଏବଂ ହତ୍ୟା କଲେ । ସେଠାରେ ଯୁବରାଜ ତଥା ନିଜ ଜ୍ୱାଇଁଙ୍କୁ ରାଜାକରି ପାଟଣା ଅଧୀନରେ ଏକ କରଦ ରାଜ୍ୟ କରାଇ ଦନ୍ତେଶ୍ୱରୀଙ୍କୁ ଆହ୍ୱାନ କରି ସଙ୍ଗରେ ନେଇ ପାଟଣା କୁ ଆସିଲେ । ପାଟଣାର ପ୍ରଜା ଦନ୍ତେଶ୍ୱରୀ ଦେବୀଙ୍କୁ ପ୍ରତି ଗ୍ରାମରେ ଗ୍ରାମଦେବୀ ରୂପରେ ସ୍ୱୀକାର କରି ପୂଜା କଲେ ଏବଂ ସେହି ପରମ୍ପରା ଅନୁସାରେ ବର୍ତ୍ତମାନ ପର୍ଯ୍ୟନ୍ତ ପ୍ରତ୍ୟେକ ଗ୍ରାମରେ ଦନ୍ତେଶ୍ୱରୀ ଗ୍ରାମଦେବୀ ରୂପେ ପାଇ ଆସୁଛନ୍ତି ।

ପାଟଣାର ରାଜା ଦନ୍ତେଶ୍ୱରୀ ବା ବସ୍ତରେନ ଦେବୀଙ୍କୁ ପାଟଣାଗଡ ସହର ମଧ୍ୟରେ ପ୍ରବେଶ କରାଇ ପାରିଲେ ନାହିଁ । କାରଣ ପାଟଣାର ଅଧିଷ୍ଠାତ୍ରୀ ଦେବୀ ପାଟଣେଶ୍ୱରୀ ଏଥିରେ ପ୍ରତିବାଦ କରି ସେ ବସ୍ତରେନ ଦେବୀଙ୍କୁ ସହର ମଧ୍ୟରେ ପ୍ରବେଶ କରାଇ ନ ଦେବା ପାଇଁ ରାଜାଙ୍କୁ ଆଦେଶ ଦେଲେ । ତେଣୁ ରାଜା ବାଧ ହୋଇ ଦେବୀଙ୍କୁ ବଥର୍ଲା ଗ୍ରାମଠାରେ ଏକ କ୍ଷୁଦ୍ର ଅସ୍ଥାୟୀ ମନ୍ଦିର ନିର୍ମାଣ କରାଇ ସେଥିରେ ପୂଜା କରାଇବାର ବ୍ୟବସ୍ଥା କଲେ । ତେଣୁ ଜନଶ୍ରୁତି କହେ ଯେ ବସ୍ତରେନ ଦେବୀ ଗଡ ମଧ୍ୟରେ ପ୍ରବେଶ କରି ନପାରି ଅଟକି (ବସିଲା-ବଥର୍ଲା) ରହିଥିବା ହେତୁ ତା'ର ପାଖାପାଖି ୭ଟି ସ୍ଥାନର ନାମ କ୍ରମାଗତ 'ବ' ଅକ୍ଷରରୁ ଆରମ୍ଭ ହୋଇଛି । ଯଥା - ବଡପଦା, ବରମ୍ପୁରା (ବହ୍ମପୁରା), ବଥର୍ଲା, ବଙ୍ଗାରୀ, ବିଲେଇସାଥୀ, ବାଲିପଟା ଏବଂ ବନକାବିହର । ଏହି ସବୁ ଗ୍ରାମ କ୍ରମାଗତ (ଲାଗିଥିବା) ଅଟେ ଏବଂ ପ୍ରାୟ ଏକ ସରଳରେଖାରେ ଅବସ୍ଥିତ ଅଟେ ବୋଲି



ଜନସ୍ମୃତିକୁ ଅସ୍ୱୀକାର କରାଯାଇ ନଥାଏ ।

ପାଟଣା ରାଜାଙ୍କର ବିଜୟରେ ବସ୍ତରର ରାଜ ପରିବାରର କେତେ ଜଣ ତଥା ମନ୍ତ୍ରୀ ଆଦି ପାରିଷଦ ଈର୍ଷା ପରାୟଣ ହୋଇ ସମ୍ମୁଖ ଯୁଦ୍ଧ ପରିତ୍ୟାଗ କରି ରାତିରେ ଅତର୍କିତ ଆକ୍ରମଣ ଦ୍ୱାରା ପାଟଣାର ଗଡ଼ ଦଖଲ କରିଥିବା ମସୁଧା କଲେ ଏବଂ ବଛାବଛା କେତେକ ସୈନ୍ୟ ଏବଂ ସେନାପତିଙ୍କୁ ଦେଇ ପାଟଣାଗଡ ଆକ୍ରମଣ ପାଇଁ ପଠାଇଲେ । ବସ୍ତରର ସେନାପତି ସୈନ୍ୟଙ୍କ ସହ ପାଟଣାଗଡରେ ରାତିରେ ପହଞ୍ଚିଲେ । ସେ ଆଗରୁ ଶୁଣିଥିଲେ ଯେ ପାଟଣାର ଗଡ ଅତି ଉଚ୍ଚ ବୋଲି । ତେଣୁ ରାତ୍ରିର ଘନ ଅନ୍ଧକାର ମଧ୍ୟରେ ସେ ଭୂସାଗରର ଉଚ୍ଚ ହିଡକୁ ହିଁ ଏହା ଗଡ ମନେ କରି ଚତୁର୍ଦ୍ଦିଗ ଘେରି ଗଲେ ଏବଂ ଗୁଳିଚାଳନା ପାଇଁ ସେନାକୁ ଆଦେଶ ଦେଲେ । ସୈନ୍ୟମାନେ ରାତିସାରା ନିର୍ବିଘ୍ନରେ ଗୁଳି ଚଳାଇ ପ୍ରତ୍ୟୁତ୍ତରରେ କୌଣସି ଗୋଟିଏ ସୁଦ୍ଧା ଗୁଳି ନ ଆସିବାରୁ ତାଙ୍କର ବିଜୟ ହେଲା ବୋଲି ମନେମନେ ଭାବିନେଲେ । ଗଡକୁ ସେମାନେ ଦଖଲ କଲେ ବୋଲି ନିଶ୍ଚିତ ହୋଇଗଲେ । ସେମାନଙ୍କର ଭୂଲ ଧାରଣା ଥିଲା ଯେ ଗଡ ମଧ୍ୟରେ ସମସ୍ତ ସୈନ୍ୟ ଓ ରାଜ ପରିବାର ମୃତ୍ୟୁ ବରଣ କରିଛନ୍ତି । ସେ ଗଡକୁ ଅଧିକାର କଲେ ବୋଲି ଏକ ପ୍ରକାର ନିଶ୍ଚିତ ହେଲେ । ତେଣୁ ବିଜୟ ଉଲ୍ଲାସରେ ସେ ଆହୁରି ଆହୁରି ଗୁଳି ପ୍ରୟୋଗ କରିବାକୁ ଉତ୍ସାହିତ କଲେ । ରାତିସାରା ସୈନ୍ୟମାନେ ଗୁଳି ଚଳାଇ ଚାଲିଥିଲେ । କିନ୍ତୁ ପ୍ରଭାତ ସମୟରେ ସାମାନ୍ୟ ଉଦ୍ଭାସିତ ଆଲୋକରେ ସେନାପତିଙ୍କର ସନ୍ଦେହ ଜାତ ହେଲା ଏବଂ ପ୍ରଭାତର ସାମାନ୍ୟ ଝାପସା ଆଲୋକରେ ତାଙ୍କୁ ସଂପୂର୍ଣ୍ଣ ଜ୍ଞାତ ହେଲା ଯେ ତାଙ୍କର ମନେ କରିଥିବା ଗଡ ଟି ଏକ ବିଶାଳ ପୋଖରୀର ହିଡ ହିଁ ଥିଲା ବୋଲି ।

ସେନାପତି ଲଜ୍ଜିତ ହୋଇ ପଡିଲେ । ତା'ଙ୍କ ପାଖରେ ଥିବା ଗୁଳି ପ୍ରାୟ ସରି ସାରିଥିଲା ତେଣୁ ବାଧ ହୋଇ ପଳାୟନ ବ୍ୟତୀତ ଅନ୍ୟ କୌଣସି ଉପାୟ ସେ ଦେଖିଲେ ନାହିଁ । ସ୍ଥାନ ଛାଡି ବସ୍ତର ଅଭିମୁଖେ ପଳାୟନ ହିଁ ଏକମାତ୍ର ବିକଳ୍ପ ମନେ କରି ଯଥାଶୀଘ୍ର ସ୍ଥାନ ଛାଡିବାକୁ ଆଦେଶ ଦେଲେ ସେ । ଉଦ୍ଦେଶ୍ୟ ବୁଠିକୁଡେର ଜଙ୍ଗଲ ମଧ୍ୟରେ ଆତ୍ମଗୋପନ କରିବା ହିଁ ଥିଲା ।



ପ୍ରଭାତରେ ବୁଠିକୁଢେଇ ଜଙ୍ଗଲ ରାସ୍ତା ଦେଇ ବସ୍ତର ସୈନ୍ୟ ପଳାଉଥିବାର ପାଟଣା ରାଜା ଗୁପ୍ତଚରଙ୍କ ଠାରୁ ଶୁଣିବାକୁ ପାଇଲେ । ପାଟଣାର ପ୍ରାୟ ଅଧିକାଂଶ ବଡ ଗ୍ରାମରେ ଜଣେ ପ୍ରତିଭାଶାଳୀ ଧନୀବ୍ୟକ୍ତିଙ୍କ ଅଧିନରେ ଦଳେ ଦଳେ ସୈନ୍ୟ ରହୁଥିଲେ । ତେଣୁ କେନ୍ଦୁମୁଣିରେ ମଧ୍ୟ ଦଳେ ସୈନ୍ୟ ଗଡତ୍ୟାଙ୍କ ଅଧିନ ଥିଲେ । ରାଜାଙ୍କର ଆଦେଶ ପାଇ କେନ୍ଦୁମୁଣ୍ଡିର ଗଡତ୍ୟା ବସ୍ତରର ସୈନ୍ୟଙ୍କର ଅନୁସରଣ କଲେ । ବସ୍ତର ସୈନ୍ୟମାନେ ତାଙ୍କର ଅନୁସରଣ କରାଯାଉଥିବା ଜାଣିପାରି ବୁଠିକୁଢେଇ ଜଙ୍ଗଲ ମଧ୍ୟରେ ଆତ୍ମଗୋପନ କରିଥିବା ଅବସ୍ଥାରେ କେତେଜଣ ଗଡତ୍ୟାଙ୍କ ଗୁଳିରେ ମୃତ୍ୟୁବରଣ କଲେ । କିନ୍ତୁ ଅବଶିଷ୍ଟ ଦଳେ ସୈନ୍ୟ ଚତୁରତା ଓ ଧୈର୍ଯ୍ୟର ସହକାର ଜଙ୍ଗଲ ମଧ୍ୟରେ ଭୋକ ଉପାସରେ ଲୁଚି ରହିଲେ ।

ପ୍ରତିବର୍ଷ ଆଶ୍ୱିନ ଶୁକ୍ଳ ନବମୀ ତିଥିରେ ବୁଠି ବୁଢେଇ ସ୍ଥିତ ସାହାଡା ବୃକ୍ଷ ମୂଳରୁ ବନଦେବୀ (ପାଟଣେଶ୍ୱରୀ)ଙ୍କର ବଏଲ ହେଉଥିଲା । ଦେବୀ ସେହି ସ୍ଥାନରୁ ହିଁ ବରୁଆ ଦେହରେ ବିଜେ କରି ନାଚି ନାଚି ପାଟଣା ନଗର ମଧ୍ୟସ୍ଥ ରାଜାଙ୍କ ଗଡକୁ ପ୍ରବେଶ କରୁଥିଲେ । ନବମୀ ତିଥିରେ ବଏଲ ହୋଇ ଦେବୀ ପୁଣି ସ୍ୱସ୍ଥାନ (ବୁଠିକୁଢେର)କୁ ପ୍ରତ୍ୟାବର୍ତ୍ତନ କରୁଥିଲେ । ସଂଯୋଗକୁ ମର୍ମାହତ ଆତ୍ମଗୋପନକରୀ ସୈନ୍ୟମାନେ ଏକଥା ଜାଣି ବସ୍ତର ଦେବୀ ଅପହୃତା ହୋଇଥିବା ଓ ସେମାନେ ପାଟଣାର ଦେବୀଙ୍କୁ ମଧ୍ୟ ଅପହରଣ କରିନେଇ ପ୍ରତିଶୋଧ ନେବେ ଭାବି ପାଟଣେଶ୍ୱରୀ ବରୁଆ ଦେହରେ ବିଜେ କରି ନାଚି ନାଚି ଆସୁଥିବା ଅବସ୍ଥାରେ ଦେବୀଙ୍କର ମୁଣ୍ଡକୁ ଖଣ୍ଡାରେ ହାଣି ଉକ୍ତ ମୁଣ୍ଡକୁ ବସ୍ତର ନେଇ ପଳାୟନ କଲେ ।

ମୁଣ୍ଡକଟା ଯାଇଥିଲେ ମଧ୍ୟ ବରୁଆ (ଦେବୀ) ଅବରିବର୍ତ୍ତିତ ଅବିରାମ ଗମ୍ଭୀର ବାଦ୍ୟର ତାଳେ ତାଳେ ନାଚି ନାଚି ଗଡ ମଧ୍ୟସ୍ଥ ପାଟଣେଶ୍ୱରୀ ମନ୍ଦିର ପର୍ଯ୍ୟନ୍ତ ଆସିଥିଲେ ଓ ମନ୍ଦିର ପରିକ୍ରମା କରୁଥିବା ଅବସ୍ଥାରେ ଏକ ଚମ୍ପା ଗଛତଳେ ପଡିଗଲେ । ବରୁଆର ମୃତ୍ୟୁ ହେଲା । କିନ୍ତୁ ପାଟଣେଶ୍ୱରୀଙ୍କର ତାହା ଏକ ନୂତନ ରୂପ ହେଲା ଓ ତା'ର ନାମ ଚଂପାଚଲିଏନ୍ ହୋଇ ରହିଲା ।



ଏବେ ମଧ ପାଟଣେଶ୍ୱରୀ ଦେବୀ ମନ୍ଦିରର ଉତ୍ତର ପଶ୍ଚିମରେ ଥିବା ଚଂପାଗଛ ତଳେ ପୂଜା ପାଉଥିବା ଦେବୀ ଚଂପାତଲିଏନ୍ ଅଛନ୍ତି ।

ପାଟଣେଶ୍ୱରୀ ଦେବୀ ବିଜେ କରିଥିବା ବରୁଆର ମୁଣ୍ଡକାଟ ଘଟଣାରେ ପାଟଣା ରାଜା ମ୍ରିୟମାଣ ହୋଇ ପଡିଲେ ଏବଂ ଦେବୀଙ୍କ ସନ୍ତୁଷ୍ଟିର ବ୍ୟବସ୍ଥା ସ୍ୱରୂପ ପୂଜା ଆରଧନା କଲେ ଓ ସଫଳ ହେଲେ । ରାଜାଙ୍କର ଅନୁରୋଧ ଓ ପ୍ରବଳ ଆଗ୍ରହ ତଥା ଚରମ ପୂଜା ଅର୍ଚ୍ଚନା ସ୍ୱରୂପ ଦେବୀ ଗଡ ମଧସ୍ଥ ମନ୍ଦିରରୁ ହିଁ ବଏଲ ଯାତ୍ରାରେ ଯୋଗ ଦେବାର ଅଙ୍ଗୀକାର କଲେ ।

ଏବଂ-

ସେହି ଦିନଠାରୁ ପାଟଣେଶ୍ୱରୀଙ୍କର ବଏଲ ଗଡ ମଧସ୍ଥ ମନ୍ଦିର ମଧରୁ ହୋଇ ଆସୁଥିବାର ମନ୍ଦିର ପୂଜକଙ୍କର ପରଂପରା ର ଏକ ଅଂଶ ହୋଇଛି ବୋଲି କିଂବଦନ୍ତୀ କହେ । ତେଣୁ ୰ ରାମଚନ୍ଦ୍ର ମଲ୍ଲିକଙ୍କର କୋଶଳ ଇତିହାସ ଯେ କିମ୍ବଦନ୍ତୀର ଆଧାରକୁ ନେଇ ରଚିତ ହୋଇ ନଥିବ ଏକଥା କିଏ କହିବ ? ତେଣୁ ଦେବା ଦେବୀଙ୍କର କାହାଣୀ ଇତିହାସ କଥାବସ୍ତୁ ନ ହୋଇ କିମ୍ବଦନ୍ତୀ ପ୍ରସୂତ ଅଧିକ ହୋଇଥାଏ ଯାହାକି ପ୍ରତ୍ୟେକ ଭାରତୀୟ ଦେବାଦେବୀ ଭକ୍ତଙ୍କୁ ଖୁସି କରାଇଥାଏ । ତେବେ ବସ୍ତରେନ ଦେବୀଙ୍କର ଆଗମନ ଓ ପାଟଣେଶ୍ୱରୀଙ୍କ ଛିନ୍ନ ମସ୍ତକରୁ ଚମ୍ପାତଲିଏନ ଦେବୀଙ୍କର ନୂତନ ରୂପରେ ଆବିର୍ଭାବ ପାଟଣାଗଡ ବାସୀଙ୍କୁ ଶକ୍ତି ଆରାଧନାର ଅଧିକ ଖୋରାକ ଯୋଗାଇ ଥାଏ ନିଶ୍ଚୟ ।





# ସେମେଲତଳେନ ମାଁ ସମଲାଇ

ଷୋଡଶ ଶତାବ୍ଦୀର ମଧ୍ୟ ଭାଗରେ ପାଟଣା ରାଜ୍ୟରେ ଚୌହାନ ବଂଶର ରାଜା ନରସିଂହ ଦେବ ରାଜତ୍ୱ କରୁଥିଲେ । ସେ ଭାଇ ବଳରାମ ଦେବଙ୍କର ବୀରତ୍ୱରେ ଗୌରବାନ୍ୱିତ ଥିଲେ ଏବଂ ସାର୍ବଭୌମତ୍ୱ ଘୋଷଣା କରି ସ୍ୱାଧୀନ ରାଜା ହେଲେ । ବଳରାମଙ୍କର ବାହୁବଳ ଉପରେ ତାଙ୍କର ପ୍ରଗାଢ଼ ବିଶ୍ୱାସ ଓ ଭରସା ଥିଲା । ନରସିଂହ ଓ ବଳରାମ ରାମଲକ୍ଷ୍ମଣଙ୍କ ପରି ଅନନ୍ୟ ଥିଲେ । ବଳରାମ ଅବିବାହିତ ରହି ନରସିଂହଙ୍କର ରାଜ୍ୟ ବିସ୍ତାର ଓ ସେବାରେ ନିଜକୁ ନିୟୋଜିତ କରିଥିଲେ ।

ପାଟଣା ରାଣୀ ସେତେବେଳେ ଅନ୍ତଃସତ୍ୱା ଥିଲେ । ଶ୍ରାବଣ ମାସର ଅବିରାମ ବର୍ଷାବେଳେ ଓ ଆସନ୍ନପ୍ରସବା ରାଣୀଙ୍କର ପ୍ରସବ ବେଦନା ହେବାକୁଥିବା ବେଳେ ପାଟଣାରେ ଇନ୍ଦ୍ରଙ୍କର କୋପ ହେବାର ଅନୁମାନ ହେଲା । ଚଷ ଜମିର ହିଡ ସବୁ ବନ୍ୟା ଜଳରେ ବୁଡି ରହିଗଲା । ନଦୀ ଏବଂ ଧାନ ଖେତ ଏକାକାର ହୋଇଗଲା ବନ୍ୟା ଜଳରେ । ତଥାପି ବର୍ଷାର ପ୍ରକୋପ ଶାନ୍ତ ହେଲା ନାହିଁ । ଘରୁ ପଦାକୁ ବାହାରିବା ସମ୍ଭବ ନ ଥିଲା । ଗରିବଙ୍କର ଅନେକ ଘର ବର୍ଷାରେ ଭୂଷୁଡି ପଡିଥାଏ । ଗାଈଗୋରୁ ତିନିଦିନ ତିନିରାତି ବର୍ଷା ହେତୁ ଚରି ନ ପାରି ଭୋକରେ ଛଟପଟ ହେଲେ ।

ଠିକ୍ ଏତିକିବେଳେ ରାଣୀଙ୍କର ପ୍ରସବ ବେଦନା ଆରମ୍ଭ ହେଲା । ରାଜାଙ୍କର ଆଦେଶରେ ପାଟଣାର ସମସ୍ତ ଧାତ୍ରୀ ରାଣୀଙ୍କୁ ପ୍ରସବରେ ସହାୟତା କରି ବିଫଳ ହେଲେ । ରାଣୀ ପ୍ରସବବେଦନାରେ ବ୍ୟାକୁଳିତା ତିନିଦିନ ତିନିରାତି ରାଣୀଙ୍କର ପ୍ରସବ ବେଦନା ସହ ତାଳଦେଇ ବର୍ଷା ତା' ଗତିରେ ଚାଲିଥାଏ ।

ରାଜା ଚିନ୍ତାମଗ୍ନ ଓ ବ୍ୟାକୁଳ ହୋଇ ଗଲେ, ସେ ମନ୍ତ୍ରୀଙ୍କ ସହ ପରାମର୍ଶ କଲେ । ନଦୀ ଆରକୂଳ ବରପଦର ଗ୍ରାମରେ ଜଣେ ସଦକ୍ଷ ଧାଈ ରହୁଥିବାର



ସୂଚନା ଦେଲେ । ମନ୍ତ୍ରୀ ଆହୁରି କହିଲେ ଯେ, ଉକ୍ତ ସୁତରଣୀ ନାମ୍ନି ଧାଇ ଜଣେ ସଫଳ ପ୍ରସବ କାରିଣୀ ଥିଲା । ଜୀବନରେ ସେ କେବେ ହେଲେ ବିଫଳ ହୋଇ ନଥିବା ମନ୍ତ୍ରୀ କହିବାରୁ ରାଜା ନୈରାଶ୍ୟରେ ଚିନ୍ତାମଗ୍ନ ହୋଇ ଗଲେ । ପ୍ରତିକୂଳ ପାଗ ଓ ଅବସ୍ଥାକୁ ଦେଖି ଭାବିଲେ - କିଏ ଯିବ ନଦୀ ପାର ହୋଇ ବରପଦରକୁ ?କିଏ ବା ଆଣିବ ସୁତରଣୀକୁ ପ୍ରବଳ ବନ୍ୟାରେ ନଦୀ ପାରିକରି ?

କିନ୍ତୁ -

ପ୍ରତାପୀ ବଳରାମ ସୁତରଣୀ ବିଷୟରେ ଶୁଣି ରାଜାଙ୍କର ଅଲକ୍ଷ୍ୟରେ ନଦୀ ପାରିହୋଇ ବରପଦରୁ ଧାଇ ସୁତରଣୀକୁ ଆଣିବାର ମନେ ମନେ ସଂକଳ୍ପ ନେଲେ ଓ ସୁଯୋଗ ଅପେକ୍ଷାରେ ରହିଲେ । ସ୍ଥିରକଲେ, ରାତ୍ରି ଆଗମନର ଅବ୍ୟବହିତ ପୂର୍ବରୁ ସେ ନଦୀରେ ପହଁରି ବରପଦର ଯିବେ ଓ ସୁତରଣୀକୁ ପିଠିରେ ବୋହି ନେଇ ଆସିବେ । କିନ୍ତୁ ରାଜା ବଳରାମଙ୍କୁ ଡାକି ପରାମର୍ଶ କରୁ କରୁ ସନ୍ଧ୍ୟା ହେଲା । ତଥାପି ବଳରାମ ରାତ୍ରୀରେ ରାଜାଙ୍କ ଅଗୋଚରରେ ବାହାରି ପଡିଲେ ଏକାକୀ । ସେ ବନ୍ୟା ଜଳର ପରାକ୍ରମକୁ ଖାତିରି ନ କରି ନଦୀରେ ଡେଇଁପଡି ପହଁରି ପହଁରି ଆରକୂଳକୁ ଗଲେ ଏବଂ ବରପଦର ଯାଇ ଧାଇ ସୁତରଣୀଙ୍କୁ ବୁଝାଇ ସୁଝାଇ କୌଣସି ପ୍ରକାରେ ଆଣି ନଦୀପାର କରାଇଲେ ଓ ଅନ୍ତପୁରରେ ରାଣୀଙ୍କୁ ପ୍ରସବ କରାଇବା କାର୍ଯ୍ୟ ଧାତ୍ରୀ ଦ୍ୱାରା ସମ୍ପନ୍ନ କରାଇଲେ । ରାଣୀଙ୍କ ପ୍ରଥମ ପୁତ୍ର ର କୁଆଁ କୁଆଁ ରାବରେ ରାଜମହଲ ପ୍ରକମ୍ପିତ ହେଲା ବେଳକୁ ନରସିଂହ ଉତ୍‌ଫୁଲ୍ଲିତ ହେଲେ । ପରେ ବରପଦର ଯାଇ ଧାଇକୁ ବଳରାମ ହିଁ ଆଣି ନିଜର ଦୁଃସାହସ ପ୍ରଦର୍ଶନ କରିଥିବା କଥା ରାଜା ଅବଗତ ହେଲେ ଏବଂ ଅତ୍ୟନ୍ତ ପ୍ରୀତହୋଇ ତା'ର ପରଦିନ ବଳରାମ ପାହାଡର ପୂର୍ବ ଦିଗରେ ଅବସ୍ଥିତ ଥିବା ଜଙ୍ଗଲ ପରିବେଷ୍ଟିତ କେତେ ଖଣ୍ଡ ଗ୍ରାମର ରାଜା ହେବା ପାଇଁ ଆଦେଶ ଦେଲେ । ଭାତୃ ଭକ୍ତ ବଳରାମ ଅନିଚ୍ଛାସତ୍ତ୍ୱେ ରାଜି ହୋଇ ରାଜା ହେଲେ ।

ବଳରାମ ବନାଞ୍ଚଳର ରାଜାହୋଇ ପାହାଡର ଅନତି ଦୂରରେ ଏକ ଗଡ ନିର୍ମାଣ କଲେ ଏବଂ ତା'ର ନାମ ଦେଲେ ବଳରାମ ଗଡ ଯାହାକି ପରବର୍ତ୍ତୀ ଦିନରେ ଅପଭ୍ରଂଶ ହୋଇ ବଲାଙ୍ଗିର ହେଲା । ବର୍ତ୍ତମାନ ବଲାଙ୍ଗିର ହିଁ ଉକ୍ତ ବନ



ବେଷ୍ଟିତ ବଳରାମ ଗଡ଼୍ ଅଟେ। ବଳରାମ ଦିନ କୁ ଦିନ ପରାକ୍ରମୀ ହୋଇ ଉଠିଲେ । ସେ ଧିରେ ଧିରେ ନିଜ ରାଜ୍ୟ ସହ ପାର୍ଶ୍ୱବର୍ତ୍ତୀ ଗ୍ରାମ ଗୁଡ଼ିକୁ ମିଶାଇ ଚାଲିଲେ । ଶାସନର ସୁବ୍ୟବସ୍ଥା ପାଇଁ ସେ ପରେ ଏକ ନୂତନ ଗଡ ନିର୍ମାଣ କଲେ ଏବଂ ତା'ର ନାମ ହେଲା ବଡ଼ଗଡ଼ । ପରବର୍ତ୍ତୀ ସମୟରେ ଉକ୍ତ ବଡ଼ଗଡ଼ ବରଗଡ ନାମରେ ରୂପାନ୍ତରିତ ହେଲା । କାଳକ୍ରମେ ବଳଗଡ ବଳରାମଙ୍କର ରାଜ୍ୟର କେନ୍ଦ୍ରରେ ଅବସ୍ଥିତ ହେଲା । ତେଣୁ ସେ ନୂତନ ଗଡ ବଳଗଡରେ ରାଜଧାନୀ ସ୍ଥାପନ କଲେ । ଏହି ବଡ଼ଗଡ଼ ହିଁ ଆଧୁନିକ ବରଗଡ ଅଟେ ।

ବଳରାମ ଶିକାର ପ୍ରିୟ ଥିଲେ । ସେ କାର୍ଯ୍ୟବ୍ୟସ୍ତତା ମଧ୍ୟରେ ଥାଇ ବି ପାରିଧିରେ ଅନେକ ସମୟ ଅତିବାହିତ କରୁ ଥିଲେ । ଥରେ ସେ ମହାନଦୀ କୂଳକୁ ଶିକାର କରିଗଲେ । ପ୍ରଜାକୁଳ ମଧ ରାଜାଙ୍କୁ ସହାୟତା କରୁଥିଲେ କାରଣ ବଳରାମ ପ୍ରଜାବତ୍ସଳ ଥିଲେ ।

ଶିକାର ଖୋଜୁ ଖୋଜୁ ବଳରାମ କ୍ଳାନ୍ତ ହୋଇ ପଡିଲେ । ସେ କ୍ଳାନ୍ତ ଶ୍ରାନ୍ତ ଅବସ୍ଥାରେ ଏକ ଶିମୁଳି ଗଛ ନିକଟରେ ଉପସ୍ଥିତ ହେଲେ । ସଙ୍ଗରେ ମନ୍ତ୍ରୀ କେତେଜଣ ପାରିଷଦ ଓ ଶିକାରୀ କୁକୁର । ବଳରାମ ସର୍ବାଗ୍ରେ ଥିଲେ ମଧ କୁକୁରଟି ରାଜାଙ୍କର ଠିକ ଆଗେ ଆଗେ ଥାଏ । ହଠାତ୍ ଶିମୁଳି ବୃକ୍ଷ ନିକଟରୁ ଏକ ଶଶାଙ୍କ (ଖରା) ଦୌଡି ଆସିଲା ରାଜାଙ୍କ ସମ୍ମୁଖକୁ । ତାକୁ ଦେଖି ଶିକାରୀ କୁକୁର ମାଡିବସି ମାରିଦେବା କଥା । କିନ୍ତୁ ସାମାନ୍ୟ ଶଶାକୁ ଦେଖି ରାଜାଙ୍କର ଶିକାରୀ କୁକୁର ଲାଞ୍ଜକୁ ଜାକି ପଛଘୁଞ୍ଚା ଦେଲା । ଏହା ଦେଖି ସମସ୍ତେ ସ୍ତମ୍ଭୀଭୂତ ହେଲେ । ଭକ୍ଷକ ଭକ୍ଷକକୁ ଡ଼ରିବା ଆଶ୍ଚର୍ଯ୍ୟର କଥା ନିଶ୍ଚୟ ।

ରାଜଭକ୍ତିରେ ଅନ୍ଧ କେତେଜଣ ପ୍ରଜା ଶଶାକୁ ମାରିବାକୁ ଉଦ୍ୟତ ହେଲାରୁ ରାଜା ବାରଣ କଲେ ଓ କହିଲେ ଯେଉଁଠାରେ ଶିକାର ଶିକାରୀକୁ ଭୀତତ୍ରସ୍ତ କରିପାରେ ସେହି କ୍ଷେତ୍ରରେ ତାହା ଶିକାରୀର ଦୁର୍ବଳତା ନହୋଇ ମାଟି କିମ୍ବା ଶିକାରର ମହତ୍ୱ ଉପଲବ୍ଧ ହେବା ଉଚିତ୍ । ତେଣୁ ଶଶାକୁ ସାମାନ୍ୟ କ୍ଷୁଦ୍ର ଜୀବ ନମଣି ଉକ୍ତ ମାଟିକୁ ଏବଂ ଶଶାକୁ ରାଜା ବଳରାମ ପ୍ରାଧାନ୍ୟ ଦେଲେ । ସେ ଉକ୍ତ ସ୍ଥାନରେ ଆଉ ଶିକାର ନକରି ରାଜଧାନୀକୁ ପ୍ରତ୍ୟାବର୍ତ୍ତନ କଲେ ।



ରାତ୍ରୀରେ ଗଭୀର ନିଦ୍ରାରେ ରାଜାଙ୍କୁ ସ୍ୱପ୍ନାଦେଶ ହେଲା – 'ମୁଁ ଶାଶା ରୂପରେ ତୋର ବୁଦ୍ଧି ପରୀକ୍ଷା କରୁଥିଲି' । ପରୀକ୍ଷାରେ ତୁ ଉତ୍ତୀର୍ଣ୍ଣ ହେଲୁ, କାରଣ ତୁ ମୋତେ ଶଶା ରୂପରେ ସମ୍ମୁଖରେ ପାଇ ମଧ ନ ମାରିବାକୁ ଆଦେଶ ଦେଇ ମୋର ସତ୍ତାର ଉପଲବ୍ଧି କଲୁ । ତେଣୁ ମୁଁ ମୋର ଉପରେ ତୋ ଠାରେ ଥିବା ବିଶ୍ୱାସକୁ ଆଦର କରୁଛି ଏବଂ ତୋ'ଠାରେ ପ୍ରସନ୍ନ ହୋଇଛି । ତୁ ଯଦି ଚାହୁଁ, ମୁଁ ତୋର ଇଷ୍ଟ ଦେବୀ ହେବାକୁ ପ୍ରସ୍ତୁତ ଅଛି ।"

ରାଜା ବଳରାମ ଦେବୀଙ୍କ ପରିଚିତି ସ୍ୱପ୍ନରେ ମାଗିଥିଲେ । ଦେବୀ ନିଜର ପରିଚୟ ଦେବାକୁ ଯାଇ କହିଲେ, "ପାଟଣାର ପାଟଣେଶ୍ୱରୀ ଦେବୀ ମୋର ଜ୍ୟେଷ୍ଠା । ସେ ସମଗ୍ର ପାଟଣା ରାଜ୍ୟର ଅଧିଷ୍ଠାତ୍ରୀ ଦେବୀ । ମୁଁ ତା'ଙ୍କ ସାନ ଭଉଣୀ ଅଟେ, ବର୍ତ୍ତମାନ ମୁଁ ସେହି ଶିମୁଳି ବୃକ୍ଷ ମୂଳରେ ଅବସ୍ଥାନ କରୁଛି ଏବଂ ପଥିକଙ୍କର ଓ ଅନେକ ଶ୍ରଦ୍ଧାଳୁଙ୍କର ପୂଜା ଅର୍ଚ୍ଚନା ଗ୍ରହଣ କରୁଛି । ମୁଁ ବନଦୁର୍ଗା ଦକ୍ଷିଣ କାଳୀ ସ୍ୱରୂପିଣୀ ଦେବୀ ପାଟଣେଶ୍ୱରୀଙ୍କର କନିଷ୍ଠା ଓ ସହଚରୀ ଅଟେ । ମୁଁ ବନଦୁର୍ଗାଙ୍କର ଅନ୍ୟ ଏକ ରୂପ । ଶିମୁଳୀ ବୃକ୍ଷ ମୂଳରେ ପୂଜିତା ହେତୁ ମୁଁ ସେମେଲେଇ ନାମରେ ମଧ ପରିଚିତା । ମୁଁ ସାକ୍ଷାତ ଅନ୍ନପୂର୍ଣ୍ଣା ଅଟେ । ଦୁର୍ଗାଙ୍କର ମୁଖ୍ୟଚାରି ରୂପ ମଧରୁ ପାଟଣେଶ୍ୱରୀ କାଳୀ ଓ ମୁଁ ଲକ୍ଷ୍ମୀ ସ୍ୱରୂପା ।" ଏତିକି କହି ଦେବୀ ଅନ୍ତର୍ଦ୍ଧାନ ହେଲେ ।

ଏବଂ–

ରାଜା ବଳରାମ ଦେବୀକୃପା ଲାଭରେ କୃତ୍ୟ କୃତ୍ୟ ହୋଇ ନିଜ ଭାଗ୍ୟକୁ ପ୍ରଶଂସା ନ କରି ରହି ପାରିଲେ ନାହିଁ ।

ପରବର୍ତ୍ତୀ ସମୟରେ ରାଜା ମନ୍ତ୍ରୀ ଓ ରାଜ୍ୟର ଜ୍ଞାନୀ ଗୁଣୀ ଙ୍କ ସହ ପରାମର୍ଶ କଲେ ଏବଂ ସେମାନଙ୍କର ସୁଚିନ୍ତିତ ସୁଦୂର ପ୍ରସାରୀ ପରାମର୍ଶ କ୍ରମେ ମାଁ ସେମେଲେଇ ଙ୍କୁ ରାଜ୍ୟର ଅଧିଷ୍ଠାତ୍ରୀ ଦେବୀ ରୂପେ ସ୍ୱୀକାର କରିବାକୁ ଅଙ୍ଗୀକାର କଲେ ।

ରାଜା ମାଁ ସେମେଲେଇଙ୍କୁ ପୂଜା ଅର୍ଚ୍ଚନା ପାଇଁ ଶିମୂଳୀ ଗଛ ମୂଳକୁ ନିଜେ ଗଲେ । ଯଥା ବିଧି ରାଜ ଅର୍ଚ୍ଚନା ରେ ପ୍ରଜାକୁଳ ମଧ ସହୋଯାଗ କଲେ



ଏବଂ ସମଗ୍ର ମହାନଦୀ କୂଳସ୍ଥ ଉକ୍ତ ଶିମୂଳି ବୃକ୍ଷ ଥିବା ଜଙ୍ଗଲଟି ମୁଖରିତ ହୋଇଗଲା । ଦେବୀ ରାଜା ଏବଂ ପ୍ରଜାଙ୍କର ଆଗ୍ରହରେ ପ୍ରୀତ ହେଲେ ଏବଂ ପରବର୍ତ୍ତୀ ରଜନୀରେ ରାଜାଙ୍କୁ ସ୍ୱପ୍ନାଦେଶରେ ମହାନଦୀ କୂଳସ୍ଥ ଏକ ସୁରମ୍ୟ ସ୍ଥାନରେ ପୂଜା ପାଇବାକୁ ଅଭିଳାଷ ଘୋଷଣ କଲେ ।

କିନ୍ତୁ ଯେଉଁ ସ୍ଥାନଟି ଦେବୀଙ୍କ ଦ୍ୱାରା ନିରୂପିତ ହେଲା, ତାହା ପଡୋଶୀ ସୁର୍ଗୁଜା ରାଜ୍ୟର ଅଂଶ ବିଶେଷ ଥିଲା । ରାଜା ବଳରାମ ସୁର୍ଗୁଜା ରାଜାଙ୍କୁ ଉକ୍ତ ସ୍ଥାନଟି ଦେବୀଙ୍କର ମନ୍ଦିର ନିର୍ମାଣ କରିବାକୁ ମାଗିଲେ । କିନ୍ତୁ ସେ ତାହା ଦେବାକୁ ମନା କରି ଦେବାରୁ ବାଧ ହୋଇ ବଳରାମ ଦେବ ସୁର୍ଗୁଜା ରାଜ୍ୟକୁ ଆକ୍ରମଣ କଲେ । ଯୁଦ୍ଧରେ ସୁର୍ଗୁଜା ରାଜା ପରାସ୍ତ ହେଲେ ଏବଂ ବାଧ ହୋଇ ଅଭିପ୍ସିତ ଭୂମିଯୁକ୍ତ ଅଞ୍ଚଳ ସହ ରାଜ୍ୟର ଅଧା ଅଂଶ ଓ ତାଙ୍କର ଭଉଣୀକୁ ବଳରାମଙ୍କ ସହ ବିବାହ ଦେଇ ସନ୍ଧି କଲେ ।

ଏବଂ-

ସେହି ଦିନଠାରୁ ସର୍ଗୁଜା ରାଜ୍ୟର ଅଧା ଅର୍ଥାତ ମହାନଦୀର ଭବ୍ୟ ଅଞ୍ଚଳ ବରଗଡ ରାଜ୍ୟରେ ମିଶିଗଲା । ଶେଷରେ ବଳରାମ ସେମେଲେଇ ଦେବୀଙ୍କ ନିରୂପିତ ସ୍ଥାନରେ ଏକ ମନ୍ଦିର ନିର୍ମାଣ କରି ଦେବୀଙ୍କୁ ସ୍ଥାପନ କଲେ । କାଳକ୍ରମେ ମନ୍ଦିର କେନ୍ଦ୍ରିତ ସ୍ଥାନରେ ଏକ ସହର ପ୍ରତିଷ୍ଠା ହେଲା ଏବଂ ତା'ର ନାମ ସେମେଲେଇପୁର ହେଲା । ରାଜା ବଳରାମ ପରବର୍ତ୍ତୀ ସମୟରେ ଏଠାରେ ଏକ ଗଡ ମଧ ନିର୍ମାଣ କଲେ ଓ ରାଜଧାନୀକୁ ଏହି ସେମେଲେଇ ଗଡ ବା ସେମେଲେଇ ପୁରକୁ ସ୍ଥାନାନ୍ତରିତ କରିନେଲେ । ସେହି ସେମେଲେଇ ପୁର ହିଁ ଅପଭ୍ରଂଶିତ ହୋଇ ଆଧୁନିକ ସମ୍ବଲପୁର ହୋଇଛି ।





# ଦିବ୍ୟ ସୀମାରେଖା

ସେଦିନ ଚୈତ୍ର ଅମାବାସ୍ୟା ମଙ୍ଗଳବାର । ସଂକ୍ରାନ୍ତୀକୁ ସ୍ପର୍ଶ କରିଥାଏ ସୂର୍ଯ୍ୟସ୍ତ । ଏହି ସୂର୍ଯ୍ୟାସ୍ତର ରକ୍ତିମ ଆଭା ମାଁ ପାଟଣେଶ୍ୱରୀ ଦେବୀଙ୍କର ଦକ୍ଷିଣମୁଖା ମୁହଁରୁ ରକ୍ତଝରା ଜ୍ୟୋତି ଦେଉଥାଏ । ସିନ୍ଦୁର ବୋଳା ମୁଖ ମଣ୍ଡଳ ସମୀପରେ ଦେଦୀପ୍ୟମାନ ଖର୍ପରରୁ ଆଲୋକ ବିଚ୍ଛୁରିତ ହେଉଥାଏ ।

ମାଁ ପାଟଣେଶ୍ୱରୀ ଜ୍ୟେଷ୍ଠାର ଭୂମିକା ନିଭାଉଥାନ୍ତି । ଜ୍ୟେଷ୍ଠ ଭାରତୀୟ ସଂସ୍କୃତିରେ ଯୁଗେ ଯୁଗେ ଅଗ୍ରାସନର ଅଧିକାରୀ । ଭାରତୀୟ ସଂସ୍କୃତି ଓ ପରମ୍ପରାର ସୂତ୍ରଧରି ମାଁ ପାଟଣେଶ୍ୱରୀ ଚାରି ଭଉଣୀ ମଧ୍ୟରେ ନିଜକୁ ଜ୍ୟେଷ୍ଠା ସାବ୍ୟସ୍ତ କରୁଥାନ୍ତି ସେ ଦିନର ଆଗତପ୍ରାୟ ଯାମିନୀରେ ଗଡର ଉତ୍ତର ପଶ୍ଚିମ କୋଣରେ ।

ଗଡ ମଧ୍ୟସ୍ଥ ଏକ ନିଭୃତ ମୁକ୍ତାକାଶ ଥାଏ ଚାରିଦେବୀଙ୍କ ସଭାସ୍ଥଳୀ । ମାଁ ସମଲେଇ, ମାଁ ଦନ୍ତେଶ୍ୱରୀ ଓ ମାଁ ଦଶମତୀ ତିନିହେଁ ଜ୍ୟେଷ୍ଠା ପାଟଣେଶ୍ୱରୀଙ୍କ ମୁଖ ନିଃସୃତ ବାଣୀକୁ ଶିରୋଧାର୍ଯ୍ୟ କରିବାକୁ ଅଙ୍ଗୀକାର କରିସାରିବା ପରେ ମାଁ ପାଟଣେଶ୍ୱରୀଙ୍କ ମୁଖୁ ସ୍ୱତଃ ସ୍ଫୁରି ଉଠିଲା, 'ସମଲେଇ'! ତୁ ମୋର ସଦା ସହଚରୀ ଥିବୁ । ସମଗ୍ର କୋଶଳ ରାଜ୍ୟର ମୁଁ ଓ ତୁ ଅଗ୍ର ପୂଜ୍ୟା ବୋଲି ବିଦିତ। ଏହି ଆସନ ମଧ୍ୟ ଅଳଙ୍କୃତ ହୋଇ ସାରିଛି ଓ ଆମେ ପ୍ରତ୍ୟେକ ସ୍ଥଳରେ ବିରାଜିତା ମଧ୍ୟ ଅଟୁଁ । ତେଣୁ ସମଗ୍ର କୋଶଳରେ ସମସ୍ତ ପ୍ରଜାକୁଳ ଆମର ସନ୍ତାନ। ଦନ୍ତେଶ୍ୱରୀ ଓ ଦଶମତୀ ନବାଗତା ଅତିଥି ମଧ୍ୟ । ତଥାପି ତାଙ୍କୁ ଦେବ ଦାୟିତ୍ୱ ଅର୍ପଣ ସ୍ପୃହଣୀୟ ଅଟେ । ସେତକ କଲେ ..... ।

ମାଁ ସମଲେଇ ମୌନ ଓ ହସ ହସ ମୁହଁରେ ସ୍ୱୀକାରୋକ୍ତି ଦେଲେ । ତାଙ୍କ ସିନ୍ଦୁର ବୋଳା ମୁଖରାଜି ଜାଜ୍ୱଲ୍ୟମୟ ଖର୍ପରର ଆଭାରେ ସ୍ଫୁରି ଉଠୁଥିଲା। ମନ୍ଦ ମନ୍ଦ ହସ ଓ ମନ୍ଦାର ପଲାଶ ଆଭୂଷିତ ସମଲେଇଙ୍କ ସିନ୍ଦୁର ପ୍ରଲେପା ମୁଖମଣ୍ଡଳର ଶୋଭା ମାଁ ପାଟଣେଶ୍ୱରୀ ଦେଖି ପୁଲକି ଉଠିଲେ ବିଭୋରରେ ।



ନିଜର ସାନ ଭଉଣୀର ଦୈବୀମୂର୍ତ୍ତି ସୁଲଭ ବିଭୂଷଣରେ ସନ୍ତୋଷ ହୋଇ କହି ଉଠିଲେ 'ସମଲେଇ' ! ତୁ ହିଁ କହ - କୋଶଳଗଡରେ ଦଶମତୀର ସ୍ଥାନ କେଉଁଠି ? ଏହି କୋଶଳ ରାଜ୍ୟର କେଉଁ ଭାଗରେ ସେ ତା'ର କାର୍ଯ୍ୟ ସଂପାଦିବ ?

ସ୍ମିତ ହସରେ ମାଁ ସମଲେଇ କହି ଉଠିଲେ 'ଦଶମତୀ ଦଶଭୂଜା ଦୂର୍ଗାରୂପା । ତଥାପି ସେ ପାଟଣା ରାଜାଙ୍କର ଧନ ଭଣ୍ଡାରରର ରକ୍ଷାକର୍ତ୍ରୀ ଅଟେ । ସେ ଧନ ଭଣ୍ଡାରର ରକ୍ଷା ଦାୟୀତ୍ୱରେ ଥିବାରୁ ତା'ର ମୁହଁ ସର୍ବଦା ପଶ୍ଚିମକୁ ରହୁ ଏବଂ ସେ ଖମାର ମଧ୍ୟରେ ହିଁ ଜଗି ରହନ୍ତୁ । ତାଙ୍କର ତାହାହିଁ ଦାୟିତ୍ୱ ଓ କର୍ତ୍ତବ୍ୟ ମଧ୍ୟ । ସେ ନିଜ ସ୍ଥାନରେ ଅଟଳ ରୁହନ୍ତୁ ଓ ଆଶ୍ୱିନ ଶୁକ୍ଳ ନବମୀ ଦିନ ଆମେ ଦୁହେଁ ଆସି ତାଙ୍କଠାରେ ବାର୍ତ୍ତାଳାପ କରିଯିବା ।

ମାଁସମଲେଇଙ୍କର ଏତାଦୃଶ ପ୍ରସ୍ତାବ କୁ ମାଁ ପାଟଣେଶ୍ୱରୀ ସ୍ମିତ ହସରେ ସମର୍ଥନ କଲେ । ବଡ ଭଉଣୀଙ୍କର ସମର୍ଥନରେ ନିଜର ପ୍ରସ୍ତାବକୁ ଯଥାର୍ଥ ବୋଲି ସେ ବୋଧ କଲେ । ପାଟନେଶ୍ୱରୀଙ୍କଠାରେ କୃତଜ୍ଞତା ପ୍ରକାଶ କରି ପ୍ରଶ୍ନବାଚୀ ଭଙ୍ଗୀରେ ମାଁ ଦନ୍ତେଶ୍ୱରୀ ଆଡେ ଇଙ୍ଗିତ କରି ବାଙ୍କ ଚହାଣୀରେ ଅନାଇଲେ ମାଁ ସମଲେଇ ।

ପାଟଣେଶ୍ୱରୀଙ୍କ କହିବା ପୂର୍ବରୁ ମାଁ ଦନ୍ତେଶ୍ୱରୀ କହିଲେ, "ବସ୍ତରାଜ ଦେବଙ୍କ ଆହ୍ୱାନ କ୍ରମେ ମୁଁ ବସ୍ତରରୁ ଆସି ପାଟଣାଗଡରେ ଅବସ୍ଥାନ କରୁଛି । ସେ ପ୍ରତିଶ୍ରୁତି ବଦ୍ଧ ଯେ ପ୍ରତ୍ୟେକ ଗ୍ରାମରେ ଗ୍ରାମଦେବୀ ରୂପେ ମୋତେ ପୂଜା କରିବେ । ତଥାପି ଏହି ନଗର ମଧ୍ୟରେ ମୋର ମଧ କିଛି ଦାୟିତ୍ୱ ଅଛି । ତୁମମାନଙ୍କର ସାହଚର୍ଯ୍ୟ ଲାଭକରି ବାସ୍ତବିକ ମୁଁ ଆନନ୍ଦିତା ଅଟେଁ । ବସ୍ତରରେ ଏକାକିନୀ ରହି ଯେଉଁ ଅସହାୟତା ଅନୁଭବ କରୁଥିଲି, ତୁମେ ତାହାଦୂର କରିଛ । ଏଠାରେ ସର୍ବମୟୀ କର୍ତ୍ତ୍ରୀଥିଲେ ମଧ ତୁମମନଙ୍କର ସାନ୍ନିଧ ମୋତେ ପ୍ରୀତ କରୁଛି । କିନ୍ତୁ ଏଠାରେ ମୋର ସେପରି କିଛି ପ୍ରାଧାନ୍ୟ କଳ୍ପନା କରୁନଥିଲେ ମଧ ମୋର ଆତ୍ମ ମର୍ଯ୍ୟାଦା ଏକାନ୍ତ କାମ୍ୟ ଅଟେ । ମୋର ନଗର ମଧ୍ୟରେ ମଧ ବିଚରଣର ସୀମା ନିର୍ଦ୍ଧାରଣ କରାଗଲେ .........।



ଦନ୍ତେଶ୍ୱରୀଙ୍କ ଇଙ୍ଗିତକୁ ମାଁ ପାଟଣେଶ୍ୱରୀ ହୃଦୟଙ୍ଗମ କଲେ ଓ କହିଲେ, "ଦନ୍ତେଶ୍ୱରୀ ମୁଁ ଦକ୍ଷିଣକାଳୀ ରୂପେ ପୂଜିତା । ତୁମେ ମଧ୍ୟ ବସ୍ତରରେ ଏହି ରୂପରେ ପୂଜା ପାଉଥିଲ । ତେଣୁ ଭେଦା ଭେଦରହିତ ଆମେ ଦୁହେଁ ସଦା ଦକ୍ଷିଣ ମୁଖା ଥିବୁ । ସ୍ଥାନ ବିଶେଷରେ ମାନବ କଳ୍ପନା ମାତ୍ରରେ ଆମର ଭିନ୍ନତା ଅଛି ମାତ୍ର । ତେଣୁ ମୋର ସ୍ୱାତନ୍ତ୍ରତାର ଶ୍ରେୟ ଓ ତୁମର ଆତ୍ମମର୍ଯ୍ୟାଦାର ପରାକାଷ୍ଠା ଯୁଗପତ୍ ରହୁ । ତୁମେ ଆନୀତା ହେତୁ ତୁମର ମର୍ଯ୍ୟାଦା କୋଶଳବାସୀ ନିଶ୍ଚୟ ଦେବେ । ତାହା ଅନିବାର୍ଯ୍ୟ ମଧ୍ୟ । ତେଣୁ ହେ ଦନ୍ତେଶ୍ୱରୀ ! ତୁମେ ନବ ଭୂଜାଯୁକ୍ତା ବିରଳ ଦେବୀ ଅଟ । ତୁମେ ଏହି ପାଟଣା ରାଜ୍ୟରେ ଗ୍ରାମେ ଗ୍ରାମେ ପୂଜିତା ହୋଇ ମଧ୍ୟ ଏହି କୋଶଳଗଡ ନଗରରେ ସଂପୂର୍ଣ୍ଣ ଅଧିଷ୍ଠାତ୍ରୀ ଅଟ । ତୁମ ସ୍ୱାଧିନ ଭାବେ ସମଗ୍ର ନଗର ମଧ୍ୟରେ ନିରଙ୍କୁଶ ଅଧିଷ୍ଠାନ କରି ସମସ୍ତ ଅଞ୍ଚଳରେ ପୂର୍ଣ୍ଣ ବିଚରଣ କରିପାରିବ । ତୁମେ ତେଣୁ 'ନଗରିଏନ' ନାମ ଧରି ନଗରର ଅଧିଷ୍ଠାତ୍ରୀ ହୋଇ ରୁହ, ପୂର୍ଣ୍ଣ ଓ ସ୍ୱାଧିନ ବିଚରଣ କର ।

ଦନ୍ତେଶ୍ୱରୀ, କିନ୍ତୁ କହି ଉଠିଲେ ମୁଁ ନବଭୂଜା ହେତୁ ମାତ୍ର ନଅଗୋଟି ଘରେ ପୂଜା ପାଇବି । ତେଣୁ ସମଗ୍ର ନଗର ପରିକ୍ରମା ନକରି ତୁମେ ବିଚରଣ କରୁଥିବା ସୀମା ଛାଡି ଏହି ନଗରର ଉତ୍ତର ପଶ୍ଚିମ କୋଣରେ ହିଁ ନଅଗୋଟି ଘରୁ ମୋର ନଅଗୋଟି ଭୂଜରେ ପୂଜା ଅର୍ଘ୍ୟ ଗ୍ରହଣ କରି ନଗରିଏନ ବା ନଘରିଏନ ଦେବୀ ରୂପେ ସ୍ଥିତ ହେବି ।" ଦନ୍ତେଶ୍ୱରୀଙ୍କ ଅଭିଳାଷ ଯଥାର୍ଥ ଥିଲା, ବଡମାନଙ୍କ ଦ୍ୱାରା ସ୍ୱୀକୃତି ପାଇଲା ।

ତେବେ ମାଁ ସମଲେଇ କହି ଉଠିଲେ, "ଦନ୍ତେଶ୍ୱରୀ ! ତୁମର ନଅଗୋଟି ଭୁଜ ନବ ଦୁର୍ଗାଙ୍କର ରୂପର ପ୍ରତୀକ ହେତୁ ଓ ନବ ଦୁର୍ଗାଙ୍କର ନଅଗୋଟି ଅସ୍ତ୍ର ତୁମର ନଅ ହସ୍ତରେ ଧାରଣ କରିଥିବା ହେତୁ ତୁମେ ସମସ୍ତଙ୍କର ଆଦୃତ ହୁଅ । ହଁ, ଯେହେତୁ କୋଶଳଗଡର ବାହ୍ୟ ଖାଇରେ ଶତ୍ରୁ ଭୟ ଦୂର ପାଇଁ ମଗର ରହିଛି, ତୁମେ ମଗର ବାହାନ କରି ନଗର ରକ୍ଷାର ଭାର ନିଅ । ନଗର ମଧ୍ୟରେ ନବ ଦୁର୍ଗାଙ୍କର ନଅ ରୂପରେ ମଧ୍ୟ ବିରାଜ ।"






"ମାଁ ପାଟଣେଶ୍ୱରୀ କହିଲେ, "ମୁଁ ଓ ମାଁ ସମଲେଇ ସମଗ୍ର ରାଜ୍ୟର ଦେବୀ ହୋଇ ଥିଲେ ମଧ ଆମେ ଏହି ନଗର ପରିକ୍ରମା ସମୟରେ ଦନ୍ତେଶ୍ୱରୀରଅଧିକାର ଭୁକ୍ତ ସୀମାରେଖା ଇଘନ କରିବୁ ନାହିଁ ଏବଂ ତୁମେ ମଧ ବିଚରଣ କ୍ଷେତ୍ର ଗତ ମଧକୁ ପ୍ରବେଶ କରିବା ଉଚିତ୍ ହେବ ନାହିଁ । ଏହିପରି ପରସ୍ପର କୁହା କୁହି ହେଲେ ଦେବୀ ମାଁ ପାଟଣେଶ୍ୱରୀ ଓ ମାଁ ଦନ୍ତେଶ୍ୱରୀ ଦୁହେଁ ।

ସେ ଦିନ ମାଁ ପାଟଣେଶ୍ୱରୀ, ମାଁ ସମଲେଇ, ମାଁ ଦନ୍ତେଶ୍ୱରୀ ଓ ମାଁ ଦଶମତୀ ନିଜ ନିଜର ଅବସ୍ଥାନ ଓ ବିଚରଣର ସୀମା ନିର୍ଦ୍ଧାରଣ କରି ଅଙ୍ଗୀକାର କଲା ପରେ ନିଜ ନିଜ ଅଧିଷ୍ଠାନକୁ ପ୍ରତ୍ୟାବର୍ତ୍ତନ କଲେ ।

ସୁତରାଂ ଗଣତନ୍ତ୍ର ପଦ୍ଧତି ଓ ସର୍ବସମ୍ମତି କ୍ରମେ ଦେବୀଗଣ କୋଶଳଗଡ ବା ପାଟଣାଗଡ ବା ବିକ୍ରମଗଡରେ ନିଜ ନିଜର ବିଚରଣ ସୀମାରେଖା ଟାଣି ଅଦ୍ୟାବଧି ତାହା ପାଳନ କରି ଆସୁଥିବାର ଦେଖାଯାଏ । ମାଁ ଦନ୍ତେଶ୍ୱରୀ ଓ ମାଁ ଦଶମତୀ ଙ୍କୁ ମାଁ ପାଟଣେଶ୍ୱରୀ ସଶ୍ରଦ୍ଧେ ସସମ୍ମାନେ ଯଥାମାନ୍ୟ ହେଉଥିବା ଛତ୍ରେ ଛତ୍ରେ ମାଁ ସମଲେଇ ସହଯୋଗ କରିନ୍ତି ଓ ଏହି ଦେବୀ ଦ୍ୱୟ ସମସ୍ତଙ୍କର ଶ୍ରଦ୍ଧାଭାଜନ ହୁଅନ୍ତି ।





# ସେଠିଆ ଗୁରୁ

ଚୌହାନ ବଂଶର ଜଣେ ରାଜା ଭୂପାଳ ଚନ୍ଦ୍ର ଦେବ ୧୮୨୦ ଖ୍ରୀଷ୍ଟାବ୍ଦରୁ ୧୮୪୮ ପର୍ଯ୍ୟନ୍ତ ପାଟଣା ରାଜସିଂହାସନାରୂଢ଼ ଥିଲେ । ତାଙ୍କରି ରାଜତ୍ୱ ସମୟରେ ଶତାବ୍ଦୀ ଶତାବ୍ଦୀ ଧରି ମଉଳି ଯାଇଥିବା ତନ୍ତ୍ର ମନ୍ତ୍ର ପୁନର୍ଜ୍ଜୀବିତ ହୋଇ ଉଠିଥିଲା । ଏହି ଘଟଣା ଟି ଯଦିଓ ଇତିହାସର ସ୍ୱୀକୃତି ପାଇନାହିଁ, ତଥାପି ତାଙ୍କ ବଂଶଧରମାନେ ଓ ବିଭିନ୍ନ କିମ୍ବଦନ୍ତୀ ଆଧାରରେ ଏବଂ ବିଶେଷ କରି ଗୁଣିଆମାନଙ୍କ ମୁଖରୁ ଯାହା ଜଣାପଡେ, ସେଠିଆ ଗୁରୁ ନାମଧେୟ ବ୍ୟକ୍ତିଙ୍କ ତାନ୍ତ୍ରିକ ଓ ମନ୍ତ୍ର ଜନିତ ବ୍ୟକ୍ତିତ୍ୱ ଗାଥା ଏବେବି ପ୍ରତ୍ୟେକ ଗୁଣିଆର ମୁହଁରେ ଗୁରୁ ରୂପରେ ଧ୍ୱନିତ ହୁଏ । ସେହି ମହାନ ସାଧକ ପାଟଣାଗଡର ଉପକଣ୍ଠ ସ୍ଥିତ ରାମପୁରଠାରେ ଜନ୍ମଗ୍ରହଣ କରି ସମଗ୍ର ପାଟଣା ରାଜ୍ୟରେ ମନ୍ତ୍ରର ଲହରୀ ପ୍ରସାରିତ କରୁଥିଲେ । ଏବେ ମଧ ତାଙ୍କର ପଣନାତି ଜୀବିତ ଅଛନ୍ତି ଓ ସେଠିଆଙ୍କୁ ସେମାନେ ଦେବତା ରୂପେ ପୂଜା କରୁଛନ୍ତି ।

ଆଧୁନିକ ବୈଜ୍ଞାନିକ ଯୁଗରେ ତାଙ୍କ କୃତ କାର୍ଯ୍ୟାବଳୀକୁ ବିଶ୍ୱାସର ପ୍ରଶ୍ନବାଚୀ ମଣ୍ଡଳ ମଧରେ ରଖୁଥିଲେ ମଧ ତାଙ୍କ ବଂଶଧର, ଗୁଣିଆ ଓ କିମ୍ବଦନ୍ତୀ ଦୃଢତାର ସହ ତାଙ୍କୁ ପ୍ରଶଂସା କରି ଥଲେ । ଛ'କୋଉ (୧୨୦) ବନ୍ଧ ଓ ନ'କଉ (୧୮୦) ଆମ୍ବ ତୋଟାର ସୃଷ୍ଟି ସହ ସେ ଘନିଷ୍ଠ ଭାବେ ସଂଶ୍ଳିଷ୍ଟ ଥିଲେ ବୋଲି କୁହାଯାଏ । ଅନେକ ସ୍ଥାନରୁ ସେ ବନ୍ଧକୁ ଜିଣିକରି ଆଣୁଥିଲେ ଏବଂ ତାକୁ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ସ୍ଥାପନ କରିବାକୁ ରାଜାଙ୍କ ଅନୁମତି ଭିକ୍ଷା କରୁଥିଲେ । ରାମପୁରର ଅଡକଟା ତାଙ୍କର ବିଜିତ ବନ୍ଧ ଅଟେ ଯାହାକି ସ୍ଥାପନ ସମୟରେ ସାମନାର ଆଡ ହେଲା ଓ ଏଇଥିପାଇଁ ରାମପୁରର ଅନ୍ୟନାମ ଅଡକଟା ମଧ ହେଲା । ରାଜା ଜମି ଦେଉଥିଲେ ଏବଂ ବିଜିତ ବନ୍ଧକୁ ଆଣି ସ୍ଥାପନ କରିବା ଦ୍ୱାରା ବିନା ପରିଶ୍ରମରେ ବନ୍ଧ ଖୋଦିତ ହେଉଥିଲା ।



ସେଠିଆ ଗୁରୁ କାଉଁରୀ କାମଚଣ୍ଡୀଙ୍କର ସେବକ ଥିଲେ । ସେ ପ୍ରତ୍ୟହ ବ୍ରାହ୍ମ୍ୟ ମୁହୁର୍ତ୍ତର ବହୁ ପୂର୍ବରୁ ରାମପୁରସ୍ଥିତ କଟାର ପୂର୍ବ ଦିଗସ୍ଥ କୁଦୁଲିକୁ ଯାଇ ହଟଯୋଗ କରି ସାଧନା କରୁଥିଲେ । ସାଧନାରେ ସେ ଏତେ ସିଦ୍ଧହସ୍ତ ଥିଲେ ଯେ ଭୂମିଠାରୁ ସାତଆଙ୍ଗୁଳି ଉଚ୍ଚତା ମାପରେ ଶୂନ୍ୟରେ ବସି କାମଚଣ୍ଡୀଙ୍କୁ ଧ୍ୟାନ କରୁଥିଲେ । ବ୍ରାହ୍ମ୍ୟ ମୁହୂର୍ତ୍ତ ବେଳକୁ ତାଙ୍କର ନିତ୍ୟକର୍ମ ସବୁ ସରିଯାଉଥାଏ । ସେ ନିଷ୍ଠାପର ଥିଲେ । କାହାରି ଘରେ ଖାଉ ନଥିଲେ । ନିରାମିଷାଶୀ ସେଠିଆଗୁରୁ ସାତ୍ତ୍ୱିକ ଭୋଜନ କରୁଥିଲେ । ସେଠିଆ ଗୁରୁଙ୍କର ପ୍ରଶଂସା ଶୁଣି ପାଟଣା ମାହାରାଜ ଭୂପାଳଚନ୍ଦ୍ର ଦେବ ତାଙ୍କୁ ରାଜପ୍ରସାଦକୁ ଡକାଇ ଗୁରୁ ବୋଲି ମାନିଲେ । ତେଣୁ ସମଗ୍ର ପାଟଣାଗଡରେ ତାଙ୍କୁ ସମସ୍ତ ପ୍ରଜା ଗୁରୁ ରୂପେ ସ୍ୱୀକାର କଲେ । ଫଳରେ ରାଜା ଏବଂ ରାଜ୍ୟର ସମସ୍ତ ପ୍ରଜାଙ୍କ ହୃଦୟରେ ସେ ଆଉ ହରିଜନ ସଂପ୍ରଦାୟର ବ୍ୟକ୍ତି ହୋଇ ରହିଲେ ନାହିଁ । ରାଜପ୍ରାସାଦରେ ତାଙ୍କର ଅବାଧ ପ୍ରବେଶ ର ବନ୍ଦୋବସ୍ତ ମଧ୍ୟ ଥିଲା । ରାଜ୍ୟ ମଧ୍ୟରେ ଥିବା ସମସ୍ତ ଗୁଣିଆ ତାଙ୍କୁ ଗୁରୁ ରୂପେ ସ୍ୱୀକାର କଲେ । ସେ ଏତେ ସିଦ୍ଧ ପୁରୁଷ ହୋଇ ଉଠିଲେ ଯେ ଅନେକ ମନ୍ତ୍ରରେ ତାଙ୍କର ଆଜ୍ଞା ଅଛି ବୋଲି ମନ୍ତ୍ରିତ କରାଗଲା । ଏବେ ମଧ୍ୟ ସେହି ସବୁ ମନ୍ତ୍ର ଅଛି ଏବଂ ତାଙ୍କର ଆଜ୍ଞାରେ ସେସବୁ ପରିଚ୍ଛଳିତ ହେଉଛି । ସେ ମନ୍ତ୍ରଶକ୍ତିର ସଂପୂର୍ଣ୍ଣ ଅଧିକାରୀ ଥିଲେ ବୋଲି କୁହାଯାଏ ।

ସେଠିଆଗୁରୁଙ୍କର ସୁନାମ ଦେଶ ଦେଶାନ୍ତରେ ପ୍ରସାରିତ ହେଲା । ଥରେ ଛତିଶଗଡର ଉତ୍ତରାଞ୍ଚଳର ଜନୈକ ବ୍ରାହ୍ମଣ ସାଧକ ସେଠିଆଗୁରୁଙ୍କୁ ପରୀକ୍ଷା କରିବାପାଇଁ ପାଟଣାରାଜ୍ୟକୁ ଆସିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା - ସେଠିଆଗୁରୁଙ୍କୁ ପରୀକ୍ଷାରେ ପରାସ୍ତ କରି ତାଙ୍କର ଦୁର୍ନାମ କରିବା ଓ ଶ୍ରୀହୀନ କରିବା । ତେଣୁ ସେ ପଚାରି ପଚାରି ସେଠିଆ ଗୁରୁଙ୍କ ଘର ପର୍ଯ୍ୟନ୍ତ ଆସିଲେ । ସେତେବେଳେ ସେଠିଆଗୁରୁ ଘରେ ଅନୁପସ୍ଥିତ ଥିଲେ, ତାଙ୍କ ସ୍ତ୍ରୀ ଥିଲେ । ସାଧକ ବ୍ରାହ୍ମଣ ସେଠିଆଗୁରୁଙ୍କ ନାମଧରି ଡାକିଲେ ଓ ତାଙ୍କ ସ୍ତ୍ରୀ ବାହାରି ସେ ଘରେ ନାହାନ୍ତି ବୋଲି କହିଲେ । ସାଧକ କିଛି ସମୟ ମୌନ ହୋଇ କାହାଲି ପାଇଁ କିଛି ନିଆଁ (ଅଂଘରା) ମାଗିଲେ । ସେଠିଆଗୁରୁଙ୍କ ସ୍ତ୍ରୀ ଘରୁ ଗୋଟିଏ ଲୁହାଟଚୁରେ କିଛି ନିଆଁ ଆଣି ତଳେ ଥୋଇଦେଲେ । ଏହା ଦେଖି ସାଧକ ନିଜ ପିନ୍ଧିଥିବା ଧୋତିର



କାନି ପସାରି ସେଥିରେ ଉକ୍ତ ନିଆଁ ଦେବାକୁ କହିଲେ । ସେଠିଆଙ୍କ ପତ୍ନୀ କିଛି ସମୟ ଭାବିଲେ ଓ ଜଣେ ସାଧକର ପତ୍ନୀ ହିସାବରେ ନିଜର ଦୁର୍ବଳତା କାଳେ ପ୍ରଦର୍ଶନ ହେବ ଭାବି ସାଧକ ପାତିଥିବା ଧୋତି କାନିରେ ଚଟୁର ନିଆଁ ଅଁଘରା ଢ଼ାଳି ଦେଲେ । କିନ୍ତୁ ସାଧକର ଧୋତି ନିଆଁରେ ପୋଡିଲା ନାହିଁ ,ବରଂ ସେ ତାକୁ ଏକ ବୁକୁଛ କରି ବୋହି ବେପରୁଆ ଭାବେ ଚାଲିଗଲେ । ସେଠିଆଗୁରୁଙ୍କ ପତ୍ନୀ ଏତାଦୃଶ ଘଟଣାରେ ସ୍ତମ୍ଭୀଭୂତ ହେଲେ ଓ ପତିଙ୍କ ଆସିବା ବାଟକୁ ଅନାଇ ବସିଲେ । କିଛି ସମୟପରେ ସେଠିଆଗୁରୁ ଘରକୁ ଆସିଲା ମାତ୍ରେ ପତ୍ନୀଙ୍କ ଠାରୁ ଏହି ଘଟଣା ଶୁଣି ସଙ୍ଗେ ସଙ୍ଗେ ଉକ୍ତ ସାଧକଙ୍କୁ ଖୋଜିବା ପାଇଁ ବାହାରିଲେ । ସେ ତାଙ୍କୁ  ନଦୀ ନିକଟରେ ଭେଟିଲେ ଓ ପରିଚୟ ପାଇ ନିଜ ପରିଚୟ ଦଲା ପରେ ଘରକୁ ଡାକିନେଲେ ।

ଉଭୟେ ସେଠିଆ ଓ ସାଧକ ପହଞ୍ଚିଲା ପରେ ଯଥାବିଧି ସତ୍କାର କଲେ ଓ ସେଠିଆ ଗୁରୁ ପୁଣି ଚଟୁରେ ଅଂଘରା ଆଣି ଉକ୍ତ ସାଧକଙ୍କୁ ଧୋତି କାନିରେ ବାନ୍ଧିବାକୁ କହିଲେ । ସାଧକ ବିନା ଦ୍ୱିଧାରେ ତାହା କାନିପାରି କୋଳରେ ଧରିବା ମାତ୍ରେ ତାଙ୍କ ଧୋତି ଜଳିଗଲା ଓ ପ୍ରଜ୍ୱଳିତ ଅଗ୍ନି ତାଣ୍ଡବ ରୂପ ଧରି ତାଙ୍କର ସର୍ବାଙ୍ଗକୁ ଜଳାଇ ଦେଲା । ବିଚରା ସାଧକ ବିକଳରେ କାନ୍ଦି ଚିତ୍କାର କଲେ ଓ ରକ୍ଷା କରିବାକୁ ସେଠିଆଗୁରୁଙ୍କୁ ଅନୁରୋଧ କଲେ । ସେ ତାଙ୍କୁ ଗୁରୁ ରୂପେ ସ୍ୱୀକାର କରିବାକୁ ଅଙ୍ଗୀକାର କଲେ ।ସେଠିଆଗୁରୁ ସଦୟ ହୋଇ ପୁଣି କେଉଁ ଏକ ମନ୍ତ୍ର ଉଚ୍ଚାରଣ କରି ତାଙ୍କର ପୂର୍ବ ଚେହେରା ଓ ଅକ୍ଷୁର୍ଣ୍ଣ ଧୋତି ଦେଇ ସ୍ତମ୍ଭିଭୁତ କରି ଦେଇଥିଲେ । ପରୀକ୍ଷାରେ ପରାଜିତ ହୋଇ ବ୍ରାହ୍ମଣ ସେଠିଆଗୁରୁଙ୍କ ପାଦ ତଳେ ପଡି ତାଙ୍କର ଶିଷ୍ୟତ୍ୱ ଗ୍ରହଣକଲେ । ସେହି ଦିନଠାରୁ ଛତିଶଗଡ ଆଦି ସମସ୍ତ ପଡୋଶୀ ରାଜ୍ୟରେ ସେଠିଆ ଗୁରୁଙ୍କୁ ଗୁରୁ ରୂପେ ସମଗ୍ର ସାଧକ ସ୍ୱୀକାର କରିନେଲେ । ତାଙ୍କ ଖ୍ୟାତି ସମସ୍ତ କୋଶଲାଞ୍ଚଳରେ ପ୍ରଚାରିତ ହେଲା ମଧ୍ୟ ।

ଆପଣମାନେ ଶୁଣିଥିବେ ଯେ ପଦ୍ମାବତୀ ରାଣୀ ନାମ ଉଚ୍ଚାରଣ ପରି ସେଠିଆ ଗୁରୁଙ୍କ ନାମକୁ ମଧ୍ୟ ସାପୁଆକେଳାମାନେ ଉଚ୍ଚାରଣ କରନ୍ତି । ଥରେ ଜଣେ ସାପୁଆକେଳା କେତେକ ସାପ ଆଣି ରାମପୁରଠାରେ ଖେଳାଉଥାଏ ଓ ନିଜର ବାହାଦୁରୀ କଥା ସବୁ କହି ଚାଲିଥାଏ । ସେଠିଆ ଗୁରୁ ଦର୍ଶକଙ୍କ ମଧ୍ୟରେ ଉପସ୍ଥିତ



ଥିଲେ ଓ ସାପ ଦେଖୁଥିଲେ । ବାହାଦୁରୀ କଥାରେ ସେ ଅତିଷ୍ଠ ହେଲେ ଏବଂ ଅବଶିଷ୍ଟ ପେଡିରସାପକୁ ମନ୍ତ୍ର ବଳରେ ଉଡାଇନେଇ ଗଛ ଉପରେ ସ୍ଥାପନ କଲେ । ସାପ ଗୁଡିକ ଗଛଉପରେ ତନ୍ମୟ ହୋଇ ଖେଳୁ ଥିଲେ । ଯେତେବେଳେ କେଳା ଅବଶିଷ୍ଟ ପେଡି ଖୋଲି ପ୍ରଦର୍ଶନ କଲା, ସେଥିରେ ସାପ ନଥିବାରୁ ଆଶ୍ଚର୍ଯ୍ୟ, ଦୁଃଖିତ ଓ ଲଜ୍ଜିତ ହେଲା । ସେ ବିକଳରେ କ୍ରନ୍ଦନ କରିବାକୁ ଆରମ୍ଭ କଲା ଓ ବିନୟ ସହକାରେ ନିଜର ଦୋଷକୁ ସ୍ୱୀକାର କଲା । ସେଠିଆଗୁରୁ କେଳାର କାକୁତି ମିନତିରେ ତରଳିଯାଇ ଗଛରେ ଖେଳୁଥିବା ସାପ ଗୁଡିକୁ ଦେଖାଇଦେଲେ ଓ ସେଗୁଡିକୁ ଡାକିବା ପାଇଁ କେଳାକୁ କହିଲେ । କେଳା ସାପ ମାନଙ୍କୁ ଡାକିଲା ଓ ଆଶ୍ଚର୍ଯ୍ୟର କଥା - ସବୁ ସାପ ନିଜ ନିଜ ପେଡିରେ ଆସି ପୂର୍ବବତ୍ ରହିଲେ । ସେହି ଦିନଠାରୁ ସମସ୍ତ ସାପୁଆ କେଳା ମଧ୍ୟ ତାଙ୍କୁ ଗୁରୁ ରୁପେ ସ୍ୱୀକାର କଲେ; କାରଣ ଉକ୍ତ ସାପୁଆ କେଳା ସେଠିଆଙ୍କୁ ଗୁରୁ ରୂପେ ସ୍ୱୀକାର କରିଥିଲା ବୋଲି ।

ସେଠିଆଗୁରୁ ଅଭିନବ ଓ ସରଳ ଉପାୟରେ କିଛି ଧାନକୁ ମନ୍ତ୍ରିତ କରି ଧାନର ସହାୟତାରେ ଭୂତପ୍ରେତଙ୍କ ର ଦୌରାମ୍ୟ କଥା ନିର୍ଣ୍ଣୟ ବିଧି ଉଦ୍ଭାବନ କରିଥିଲେ । ତେଣୁ ଧାନଦେଖା ବା ଧାନ ସାହାଯ୍ୟରେ ଗୁଣିଗାରେଡିର ତତ୍ତ୍ୱ ନିରୂପଣ କରିବା ସେଠିଆଗୁରୁଙ୍କର ଅବଦାନ ଥିଲା ବୋଲି କୁହାଯାଏ । ଧାନ ଦେଖିବା ପୂର୍ବରୁ ସେଠିଆଗୁରୁଙ୍କୁ ସ୍ମରଣ କରାଯାଏ ।

ତେଣୁ ଏତେ ଗୁଡିଏ ପୋଖରୀଥିବାର ଓ ଆମ୍ବ ତୋଟା ଥିବାର ମୂଳରେ ସେଠିଆଗୁରୁ ଥିଲେ ବୋଲି କିମ୍ବଦନ୍ତୀ ଓ ଜନମୁଖରୁ କଥାରେ ସତ୍ୟତା ଯାହା ଥାଉନା କାହିଁକି ବର୍ତ୍ତମାନ ପର୍ଯ୍ୟନ୍ତ ଅନେକ ମନ୍ତ୍ରରେ ସେଠିଆଗୁରୁଙ୍କର ଆଜ୍ଞା ନିର୍ଦ୍ଦେଶ ଦେବା ଓ ସେଗୁଡିକର କାଟତି ହେବା କଥା ଜନ ମୁଖରେ ଥିବା ଦ୍ୱାରା ଯେ ସେଠିଆଗୁରୁଙ୍କ ନାମରେ ଯାହା କୁହାଯାଏ ସେ ସବୁକୁ ମାନି ନିଆ ନଗଲେ ମଧ୍ୟ ସେସବୁ ସଂପୂର୍ଣ୍ଣ ଅବିଶ୍ୱାସ କରାଯାଇନପାରେ । ସେ ସମୟରେ ଜଣେ ହରିଜନ ପରିବାରରେ ଜନ୍ମହୋଇ ମଧ୍ୟ ରାଜାଙ୍କର ଗୁରୁର ଆସନରେ ଅଧିଷ୍ଠିତ ହୋଇ ପାରିଥିବା ବ୍ୟକ୍ତିର ବ୍ୟକ୍ତିତ୍ୱକୁ ଅସ୍ୱୀକାର ମଧ୍ୟ କରାଯିବାର ଅଧିକାର ନାହିଁ ବୋଲି ମୁଁ ମନେକରେ ।



# କୁଆଁରୀ ପାଟଣାରୁ ରାଜଧାନୀ ପରିବର୍ତ୍ତନ

ପ୍ରତାପସେନଙ୍କ ପୁତ୍ର ଶତ୍ରୁଘାତୀ ସେନ ପାଟଣା (କାମାନ୍ତପୁର)ରେ ସର୍ବ ପ୍ରଥମେ ତାଙ୍କର ରାଜଧାନୀ ସ୍ଥାପନର ପରିକଳ୍ପନା କରିଥିଲେ । ମଧୁମାହାର (କନ୍ଦରା ଜାତିର ଜଣେ ରାଜା)ଙ୍କ ଦ୍ୱାରା ତାହା ସାକାର ରୂପନେଇ ଏଠାରେ ଅସ୍ଥାୟୀ ଭାବେ ରାଜଧାନୀ ସ୍ଥାପିତ ହୋଇଥିଲା । ଐର ବଂଶର ଶେଷରାଜା ସୁରଥଙ୍କୁ ଆନ୍ଧ୍ର (ଦାକ୍ଷିଣାତ୍ୟ)ର ରାଜା ପରାସ୍ତ କରି ଏହାକୁ ଦାକ୍ଷିଣାତ୍ୟର ଅନ୍ତର୍ଭୁକ୍ତ କଲେ ଏବଂ ସ୍ଥାନୀୟ ଶାସନ ପାଇଁ ମାଧବଚନ୍ଦ୍ର ଦେବ ନାମକ ଜଣେ ସାମନ୍ତ ରାଜାଙ୍କୁ ତ୍ରିକଳିଙ୍ଗର ଶାସନ ସହ ପାଟଣା (କୁଆଁରୀ ପାଟଣା ବା କୋଶଳ)ର ଶାସନ ଭାର ଅର୍ପଣ କଲେ । ସେ କାମଚଣ୍ଡୀ ଭକ୍ତ ଥିଲେ । ତ୍ରିକଳିଙ୍ଗର ରାଜଧାନୀ ତୋଷଳୀ ଠାରେ ସ୍ଥାପନ କରି ପରେ ହଠାତ୍ କାମାନ୍ତପୁରକୁ (ଶତ୍ରୁଘାତୀଙ୍କ ରାଜଧାନୀ)କୁ ଉଠାଇ ଆଣି ଥିବାରୁ ଏହାର ନାମ ପତନଗଡ ହେଲା, ଯାହାକି ପରବର୍ତ୍ତୀ ସମୟରେ ଅପଭ୍ରଂଶ ହୋଇ ପାଟଣାଗଡ ହେଲା । ବାବନ ଦେବଙ୍କର ଧ୍ୱଂସ ଦୁର୍ଗ (Ruined Fort) ବୋଲି କୁହାଯାଉ ଥିବାରୁ ଏହାକୁ ପତନଗଡ ମଧ୍ୟ କହୁଥିଲେ ବୋଲି କେତେକ ଐତିହାସିକ ମତ ଦିଅନ୍ତି । କିନ୍ତୁ ଏହା ସତ୍ୟ ଯେ ଖ୍ରୀଷ୍ଟଜନ୍ମର ପୂର୍ବରୁ ପାଟଣାଗଡର ପ୍ରାଧାନ୍ୟ ଥିଲା ଏବଂ ଏଠାରେ ରାଜଧାନୀ ସ୍ଥାପିତ ହୋଇ ସାରିଥିଲା । ଏହାର ଆଦି ନାମ କାମାନ୍ତପୁର ଥିଲା । ତେବେ ଶତ୍ରୁଘାତୀଙ୍କ ଦ୍ୱାରା ଖ୍ରୀ.ପୂ ପ୍ରଥମ ଶତାବ୍ଦୀ (୮୯-୭୧)ରେ ସ୍ଥାପିତ ପାଟଣାଗଡର ରାଜଧାନୀ ଶୂରପ୍ରତାପ ଦେଓ (ଚୌହାନ ବଂଶର ରାଜା)ଙ୍କ ମୃତ୍ୟୁପରେ ପାଟଣାଗଡରୁ ବଲାଙ୍ଗିର କୁ ପରିବର୍ତ୍ତିତ ହେବାରେ ଇଂରେଜ ମାନଙ୍କର ସଂପୂର୍ଣ୍ଣ ହାତ ଥିଲା ଏବଂ ସେହି ଦିନ ଠାରୁ ହିଁ କୁଆଁରୀ ପାଟଣାର ପ୍ରାଧାନ୍ୟ ସଂପୂର୍ଣ୍ଣ ଲୋପ ପାଇଥିଲା ।

ଚୌହାନ ବଂଶର ରାଜା ଶୂର ପ୍ରତାପ ଦେଓଙ୍କ ମୃତ୍ୟୁ ବେଳେ (୧୮୭୧) ତାଙ୍କ ପୁତ୍ର ୩ୟ ରାମଚନ୍ଦ୍ର ଦେଓ ନାବାଳକ ଥିଲେ । ସେତେବେଳେ



ପାଟଣାଗଡ ଇଁରେଜଙ୍କ ପରୋକ୍ଷରେ ଶାସନାଧିନ ହୋଇ ସାରିଥାଏ ।
ସେହି ଅନୁସାରେ ଇଂରେଜମାନେ ପାଟଣାରେ ମଧ ଜଣେ ଏଜେଣ୍ଟ ଦେଇ
ପରୋକ୍ଷରେ ଶାସନ ବୁଝୁଥିଲେ, ଯାହାକି ଶୂର ପ୍ରତାପ ଦେଓଙ୍କ ମୃତ୍ୟୁପରେ
ପ୍ରାୟ ପ୍ରତ୍ୟକ୍ଷ ଶାସନ ତାଙ୍କ ହାତକୁ ଗଲା । ସେମାନେ ପାଟଣା ରାଜ୍ୟରେ
କୋଟ ଅଫଓ୍ବର୍ଡସ (Court of Words) ଜାରି କଲେ ଓ ଶାସନ କରିବାକୁ
ଲାଗିଲେ । ତା' ପୂର୍ବରୁ ଦେଶୀୟ ରାଜ୍ୟ ମାନଙ୍କ ଠାରୁ ଇଂରେଜ ମାନେ କେବଳ
କର ଅସୁଲ କରୁଥିଲେ ଏବଂ ଶାସନର ଭାର ସ୍ଥାନୀୟ ରାଜାଙ୍କୁ ଦେଉଥିଲେ ।
ତେଣୁ ରାଜାମାନେ ପ୍ରଜାଙ୍କ ଠାରୁ ମନଇଚ୍ଛା ରାଜସ୍ୱ (କର) ଆଦାୟ କରି ଇଂରେଜ
ସରକାରଙ୍କୁ ଦେଉଥିଲେ ଓ ନିଜେ ମଧ ମଉଜ କରୁଥିଲେ । ରାଜାମାନେ ପ୍ରତି
ଗ୍ରାମରେ ଜଣେ ଜଣେ ଗୌନ୍ତୀଆ ନିଯୁକ୍ତି କରି ତାଙ୍କ ମାଧମରେ ରାଜସ୍ୱ ଆଦାୟ
କରୁଥିଲେ ଓ ଶାସନର ସମତା ମଧ ରକ୍ଷା କରୁଥିଲେ । କିନ୍ତୁ Court of
Words ସମୟରେ ଇଂରେଜମାନେ ଏକ ବିଚିତ୍ର ପରିକଳ୍ପନା କଲେ ।
ସେତେବେଳେ ଶୂର ପ୍ରତାପ ଦେଓଙ୍କ ପୁଅ ନାବାଳକ ଥିଲେ ବୋଲି ପ୍ରତ୍ୟକ୍ଷ
ଦେଖ ରେଖରେ ସେମାନେ ତାଙ୍କୁ ପାଟଣାରାଜ୍ୟ ବାହାରେ ପାଠ ପଢାଇବାକୁ
ପଠାଇଲେ ଏବଂ ତାଙ୍କ ତରଫରୁ (ନାବାଳକ ରାଜା ୩ୟ ରାମଚନ୍ଦ୍ର ଦେବଙ୍କ
ତରଫରୁ) ଇଂରେଜମାନେ ନିଜେ ଶାସନ କଲେ Court of Words
ଜାରି ହେଲା ୧୮୭୧ ରେ । ସେହି ସମୟ ମଧରେ ଅର୍ଥାତ୍ ନାବାଳକ ରାଜାଙ୍କ
ତରଫରୁ ସେମାନେ ପ୍ରତ୍ୟକ୍ଷ ଶାସନ କାର୍ଯ୍ୟ Court of Words ବଳରେ
କରୁଥିବା ବେଳେ ଶାସନ ସୁବିଧା ଓ ସମ୍ବଲପୁର - ବିଶାଖାପାଟଣାର
ଗମନାଗମନର ଆଳ ଦେଖାଇ ପାଟଣାଗଡରୁ ରାଜଧାନୀ ପରିବର୍ତ୍ତନ କରିନେଲେ
ବଲାଙ୍ଗିରକୁ ଏକ ଶୂନ୍ୟତା ମଧରେ ଗଡି କଲା ପାଟଣାଗଡ । ଗଡ ମଧରେ
ଥିବା ରାଜ ମହଲ ପ୍ରାୟ ମାଟିରେ ନିର୍ମିତ ଥିଲା । ସିଂହଦ୍ୱାର କେବଳ ପୋଡା
ଇଟାରେ ଓ ଗୁଡ ବେଲଅଠା ଆଦି ଦେଇ ପେଡା ଯାଇଥିବା ଚୂନରେ ନିର୍ମିତ
ଥିଲା ବୋଲି ଏ ଯାଏ ତାହା ମୁଣ୍ଡଟେକି ରହିଛି । ଅନେକ ତାକୁ ଭୁଲ ବଶତଃ
ରାଜାଙ୍କର ଚନ୍ଦନମଖା ଘର ବୋଲି ଅଭିହିତ କରିଥାନ୍ତି, କିନ୍ତୁ ତାହା ରାଜ
ଦରବାରକୁ ପ୍ରବେଶ କରିବାର ସିଂହଦ୍ୱାର ହିଁ ଥିଲା । ମାଟିରେ ନିର୍ମିତ ରାଜ



ନଅରଟି ରକ୍ଷଣା ବେକ୍ଷଣ ଅଭାବରୁ ଉଜୁଡି ପଡିଲା । କାରଣ ରାଜ ନଅର ମଧ୍ୟରେ କେହି ରହିଲେ ନାହିଁ । ୧୯୯୭ରେ ସନ୍ୟାସୀ କଲ୍ୟାଣ ବାବାଙ୍କ ଦ୍ୱାରା ଆହୂତ ବିଶ୍ୱଶାନ୍ତି ମହାଯଜ୍ଞର ପ୍ରବଚନ ମଣ୍ଡପ ନିର୍ମିତ ସ୍ଥାନ ଓ ତାର ପଛପଟ ଏବଂ ବାମ ପାର୍ଶ୍ୱ ସ୍ଥାନରେ ହିଁ ପ୍ରାଚୀନ ପାଟଣାଗାଡ଼ର ରାଜ ଉଆସ ଥିଲା । ଏବେ ମଧ୍ୟ ତାହାର ମୂଳଦୁଆ ସ୍ପଷ୍ଟ ବରି ହୁଏ । ପୁଣି ପାଟଣେଶ୍ୱରୀ ମନ୍ଦିରର ଉତ୍ତର ପୂର୍ବରେ ଅବସ୍ଥିତ କୁଆଁରୀ ବନ୍ଧର ପୂର୍ବ ପାର୍ଶ୍ୱରେ ରାଣୀ ଅନ୍ତଃପୁର ଥିଲା । ଏହା ଏବେ ମାଟିଗଦାରେ ପରିବର୍ତ୍ତିତ ହୋଇଛି । ଏଠାରେ କେବଳ ଇଟାନିର୍ମିତ ଏକ ଉଚ୍ଚ ସ୍ତମ୍ଭ ହିଁ ରାଣୀ ଅନ୍ତଃପୁରର ସାକ୍ଷୀ ରୂପା ଦଣ୍ଡାୟମାନ ଅଛି ।

ସୁତରାଂ ଯନ୍ତବତ୍ ନିର୍ମିତ କୁଆଁରୀ ପାଟଣାର ଗଡ ୧୮୭୧ ରୁ ୧୮୯୩ ମଧ୍ୟରେ ହୋଇଥିବା Court of Words ହିଁ ରାଜଧାନୀକୁ ଏଠାରୁ ସ୍ଥାନାନ୍ତରୀତ କଲା ଏବଂ ପାଟଣାଗଡ ନଗରକୁ ଶ୍ରୀହୀନ କରିଥିଲା । ପରବର୍ତ୍ତୀ ସମୟରେ ୩ୟ ରାମଚନ୍ଦ୍ର ଦେବ ସାବାଳକ ହେଲାପରେ ୧୮୯୩ରେ ତାଙ୍କୁ ପାଟଣାଗଡର ରାଜସିଂହାସନ ବଲାଙ୍ଗିର ଠାରେ ଅର୍ପଣ କରିଥିଲେ ଏବଂ ନିଜେ ଏହାର ପରୋକ୍ଷ ଶାସନ କାର୍ଯ୍ୟ ପରିଚାଳନା କରିଥିଲେ । କିନ୍ତୁ ପରବର୍ତ୍ତୀ ସମୟରେ ପାଟଣା ରେ ଇଁରେଜଙ୍କର କର୍ତ୍ତୃତ୍ୱ ଯଦିଓ ଆଂଶିକ ରହିଥିଲା, ତଥାପି ଏହାର ରାଜଧାନୀ ବଲାଙ୍ଗିରକୁ ସ୍ଥାନାନ୍ତରିତ ହୋଇ ମଧ୍ୟ ରାଜ୍ୟର ନାମ ପାଟଣାରାଜ୍ୟ ଥିଲା । ସେ ଯାହା ହେଉ, ରାଜଧାନୀ ପରିବର୍ତ୍ତନ ଘଟଣାରେ ପାଟଣାଗଡ ଶ୍ରୀହୀନ ହେଲା କହିବା ସଂପୂର୍ଣ୍ଣ ଯୁକ୍ତିଯୁକ୍ତ ହେବ ।

ଓଡିଶାର ୨୬ଟି ଗଡଜାତ ମଧ୍ୟରେ ଆକାର ଓ ରାଜସ୍ୱ ଆଦାୟରେ ଜ୍ୟେଷ୍ଠଭ୍ରାତ ବୋଲାଉଥିବା ପାଟଣାର ଶେଷ ରାଜା ରାଜେନ୍ଦ୍ର ନାରାୟଣ ସିଂଦେଓ ୧୯୪୮ରେ ସର୍ଦ୍ଦାର ପଟେଲଙ୍କ ଦ୍ୱାରା ଆହୂତ ବୈଠକରେ ଅବସ୍ଥାଚକ୍ରରେ ପଡି ଲୀନ କରାଇ ଇତିହାସ ସୃଷ୍ଟି କରିଥିଲେ । ତେଣୁ ପ୍ରାଚୀନ କାଳରୁ ଏହି ପାଟଣାଗଡର ପ୍ରାଧାନ୍ୟ ରହି ଆସିଥିଲେ ମଧ୍ୟ ଏହାର ଉନ୍ନତିରେ ବାଧକ ସାଜିଥିବା ବିଭିନ୍ନ ସିଦ୍ଧାନ୍ତ ଗୁଡିକ ଖୋଜିବାକୁ କାହାରି ବେଳ ନାହିଁ ? ? ? ଏବଂ ............





# ଶଶୀସେଣା ଓ ଅହିମାଣିକ କଥା

କୋଶଳର ପଡୋଶୀ ବେରାର ରାଜ୍ୟ । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀ ବେଳକୁ ଭୋପାଳ ଓ କୋଶଳର ମଧ୍ୟବର୍ତ୍ତୀ ସମୃଦ୍ଧିଶାଳୀ ବେରାର ରାଜ୍ୟ ଥିଲା । ଏଠାକାର ରାଜା କଳା-ସାହିତ୍ୟରେ ଶ୍ରଦ୍ଧା ରଖୁଥିଲେ । ନାରୀ ଶିକ୍ଷାର ମଧ ସେ ପକ୍ଷପାତୀ ଥିଲେ ।

ବେରାରର ବୁଦ୍ଧିମାନ ମନ୍ତ୍ରୀ ଅପୁତ୍ରିକ ହେତୁ ମାନସିକ ଗ୍ଳାନିରେ ସଦା ନିମଜ୍ଜିତ ଥିଲେ । ଉଭୟ ପତି-ପତ୍ନୀ ମାଁ ମଙ୍ଗଳାଙ୍କୁ ନିତି ନିଷ୍ଠାର ସହ ପୂଜା କରୁଥିଲେ । ଏହି ଦମ୍ପତିଙ୍କର ଐକାନ୍ତିକ ଭକ୍ତିରେ ପ୍ରୀତ ହୋଇ ମାଁ ମଙ୍ଗଳା ଦିନେ ସ୍ୱପ୍ନାଦେଶରେ ଉଭୟ ପତି ଓ ପତ୍ନୀଙ୍କୁ ଏକ ସଙ୍ଗରେ କହିଗଲେ ପୁତ୍ର ସନ୍ତାନ ଦେବା ପାଇଁ । ପୂର୍ବ ଜନ୍ମର କୁ ପ୍ରଭାବ ହେତୁ ମନ୍ତ୍ରୀ ପତ୍ନୀଙ୍କ ଗର୍ଭରୁ ସନ୍ତାନ ଜନ୍ମ ହେବା ବା ସେ କେବେହେଲେ ଗର୍ଭ ଧାରଣ କରିବାର ସେ ଶକ୍ତି ହରାଇ ଥିବା କଥା କହି ଗଲେ । ତେଣୁ ନିଜ ମାନସ ପୁତ୍ରଙ୍କ ମଧରୁ ଜଣକୁ ମନ୍ତ୍ରୀଙ୍କୁ ପୁତ୍ର ରୂପେ ପ୍ରେରଣ କରିବାର ଆଶୀର୍ବାଦ ଦେଇ ଦେବୀ ଅନ୍ତର୍ଦ୍ଧାନ ହେଲେ ।

ନିଦ୍ରାଭଙ୍ଗ ହୁଏ ଶୁଭ ସ୍ୱପ୍ନର ଅନ୍ତେ । ମନ୍ତ୍ରୀ ଦମ୍ପତି ଆନନ୍ଦରେ ପରସ୍ପରକୁ ଆଲିଙ୍ଗନ କରନ୍ତି ଏବଂ ତତ୍‌କ୍ଷଣାତ୍ ଶଯ୍ୟାରେ ପଡ଼ିଥିବା ଏକ ଫୁଲହାରକୁ ସ୍ପର୍ଶ କଲା ମାତ୍ରେ ତାହା ଏକ ଅହିରାଜରେ ରୂପାନ୍ତରିତ ହୁଏ । ଭୟରେ ସେ ଶଯ୍ୟାତ୍ୟାଗ କରି ପଳାୟନ କରୁଥିବା ଅବସ୍ଥାରେ ମନ୍ତ୍ରୀ ତାଙ୍କୁ ମାଁ ମଙ୍ଗଳାଙ୍କର ଆଶୀର୍ବାଦ କହି ବାରଣ କରନ୍ତି ଓ ନିଜେ ଅହିରାଜକୁ ହାତରେ ସ୍ପର୍ଶ କରନ୍ତି ଆଗ୍ରହ ଓ ଭକ୍ତି ଭାବରେ । ତାହା ତତ୍‌କ୍ଷଣାତ ମାଣିକ୍ୟ ଖଚିତ ଏକ ହାରରେ ପରିବର୍ତ୍ତିତ ହୁଏ । ଆଶ୍ଚର୍ଯ୍ୟ, ଭକ୍ତି ଓ ପୁଲକିତ ଭାବରେ ମନ୍ତ୍ରୀ ଉକ୍ତ ମାଣିକ୍ୟର ହାରକୁ ପତ୍ନୀର ଗଳାରେ ପିନ୍ଧାଇବା ମାତ୍ରେ ତାହା ଏକ ପୁତ୍ର ସନ୍ତାନରେ ରୂପାନ୍ତରିତ ହେଲା ଓ



କୁଆଁ କୁଆଁ ରାବ ଦେଇ ଉଭୟଙ୍କୁ ବାତ୍ସଲ୍ୟରେ ବିଚ୍ଛଳିତ କରିଦେଲା । ଉଭୟେ ଦେବୀ କୃପାରେ କୃତ୍ୟ କୃତ୍ୟ ହେଲ ଏବଂ ପୁତ୍ର ସନ୍ତାନ ଲାଭ କରି ଗଦ ଗଦ୍ ହେଲେ । ଅଯୋନୀ ସମ୍ଭୂତ ପୁତ୍ର ମହତ୍ କର୍ମ ପାଇଁ ପ୍ରେରିତ ହୋଇଛନ୍ତି ଭାବି ମନ୍ତ୍ରୀ ଦମ୍ପତି ଆନନ୍ଦରେ ବିଭୋର ହେଲେ ଏବଂ ପୁଷ୍ପ ମାଳାରୁ ଅହିରାଜ ଓ ପରେ ମାଣିକ୍ୟର ହାରରେ ପରିବର୍ତ୍ତିତ ହୋଇ ପୁତ୍ର ସନ୍ତାନ ସମ୍ଭବ ହୋଇଥିବାରୁ ତା'ର ନାମ ଅହିମାଣିକ ରଖନ୍ତି ମନ୍ତ୍ରୀ ଦମ୍ପତି ।

ଯଥା ସମୟରେ ଶୈଶବ ଶେଷରେ ଅହିମାଣିକକୁ ବିଦ୍ୟା ଅଧ୍ୟୟନ ପାଇଁ ମନ୍ତ୍ରୀ ଗୁରୁ ଆଶ୍ରମରେ ଦିଅନ୍ତି । ଗୁରୁ ମଧ୍ୟ ଆଯୋନୀ ସମ୍ଭୂତ ଶିଷ୍ୟ ପାଇ ତା'କୁ ଆଦର କରନ୍ତି ।

ସେତେବେଳେ ବେରାର ରାଜାଙ୍କର ଏକମାତ୍ର ପୁତ୍ରୀ ଶଶୀସେଣା ଶୈଶବ ଅତିକ୍ରମ କରି ଶିକ୍ଷା ଗ୍ରହଣ କରିବାର ବୟସରେ ଉପନୀତ ହୁଏ ଏବଂ ରାଜା ନିଜ ଅଳିଅଳ କନ୍ୟାକୁ ମଧ୍ୟ ଶିକ୍ଷାଦେବା ପାଇଁ ଉକ୍ତ ଗୁରୁ ଗୃହରେ ଛାଡି ଆସିବାର ନିଷ୍ପତ୍ତି ନିଅନ୍ତି ।

ବେରାର ରାଜକନ୍ୟା ଶଶୀସେଣା ଏବଂ ମନ୍ତ୍ରୀ ପୁଅ ଅହିମାଣିକ ଗୁରୁ ଗୃହରେ ବିଦ୍ୟାର୍ଥୀ ଜୀବନ ଅତିବାହିତ କରୁ କରୁ ଉଭୟେ ଯୌବନ ପ୍ରାପ୍ତ କରନ୍ତି । ଇତି ମଧ୍ୟରେ ତାଙ୍କର ଶିକ୍ଷା ପ୍ରାପ୍ତ ସମାପ୍ତ ହୋଇ ଆସୁଥାଏ ।

ଦିନେ ଉଭୟେ ଅହିମାଣିକ ଓ ଶଶୀସେଣା ଗୁରୁଙ୍କର ଅଧ୍ୟୟନ କକ୍ଷରେ ପ୍ରବେଶ କରିବା ପୂର୍ବରୁ ଏକ ଭୟରେ ଲେଖୁ ଲେଖୁ ଖଡ଼ିଟି ଅହିମାଣିକ କୋଳତଳେ ଗଡ଼ି ରହିଲା । ଖଡିଟି ଗୋଟାଇ ଦେବା ପାଇଁ ଶଶୀସେଣା ଅହିମାଣିକକୁ ବାରମ୍ବାର ଅନୁରୋଧ କଲା । ସେ ଗୋଟିଏ ସର୍ତ୍ତ ଆରୋପ କଲା ଏବଂ ସର୍ତ୍ତ ନ କହିବା ପୂର୍ବରୁ ଶଶୀସେଣାକୁ ଏକ ଶପଥ ପାଠ କରାଇନେଲା । ଶଶୀସେଣା ସର୍ତ୍ତ ଯାହା ହୋଇଥିଲେ ମଧ୍ୟ ତାହା ମାନିବାକୁ ପ୍ରତିଜ୍ଞା କଲା । ପରେ ଖଡ଼ି ଗୋଟାଇ ଦେଲେ ଶଶୀସେଣା ଅହିମାଣିକକୁ ବିବାହ କରିବ ବୋଲି ମଧ୍ୟ ରାଜି ହେଲା ଓ ପ୍ରତିଜ୍ଞା ପାଳନରେ ବିବଶ ହେଲା । ଉଭୟେ ଗୁରୁଙ୍କ ନିକଟରେ ନିଜର ଇଚ୍ଛା ପ୍ରକାଶ କଲେ । ଗୁରୁ ପ୍ରାୟ ଶିଷ୍ୟଙ୍କର ଚରମ ଇଚ୍ଛାକୁ ସ୍ୱୀକୃତୀ ଦେଇ ଆଶ୍ରମରେ ହିଁ








ବିବାହ କରାଇ ଦେଇ ବେରାଗର ପଡ଼ୋଶୀ କୋଶଳ ରାଜ୍ୟକୁ ପଳାଇ ଯିବା ପାଇଁ ଉପଦେଶ ଦେଲେ ଓ ତାଙ୍କୁ ଆଶ୍ରମରୁ ବିଦା କରିଦେଲେ । ଗୁରୁଙ୍କ ଉପଦେଶ ମାନି ଅହିମାଣିକ ଓ ଶଶୀସେଣା ଘୋଡାରେ କୋଶଳ ରାଜ୍ୟରେ ପ୍ରବେଶ କଲେ ଓ କୋଶଳର ତ୍କାଳୀକ ରାଜଧାନୀ ପାଟଣାଗଡ଼ ପଉକଣ୍ଠରେ ଉପସ୍ଥିତ ହେଲେ ।

ନଗର ମଧ୍ୟରେ ପ୍ରବେଶ କରିବା ପୂର୍ବରୁ ଶଶୀସେଣାକୁ ମାୟାବତୀ ନଦୀ କୂଳସ୍ଥ ଏକ ନିରାପଦ ସ୍ଥାନରେ ରଖିଦେଇ ନଗରରୁ ରନ୍ଧା ସାମଗ୍ରୀ ସଂଗ୍ରହ କରିବାକୁ ଆସିଲା । ମାୟାବତୀ ନଦୀ କୂଳସ୍ଥ ଏକ ବିରାଟ ବରଗଛ ମୂଳରେ ଶଶୀସେଣା ଅହିମାଣିକକୁ ଅପେକ୍ଷା କରି ରହିଲା ।

ଅହିମାଣିକ ରନ୍ଧା ସାମଗ୍ରୀ ସଂଗ୍ରହ କଲା ଉତ୍ତାରୁ ନବ ବିବାହିତ ପତ୍ନୀ ପାଇଁ ଏକ ଫୁଲ ହାର ନେଇ ଦେବାକୁ ଇଚ୍ଛା କରି ସମ୍ମୁଖରେ ଥିବା ଏକ ଫୁଲ ପସରା ପାଖକୁ ଆସିଲା । ଫୁଲ ପସରାର ମାଲିକାଣି ଜ୍ଞାନଦେଇ ହିଁ ଥିଲା । ସପ୍ତସଖୀଙ୍କ ମଧ୍ୟରେ ଶ୍ରେଷ୍ଠ ବିବେଚିତା ଜ୍ଞାନଦେଇ (ମଦନା) ଅହିମାଣିକର ତେଜୋମୟ ଦୀପ୍ତ ଚେହେରା ଓ ବଳିଷ୍ଠ ପୌରୁଷ ଦେଖି ମୁଗ୍ଧ ହେଲା ଏବଂ ତାକୁ କୌଶଳ କ୍ରମେ ନିଜ ଘରକୁ ନେଇଗଲା । ସେଠାରେ ପହଞ୍ଚି ସୁଗନ୍ଧ ଫୁଲ ନବବିବାହିତା ପତ୍ନୀକୁ ଉପହାର ଦେବାକୁ କହିବା ବାହାନାରେ ଏକ କଳାରଙ୍ଗର ଫୁଲ ଶୁଙ୍ଘାଇଦେଲା । ଅହିମାଣିକ ତତ୍‌କ୍ଷଣାତ୍ ଏକ କଳା ମେଣ୍ଢାରେ ପରିଣତ ହେଲା । ଅହିମାଣିକର ଜ୍ଞାନ ଲୋପ ହେଲା ଏବଂ ସେ ଶଶୀସେଣାକୁ ମନେକରି ପାରିବାର ଶକ୍ତି ହରାଇଲା । ଜ୍ଞାନଦେଇ ଅହିମାଣିକକୁ ପ୍ରତି ରାତିରେ ଏକ ଧଳା ଫୁଲ ଶୁଙ୍ଘାଇ ତାକୁ ପ୍ରେମ ବନ୍ଧନରେ ବାନ୍ଧୁ ଥିଲା ଏବଂ ଦିନ ବେଳା କଳା ଫୁଲ ଦ୍ୱାରା କଳା ମେଣ୍ଢାକରି ବାଡ଼ିପଟେ ବାନ୍ଧୁ ଥିଲା ।

ସେହି ରାତିରେ ଶଶୀସେଣା ଅହିମାଣିକକୁ ଅନେକ ଅପେକ୍ଷା କରିଛି । ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ ସେ ନ ଫେରିବାରୁ କୁଆଁରୀ ପାଟଣାର ଯାଦୁକରି ବିଦ୍ୟା ବିଷୟରେ ଆଶଙ୍କା କଲା । ସେ ପୁରୁଷ ବେଶରେ ଅହିମାଣିକକୁ ଅନ୍ୱେଷଣ କରିବାର ସିଦ୍ଧାନ୍ତ ନେଲା ଓ ନଗର ମଧ୍ୟରେ ପ୍ରବେଶକରି ଅନେକ ସ୍ଥାନ ଖୋଜିଲା । ପ୍ରାୟ ସାତ ଦିନର ଅହରହ ଅନ୍ୱେଷଣ ଉତ୍ତାରୁ କୌଣସି ସନ୍ଧାନ ନ ପାଇବାରୁ ପାଟଣାର






ସାମନ୍ତ ରାଜା ମାଧବଚ଼ନ୍ଦ୍ର ଦେବଙ୍କର ସୈନ୍ୟ ବାହିନୀରେ ଚାକିରୀ କରିବାକୁ ସିଦ୍ଧାନ୍ତ କଲା ଓ ସୈନ୍ୟ ବିଭାଗରେ ଯୋଗ ଦେଲା । ସେ ପୁରୁଷ ବେଶରେ ଶଶୀଧର ନାମଧାରଣ କରିଥାଏ ।

ପାଟଣା ନଗର ମଧ୍ୟରେ ସେତେବେଳେ ଏକ ଗଣ୍ଡାରର ଦୌରାତ୍ମ୍ୟ ଥାଏ । ମାଧବଚ଼ନ୍ଦ୍ର ଦେବଙ୍କର ଗଣ୍ଡା ଧରିବାର ସମସ୍ତ ପ୍ରଚେଷ୍ଟା ବିଫଳ ହେଲା ପରେ ଗଣ୍ଡାରକୁ ହତ୍ୟା କରିବା ବ୍ୟକ୍ତିକୁ ନିଜ କନ୍ୟା ବିବାହ ଦେବେ ବୋଲି ଘୋଷଣା କଲେ । ସୌଭାଗ୍ୟ କ୍ରମେ ଶଶୀଧର ଉକ୍ତ ଗଣ୍ଡାରକୁ ହତ୍ୟା କଲା ଏବଂ ରାଜାଙ୍କ ପ୍ରତିଶ୍ରୁତି ଅନୁସାରେ ତାଙ୍କ କନ୍ୟାକୁ ବିବାହ କଲା ।

ବିବାହ ପରେ ସେ ଏକ ବର୍ଷ ପର୍ଯ୍ୟନ୍ତ ନାରୀ ଜାତିକୁ ସ୍ପର୍ଶ ନ କରିବାର ବ୍ରତ ବିଷୟ କହି ଶେଷରେ ଏକ ପର୍ବ ପାଳନ କରିବାର ଅନୁମତି ରାଜାଙ୍କଠାରୁ ଆଦାୟ କଲା । ଶଶୀଧର ବ୍ରତ ଆରମ୍ଭ ହେଲା । ସେ ପ୍ରତିକ୍ଷଣ ଅହିମାଣିକକୁ ଖୋଜି ଚାଲିଥାଏ । ଶେଷ ସାତ ଦିନ ଯଜ୍ଞ କାର୍ଯ୍ୟକ୍ରମ ଆହୁରି ବ୍ୟାପକ ହେଲା । ମନୋରଞ୍ଜନର ବିଭିନ୍ନ କାର୍ଯ୍ୟକ୍ରମ ଥାଏ । ନିତେଇ, ଜ୍ଞାନଦେଇ ଇତ୍ୟାଦି ସପ୍ତସଖୀ ଶେଷ ଦିନ ମନୋରଞ୍ଜନ କାର୍ଯ୍ୟକ୍ରମ ଦେଖି ଯିବାର ସିଦ୍ଧାନ୍ତ କଲେ ଓ ଏକତ୍ରିତ ହୋଇ ଯାଇ ବସିଲେ । ସାମଗ୍ରିକ ଭାବେ ଏକତ୍ର ସେମାନେ ଯାଇଥିଲେ ମଧ୍ୟ ଜ୍ଞାନଦେଇ କଳା ମେଣ୍ଢାକୁ ସଙ୍ଗରେ ନେଇ ଯାଇଥିଲା ।

ଯଜ୍ଞର ମନୋରଞ୍ଜନ କାର୍ଯ୍ୟକ୍ରମ ରାତିରେ ଚାଲିଥିବା ବେଳେ ଶଶୀଧର ବ୍ୟାପକ ଭାବେ ବୁଲୁଥିଲା । ସେତେବେଳକୁ ଅହିମାଣିକର ପୂର୍ବ ସଂଜ୍ଞା ଫେରି ଆସିଥାଏ । ମେଣ୍ଢା ରୂପରେ ମଧ୍ୟ ଅହିମାନିକ ପୁରୁଷ ଶଶୀଧରକୁ ଚିହ୍ନିପାରି ଶିଙ୍ଗରେ ଏକ କାଠ କୋଇଲା ଧରି ଜ୍ଞାନଦେଇ ମାଳୁଣୀ ଦ୍ୱାରା ସେ ମେଣ୍ଢା ରୂପରେ ଥିବାର ସବୁ ଲେଖି ଥିଲା । ଭୀଷଣ ଜନସମାଗମ ମଧ୍ୟରେ ଏକ କଳା ରଙ୍ଗର ମେଣ୍ଢା ଦେଖି ଶଶୀଧର ମଧ୍ୟ ସନ୍ଦେହ କଲା । ପୁଣି ମେଣ୍ଢା ଶିଙ୍ଗରେ କିଛି ଲେଖିଲା ପରି ଅନୁମାନ କରିଥାଏ ।

ପରଦିନ ସକାଳେ ଶଶୀଧର ନିୟମିତ ଭ୍ରମଣ କରି ପ୍ରତ୍ୟେକ ବସ୍ତୁକୁ ପରୀକ୍ଷା କଲାବେଳେ କଳାରେ ଲେଖା ଥିବା କାନ୍ଥ ନିକଟରେ ଉପସ୍ଥିତ ହେଲା ।



ସେ ଲେଖା ପଢି ଆନନ୍ଦରେ ବିଭୋର ହୋଇ ଉଠିଲା । ଅହିମାଣିକର ସନ୍ଧାନ ପାଇ ସେ ଆନନ୍ଦରେ ଫାଟି ପଡିଲା ।

ଶଶୀଧର ଯଜ୍ଞ ସମାପନ ଉତ୍ସବରେ କଳା ରଙ୍ଗର ମେଣ୍ଢାର ଆବଶ୍ୟକ ହେବା କଥା କହି ନଗର ମଧ୍ୟରେ ଥିବା ସମସ୍ତ କଳା ବର୍ଣ୍ଣର ମେଣ୍ଢାକୁ ଅଣାଇଲା । ଜ୍ଞାନଦେଈର ମେଣ୍ଢା ବ୍ୟତୀତ ସମସ୍ତ ମେଣ୍ଢା ଆସିଗଲା । ପରେ ଜ୍ଞାନଦେଈର ମେଣ୍ଢାକୁ ନ ଦେଖି ଶଶୀଧର ଜ୍ଞାନଦେଈକୁ ମେଣ୍ଢା ଆଣିବାକୁ କହିଲା । ମାଳି ଘରେ ଛେଳି, କୁମ୍ଭାର ଘରର ଘୋଡ଼ା ଅସମ୍ଭବ ଓ ବିପରୀତ ପ୍ରକ୍ରିୟାର କଥା ଅଟେ କହି ଟାଳି ଦେଉଥିଲା । କିନ୍ତୁ ରାଜ ଜାମାତା ଶଶୀଧରର ନିର୍ଣ୍ଣୟ ଚୂଡ଼ାନ୍ତ ଥିବାରୁ ଓ ଜ୍ଞାନଦେଈକୁ ମାରିଦେବାକୁ ଧମକ ଦେଇ ବାରମ୍ବାର କଳାରଙ୍ଗର ମେଣ୍ଢାକୁ ଆଣିବାକୁ କହିଲା । ରାଜା ସବୁ ବିଷୟ କିଛି ବୁଝିପାରି ନଥିଲେ । ଯଥା ସମୟରେ କଳା ମେଣ୍ଢା ଯଜ୍ଞସ୍ଥଳୀକୁ ଅଣା ହେଲାରୁ ତା'କୁ ମଣିଷ କରିବାକୁ ଶଶୀଧର କହିଲା । ଭୟ ପ୍ରଦର୍ଶନ ଓ ହତ୍ୟାର ଧମକ ଦେଲା ପରେ ଧଳା ରଙ୍ଗର ଏକ ଫୁଲ ଅଣାଇ ଜ୍ଞାନଦେଈ ମେଣ୍ଢାକୁ ଅହିମାଣିକର ପୂର୍ବ ରୂପର ପରିବର୍ତ୍ତନ କରିଥିଲା । ଶଶୀଧର ନିଜର ପ୍ରତିଶ୍ରୁତି ରକ୍ଷା ନ କରି ଉତ୍ତେଜନା ପ୍ରବଣତାର ଶିକାର ହୋଇ ଜ୍ଞାନଦେଈକୁ ହତ୍ୟା କଲା । ସେହି ଦିନଠାରୁ ସପ୍ତସଖୀଙ୍କର ଜ୍ଞାନ ଭ୍ରଷ୍ଟ ହେଲା ଓ ସମସ୍ତେ ଇତଃସ୍ତତଃ ହୋଇ ଗଲେ, କୁଆଁରୀ ପାଟଣାରେ ସପ୍ତସଖୀଙ୍କର ପ୍ରଭାବ ଲୋପ ହେଲା । ଜ୍ଞାନଦେଈ ର ବଂଶଧରମାନେ ଭୟରେ ପାଟଣାମାଟି ଛାଡ଼ି ସୁବର୍ଣ୍ଣପୁରକୁ ପଳାଇ ଯାଇ ସେଠାରେ ଶଶିସେଣା ମନ୍ଦିର ତିଆରି କରିଥିଲେ ।

ଶେଷରେ ଶଶୀଧର ଯଜ୍ଞବେଦୀ ସମ୍ମୁଖରେ ହିଁ ପୁରୁଷ ବେଶ ତ୍ୟାଗକରି ତା'ର ପୂର୍ବ ଶଶୀସେଣା ରୂପରେ ଦଣ୍ଡାୟମାନ ହେଲା ଏବଂ ପାଟଣା ରାଜକୁମାରୀ ଓ ଶଶୀସେଣା ଉଭୟେ ଭଉଣୀ ପରି ରହି ଅହିମାଣିକକୁ ବିବାହ କରିବାକୁ ନିର୍ଣ୍ଣୟ କଲେ ।

ଅହିମାଣିକ ଉଭୟଙ୍କୁ ବିବାହ କରି ପାଟଣାର ସିଂହାସନରେ ଅଧିରୂଢ ହେଲା ସିନା ସବୁ ଦିନ ପାଇଁ ସପ୍ତସଖୀ ପାଟଣା ମାଟିରୁ ଅପସରି ଗଲେ । ସେହି ଦିନଠାରୁ ପାଟଣାଗଡ଼ର କୁଆଁରୀ ଅପସାରିତ ହେଲା ।





# ରମାଇ ଖଣ୍ଡା

ପୂର୍ବତନ ପାଟଣା ରାଜ୍ୟରେ ଚୈହାନ ବଂଶର ପ୍ରତିଷ୍ଠାତା ରମାଇ ଦେଓଙ୍କର ସିଂହାସନ ଆରୋହଣ ପଛରେ ତାଙ୍କର ବ୍ୟବହୃତ ଖଣ୍ଡାର ଭୂମିକ ଅଧିକ ଥିବାର ବିଭିନ୍ନ କିମ୍ବଦନ୍ତୀ ଏବଂ ୰ ରାମଚନ୍ଦ୍ର ମଲ୍ଲିକଙ୍କର "କୋଶଳ ଇତିହାସ"ରୁ ଜଣାଯାଏ । ଚୈହାନ ବଂଶକୁ ସିଂହାସନାରୂଢ଼ କରିବା ଅନ୍ତରାଳରେ ଏହି ତରବାରୀର କୁହୁକିନୀ ଶକ୍ତିର କରାମତି ଅବିସ୍ମରଣୀୟ ହୋଇ ମଧ ଇତିହାସର ବିସ୍ମୃତିରେ ରହିଛି । ଅର୍ଥାତ୍ ପରବର୍ତ୍ତୀ ଚୈହାନ ବଂଶୀୟ ରାଜାମାନେ ସେମାନଙ୍କର ବଂଶର ପ୍ରତିଷ୍ଠାରେ ତଥା କଥିତ ଗଣତନ୍ତ୍ରକୁ ଦୂରକୁ ଠେଲି ଦେଇ ଏକ ବଂଶର ଶାସନ ପାଇଁ ଅନେକ ରକ୍ତ ପାନ କରିଥିବା ତରବାରୀର ଅବସ୍ଥାନ ସଂପର୍କରେ ଉପଯୁକ୍ତ ଧ୍ୟାନ ଦିଆଯାଇ ନାହିଁ କିମ୍ବା ସେ ସଂପର୍କରେ ଚିନ୍ତା ମଧ କରାଯାଇ ନାହିଁ । ଦମାଇ ଗଣ୍ଡଠାରୁ ଯୁବକ ରମାଇ କୌଣସି କ୍ରମେ ଛଡ଼ାଇକରି ଆଣିଥିବା ଏବଂ "ଯିଏ ସେହି ଖଣ୍ଡା ଧରିଥିବ ତାହାର ନିଶ୍ଚିତ ବିଜୟ ହେବ ।" ପରି କୁହୁକ ଶକ୍ତିଧାରୀ ରମାଇ ଖଣ୍ଡା ପାଟଣା ରାଜ୍ୟରେ ଚୈହାନ ବଂଶର ପତିଷ୍ଠାରେ ମୁଖ୍ୟ ଭୂମିକା ନେଇ ପରିଶେଷରେ ନିଜର ସଂଜ୍ଞା ହରାଇ ଅନାମଧେୟ ହୋଇ ନିର୍ବାସିତ ଜୀବନ ବ୍ୟତୀତ କରୁଥିବା ତରବାରୀ କେଉଁଠି ବୋଲି ପ୍ରଶ୍ନ ଉଠେ । ତେବେ ଦୀର୍ଘ ସାଢେ ସାତ ଶତାବ୍ଦୀ ଧରି ଗୋଟିଏ ରାଜ୍ୟରେ ଅପ୍ରତିଦ୍ୱନ୍ଦୀ ଶାସନ ଚଳାଇବାରେ ଯେଉଁ ତରବାରୀର ମୁଖ୍ୟ ଅବଦାନ ଥିଲା, ସେହି ରମାଇ ଖଣ୍ଡାଟି ପ୍ରଥମେ ରମାଇଦେଓଙ୍କର ହସ୍ତଗତ ହୋଇଥିବା ବିଷୟରେ ରୋଚକ କିମ୍ବଦନ୍ତୀର ଉପସ୍ଥାପନା ନିମ୍ନ ପ୍ରକାରର -

ଦିଲ୍ଲୀର ଶେଷ ହିନ୍ଦୁ ସମ୍ରାଟ ପୃଥ୍ୱୀରାଜ ଚୈହାନଙ୍କର ଅନ୍ୟତମ ପୁତ୍ର ହମିଦ ଦେଓଙ୍କର ପିତାଙ୍କ ମୃତ୍ୟୁ ପରେ ଅଜ୍ଞାତ ସ୍ଥଳକୁ ପଳାୟନ ପରେ ଗଡ଼ ପର୍ବତକୁ କେନ୍ଦ୍ରକରି ଏକ କ୍ଷୁଦ୍ରରାଜ୍ୟ ପ୍ରତିଷ୍ଠା କଲେ ଓ କିଛିଦିନ ପରେ ହଠାତ୍ ଯୁଦ୍ଧର ଆହ୍ୱାନ ପାଇ ଦେଶାନ୍ତର ଗଲେ । ଗଲାବେଳେ ସାଙ୍ଗରେ ନେଇଥିବା



ଦୁଇ ପାରା କୌଣସି କାରଣରୁ ଦୈବାତ୍ ଖସି ପଳାଇ ଆସିଲେ । ସର୍ତ୍ତ ଅନୁସାରେ ରାଜା ଯୁଦ୍ଧରେ ମୃତ୍ୟୁବରଣ କରିଛନ୍ତି ବୋଲି ତିନିରାଣୀ ସିଦ୍ଧାନ୍ତ ନେଲେ ଏବଂ ସାନରାଣୀ ଜୟନ୍ତୀ ଗର୍ଭବତୀ ଥିବାରୁ ବଂଶରକ୍ଷା କରିବାକୁ ଯଥାଶୀଘ୍ର ରାଜଧାନୀରୁ ପଳାୟନ କରିବାକୁ ପରାମର୍ଶ ଦେଇ ତାର ବ୍ୟବସ୍ଥା ପରେ ଅନ୍ୟ ଦୁଇ ବଡ଼ ରାଣୀ ଜଳରେ ଝାସ ଦେଇ ସତୀ ହେଲେ ।

କନିଷ୍ଠା ଗର୍ଭବତୀ ରାଣୀ ଜୟନ୍ତୀଙ୍କୁ ନେଇ ମାହୁନ୍ତ ନିଘଞ୍ଚ ବନର ଧାରେ ଧାରେ ଡ଼କଲା ନିକଟବର୍ତ୍ତୀ ହେଲା ପରେ ଦ୍ୱିପହରରେ ବିଶ୍ରାମ ନେବା ଆଳରେ ତାଙ୍କୁ ଏକ ଝରଣା କୂଳସ୍ଥ ପଥର ଗୁମ୍ଫା ନିକଟରେ ଓହ୍ଲାଇ ଦେଲେ ଏବଂ ହାତୀସହ ମାହୁନ୍ତ ଓ ଧାତ୍ରୀ ପୂର୍ବପ୍ରେମକୁ ଆଧାରକରି ପଳାୟନ କଲେ । ଠିକ୍ ତା'ର କେଇ ମୁହୂର୍ତ୍ତପରେ ନିରାଶ୍ରିତା ଜୟନ୍ତୀଙ୍କର ଗର୍ଭସ୍ଥଭାର ପ୍ରସବ ବେଦନାରେ ରୂପାନ୍ତରିତ ହେଲା ଏବଂ ତାଙ୍କର କ୍ରନ୍ଦନ ଓ ଆଳାପରେ ସମସ୍ତ ବନଟି ପ୍ରକମ୍ପିତ ହେଲା । ଠିକ୍ ସେତେବେଳେକୁ ଡ଼କଲାର ଝାଙ୍କରାଣୀ ପ୍ରସବରେ ଜୟନ୍ତୀଙ୍କୁ ସହାୟତା କଲା ପରେ ଏକ ଦିବ୍ୟ ପୁତ୍ର ସନ୍ତାନ ଜନ୍ମଲାଭ କଲା । ଝାଙ୍କର ଉଭୟ ମାତାପୁତ୍ରଙ୍କୁ ନିଜ ଘରକୁ ଆଣି ଯଥାଶକ୍ତି ଲାଳନ ପାଳନ କରି ରାଜ ଚିହ୍ନ ଅନୁମାନ କଲାପରେ ଭରଣ ପୋଷଣର ବିକଳ୍ପ ବ୍ୟବସ୍ଥା କରିବା ନିମିତ୍ତ କଣ୍ଡାବାଞ୍ଜୀ ନିକଟସ୍ଥ ବେହେରେନସିଲେଟ ବା ବିଶାଳ ସଭା ଚ଼ଟାଣରେ ଆଖ ପାଖ ପ୍ରାୟ ୧୦୦ ଗ୍ରାମର ମୁଖିଆଙ୍କର ଏକ ଦେହେରେନ୍ (ସଭା) କରାଇ ତାହାର ସିଦ୍ଧାନ୍ତ ଅନୁସାରେ ସେ ମା ପୁଅ ଦୁହିଙ୍କୁ ମୁଣ୍ଡ ମଲ୍ଲିକଙ୍କୁ ଅର୍ପଣ କରାଗଲା । ଚ଼କ୍ରଧର ପାଣିଗ୍ରାହୀ ଜନତାର ମତକୁ ସମ୍ମାନ ଦେଇ ସେହି ସିଦ୍ଧାନ୍ତକୁ ଗ୍ରହଣ କଲେ ।

ସେ ଜୟନ୍ତୀଙ୍କୁ ନିଜ କନ୍ୟାର ମର୍ଯ୍ୟାଦା ଦିଆଇ ଉଭୟ ମାତାପୁତ୍ରଙ୍କୁ ଲାଳନ ପାଳନ କରିବାରେ ଲାଗିଲା । ଉକ୍ତ ପୁତ୍ରର ନାମ ରମାଇ ରଖିଲେ ଏବଂ ସଂସାର ମଧ୍ୟରେ ବଞ୍ଚିବାକୁ ସଂଗ୍ରାମ କରିବାର ସବୁ ସ୍ତର ଦେଇ ଜୀବନ ବ୍ୟତୀତ କରିବାକୁ କାର୍ଯ୍ୟ ନିର୍ଦ୍ଧାରଣ କରି ପ୍ରଥମେ ଛେଳି ଜଗିବା କାର୍ଯ୍ୟରେ ନିୟୋଜିତ କଲେ । କିଶୋରରୁ ଯୌବନକୁ ପଦାର୍ପଣ କଲାବେଳେ ଜୟନ୍ତୀ ନିଜେ ତାଙ୍କୁ ମଲ୍ଲଯୁଦ୍ଧ, ଧନୁ ଚ଼ାଳନା, ବର୍ଚ୍ଛା ଓ ଖଣ୍ଡା ଚ଼ାଳନା ଆଦିର ସମ୍ୟକ ଧାରଣା ଦେଲେ ।



ଥରେ ଜୟନ୍ତୀ ଶୁଣିଲେ ଯେ ଘାଗୁର୍ଲି ନିକଟସ୍ଥ ଗ୍ରାମର ମୁଖିଆ ଦମେଇ ଗଣ୍ଡ ପାଖରେ ଏକ ଖଣ୍ଡା ଅଛି । ଯିଏ ଏହି ଖଣ୍ଡାକୁ ଧରିଥିବ, ଯୁଦ୍ଧରେ ନିଶ୍ଚୟ ବିଜୟୀ ହେବ । ତେଣୁ ଜୟନ୍ତୀଙ୍କ ଲୋଲୁପ ଦୃଷ୍ଟି ଉକ୍ତ ଖଣ୍ଡା ଉପରେ ପଡ଼ିଲା । ଦିନେ ସେ ଉକ୍ତ ଖଣ୍ଡା ବିଷୟରେ ରମାଇକୁ କହିଲେ ଏବଂ ଚକ୍ରଧର ପାଣିଗ୍ରାହୀଙ୍କର ଅଜ୍ଞାତସାରରେ ଦମେଇ ଠାରୁ ତାହା ଲୁଟି ଆଣିବାକୁ ରମାଇକୁ ପରାମର୍ଶ ଦେଲେ । ଉଭୟ ମାତା ଓ ପୁତ୍ରଙ୍କର ଘନଘନ ମନ୍ତ୍ରଣ ପରେ ଦିନେ ଖରା ମାସର ଦ୍ୱିପହର ବେଳେ ଦମେଇ ଘରେ ରମାଇ ଉପସ୍ଥିତ ହୋଇ ତାକୁ ମଲ୍ଲଯୁଦ୍ଧ ମାଗିଲେ । ଯୁଦ୍ଧରେ ଦମେଇ ପରାସ୍ତ ହେଲା । କିନ୍ତୁ ରମାଇ ଦମେଇ ଠାରୁ ଖଣ୍ଡାଟି ଆଣି ତାକୁ ଛାଡ଼ି ଦେଲାବେଳେ ଯଦି ସେ କେବେ ରାଜା ହେବେ, ତେବେ ତାର ପୁଅ ଖୁଦେରକୁ ସେନାପତି କରିବାର ପ୍ରତିଶ୍ରୁତି ଦେଲେ ।

ଉକ୍ତ ଖଣ୍ଡାପାଇ ରମାଇର ଆତ୍ମବଳ ବଢ଼ିଗଲା । ସେତେବେଳେ ପାଟଣାରାଜ୍ୟର ରାଜଧାନୀ କୋଶଳଗଡ଼ରେ ଏକ ଗଣ୍ଡାର ପ୍ରାଦୁର୍ଭାବ ବଢ଼ିଯାଇଥାଏ । କେହି ଉକ୍ତ ଗଣ୍ଡାରକୁ ମାରି ପାରୁ ନଥିଲେ । କିନ୍ତୁ ରମାଇ ସେହି ଦମେଇର ଖଣ୍ଡା ବଳରେ ଗଣ୍ଡାରକୁ ମାରିଦେଇ ପାଟଣାରାଜ୍ୟର ଜନତାଙ୍କର ସାମଗ୍ରିକ ଭାବେ ଶ୍ରଦ୍ଧାଭାଜନ ହେଲେ । ରାଜ୍ୟରେ ରମାଇଙ୍କ ପରି ଜଣେ ସାହାସୀ ବ୍ୟକ୍ତିଙ୍କୁ ରାଜା କରାଇବା ପାଇଁ ସମସ୍ତ ପ୍ରଜା ଇଚ୍ଛା କରୁଥିଲେ ।

ପରେ ଦିନେ ମୁଣ୍ଡମଲ୍ଲିକ ଚକ୍ରଧର ପାଣିଗ୍ରାହୀଙ୍କ ଭାଗରେ ସୁନାଲେମ୍ବୁ ପଡ଼ିବାରୁ ସେ ପରବର୍ତ୍ତୀ ଦିନ ରାଜା ହେବାର ଥିଲେ । କିନ୍ତୁ ଘାଗୁର୍ଲିରେ ପହଞ୍ଚିବାପରେ ତାଙ୍କୁ ରାତିସାରା ଜ୍ୱର ହେଲା ଓ ସକାଳୁ ସେ ରାଜଧାନୀରେ ଲେମ୍ବୁସହ ଉପସ୍ଥିତ ହେବାକୁ ଅକ୍ଷମତା ପ୍ରକାଶ କଲେ । ସେ ପୁତ୍ରସମ ପାଳନ କରିଥିବା ପୌଷ୍ୟ ପୁତ୍ର ରମାଇଙ୍କୁ ଦିନକପାଇଁ ରାଜକାର୍ଯ୍ୟ ପରିଚାଳନା କରିବାକୁ ନିର୍ଦ୍ଦେଶ ଦେଇ ପାଟଣା ପଠାଇଲେ ଲେମ୍ବୁ ସହ । ରମାଇ ଲେମ୍ବୁ ପ୍ରଦର୍ଶନ କରି ରାଜା ହେଲେ ଏବଂ ସଙ୍ଗେ ସଙ୍ଗେ ସେହି ଦମାଇ ଖଣ୍ଡାରେ ଛଅଜଣ ମଲ୍ଲିକଙ୍କୁ ହତ୍ୟାକରି ସିଂହାସନରେ ବସିଲେ । ସେ ପାଳନକାରୀ ପିତା ବଦଳରେ ଗୋଟିଏ ମେଣ୍ଢାକୁ ବଳିଦେଇ ଚୌହାନ ବଂଶର ପ୍ରତିଷ୍ଠା କଲେ । ଏହି ଖଣ୍ଡାବଳରେ ଅନେକ ରାଜ୍ୟଜୟ କଲାପରେ ପୁରୀ ରାଜାଙ୍କୁ ମଧ୍ୟ ସ୍ୱାଧୀଭୁତ କରି ତାଙ୍କ ଭଉଣୀଙ୍କୁ ବିବାହ କଲେ ।



ତେଣୁ ଦୀର୍ଘ ସାଢ଼େ ସାତ ସହ ବର୍ଷ ବ୍ୟାପି ଅପ୍ରତିଦ୍ୱନ୍ଦୀ ଥିବା ଘୈହାନ ବଂଶର ପରିଚ୍ଚିତିକୁ ପାଟଣାମାଟିରୁ କୋଶଳାଧିପତିର ସଂଜ୍ଞା ଦିଆଇଥିବା ଖଣ୍ଡାଟି ରମାଇଖଣ୍ଡା ନାମରେ ପରିଚ୍ୟ ପାଇଲା । ପରବର୍ତ୍ତୀ ସମୟରେ ଅନ୍ୟାନ୍ୟ ଦାୟାଦ ମାନଙ୍କ ଦ୍ୱାରା ଉକ୍ତ ମହାନ ଖଣ୍ଡାଟି ଦେବତାର ଆସନରେ ଅଧିଷ୍ଠିତ ହେବାର ଯୋଗ୍ୟତା ହାସଲ କରି ପୂଜା ପାଇଲା ।

କିନ୍ତୁ ଅନେକ ବର୍ଷପରେ ରମାଇଦେଓଙ୍କ ନାତି ବସ୍ତରାଜ ଦେଓଙ୍କ କନ୍ୟାକୁ ବସ୍ତର ରାଜାଙ୍କ ପୁଅକୁ ବିବାହ କରାଇବା ଅନ୍ତରାଳରେ ରମାଇ ଖଣ୍ଡାକୁ ଅକ୍ତିଆର କରିବା ଅଭିପ୍ରାୟ ଅବଶ୍ୟ ନିହିତ ଥିଲା । ବସ୍ତରାଜ ଦେଓ ଏହି ଅପୂର୍ବ ଦୁର୍ମୂଲ୍ୟ ଖଣ୍ଡାକୁ ଯୌତୁକ ରୂପେ ବସ୍ତରର ଯୁବରାଜଙ୍କୁ ଅର୍ପଣ କରିଥିଲେ । କିନ୍ତୁ ଘଟଣାକ୍ରମରେ ସହି ତରବାରୀ ଖରିଆଡ଼ ପର୍ଯ୍ୟନ୍ତ ଆସି ଏବେ ପର୍ଯ୍ୟନ୍ତ ସେଠାରେ ଏକ ନିଭୃତ କକ୍ଷରେ ମାଟି ତଳେ ଲୁକ୍କାୟିତ ଅବସ୍ଥାରେ ଅବସ୍ଥାପିତ ଥାଇ ପୂଜା ପାଉଥିବାର ଜନମୁଖରୁ ଜଣାଯାଏ । ତେଣୁ ପାଟଣାରାଜ୍ୟରେ ଘୈହାନ ବଂଶର ପ୍ରାଣ ପ୍ରତିଷ୍ଠାରେ ସହାୟକ ତଥା ଅଷ୍ଟ ମଲ୍ଲିକଙ୍କର ସେହି ରକ୍ତ ପିପାଷୁ ତରବାରୀ ରମାଇ ଦେଓଙ୍କ ଶାସନ (୧୧୫୯ ଖ୍ରୀଷ୍ଟାବ୍ଦ)ରୁ ପାଟଣାମାଟିରେ ପ୍ରଧାନ୍ୟ ପାଇ ଏବେ କେଉଁ ମାଟିରେ ଆତ୍ମଗୋପନ କରୁଛି - ଜାଣିବାର ଉପାୟ ନାହିଁ ? ପୁଣି ଏହି ଖଣ୍ଡାର ନିର୍ଦ୍ଦିଷ୍ଟ ପରିଚ୍ଚିତି ଓ ଚ୍ହିନ୍ନ ଆଦି ଲେଖା ନଥିବାରୁ ତାହାକୁ ପ୍ରମାଣ କରିବାର ମଧ ଉପାୟ ନାହିଁ । ଏବେ ପାଟଣେଶ୍ୱରୀ ମନ୍ଦିରରେ ଦେବୀ ପାଟଣେଶ୍ୱରୀଙ୍କର ଡ଼ାହାଣ ପାର୍ଶ୍ୱରେ ରହି ପୂଜା ପାଉଥିବା ଖଣ୍ଡାଟି ରମାଇ ଖଣ୍ଡା ନୁହେଁ -ଏକଥା ସତ । ଏହାକୁ ପାଟଖଣ୍ଡା କୁହାଯିବାରେ ଯେ କେତେ ଯଥାର୍ଥତା - ଏକଥା ମଧ ବିଋର୍ଯ୍ୟ ଅଟେ । ପାଟସିନ୍ଦୁର, ପାଟବୁଢ଼େକ, ପାଟଢୁଲିଆ, ପାଟ ମୁହୁରିଆ ପରି ପାଟଖଣ୍ଡା ମଧ ଏକ ରୂଢ଼ିବାଚ୍ୀ ଶବ୍ଦ ନୁହେଁତ ?? ପାଟଖଣ୍ଡାକୁ ଯଦି ପାଟ ଓ ଖଣ୍ଡା (ପାଟ ସିନ୍ଦୁର = ପାଟ + ସିନ୍ଦୁର) ପରି ବ୍ୟବହାର କରାଯାଏ, ତେବେ ଏହାର ମାନେ କିଛି ନାହିଁ । ସୁତରାଂ ପାଟଖଣ୍ଡାରେ ବ୍ୟବହୃତ ପାଟ ଶବ୍ଦ 'ମୁଖ୍ୟ' ଏବଂ ଦେବୀଙ୍କର ବ୍ୟବହାର ବେଳେ ମୁଖ୍ୟ କାମରେ ଆସୁଥିବା ଢୋଲ, ମୁହୁରି, ବୁଢ଼େକ ଆଦିଙ୍କ ଆଗରୁ "ପାଟ" ପୂର୍ବବାଚ୍ୀ ଶବ୍ଦ ଲାଗି ପାଟଖଣ୍ଡା ହୋଇଥିବାର ଅନୁମେୟ ହୁଏ । ପାଟଣେଶ୍ୱରୀ ଦେବୀଙ୍କର ମୁଖ୍ୟ ପୂଜାରୀ ଶ୍ରୀଯୁକ୍ତ



ଅଭିମନ୍ୟୁ ସିଂଦେଓଙ୍କ ମତରେ ପାଟଖଣ୍ଡା ନାମକ ଏକ ସ୍ୱତନ୍ତ୍ର ଖଣ୍ଡା ନାହିଁ । ପୁଣି ଛରାସିଂହାରେ ପାଟଖଣ୍ଡା ନାମରେ ଏକ ଦେବୀକୁ ପୂଜା କରାଯାଏ । ସେଠାରେ ପାଟଖଣ୍ଡା କୌଣସି ବସ୍ତୁବିଶେଷ ନୁହେଁ - ବରଂ ଏକ ଗୂଢ଼ିବାଦୀ ଦେବୀ ବିଶେଷ ଯାହାକି ପାଟଣେଶ୍ୱରୀ ଦେବୀଙ୍କ ସହ ସଂପର୍କୀତ ଅଟେ । ତେଣୁ "ରମାଇ ଖଣ୍ଡା""ପାଟଖଣ୍ଡା" ଆଦୌନୁହେଁ ଏବଂ ଏହାର ଏବର ଅବସ୍ଥାନ ଯେ କେଉଁଠି ତାହା ମଧ୍ୟ ସଠିକ ଭାବେ ଜାଣିବାର ଉପାୟ ନାହିଁ ।

ରମାଇଖଣ୍ଡାର ପ୍ରାଚୀନତାକୁ ସମସ୍ତେ ସ୍ୱୀକାର କରନ୍ତି । ଏହି ଖଣ୍ଡାର ଗୁରୁତ୍ୱ ମଧ୍ୟ ଯଥେଷ୍ଟ ଅଛି । ମର୍ଯ୍ୟାଦା ଯୁକ୍ତ ଏବଂ ଏକ ବଂଶର ପ୍ରତିଷ୍ଠା ଦିଗରେ ଧନବାଦ୍ୟ ସହାୟତା ହେତୁ ତା'ର ପ୍ରାଚୀନତାକୁ ଲୋକ ଲୋଚନକୁ ଆଣିବାରେ ଯେଉଁମାନେ ଚେଷ୍ଟିତ ହେବା ଉଚିତ, ନୀରବ ରହିବା ସ୍ପୃହଣୀୟ ହେଉ ନାହିଁ; ବରଂ ସେମାନଙ୍କର ଭୂଲ ଏତିକି ଯେ ସେମାନେ ଏକ ମହାନ ଐତିହାସିକତାର ମୂକସାକ୍ଷୀ ଏବଂ ଦିଲ୍ଲୀ ସମ୍ରାଟଙ୍କର ବଂଶଧର ମାନଙ୍କର ବିଷୟରେ ଜାଣିବି ଚୁପରହି ଭୁଲ କରିଛନ୍ତି । ତେଣୁ ସେହି ମହାନ ତରବାରୀ ଯେଉଁଠାରେ ଥିଲେ ବି ନମସ୍ୟ ନିଶ୍ଚୟ ।





# ପାଟ ସିନ୍ଦୁର

କୋଶଲଗଡ଼ (ପାଟଣାଗଡ଼) ର ଅଧିଷ୍ଠାତ୍ରୀ ଦେବୀ ମାଁ ପାଟଣେଶ୍ୱରୀ ଏବଂ ତାଙ୍କ ସାନ ଭଉଣୀ ସ୍ୱରୂପା ମାଁ ସମଲେଶ୍ୱରୀଙ୍କୁ ପାଟ-ସିନ୍ଦୁର ଅର୍ପଣ କଲାପରେ ଦଶହରା ଉତ୍ସବର ଆରମ୍ଭ ହେଲା ବୋଲି ଧରି ନିଆଯାଏ । ପାଟ-ସିନ୍ଦୁର ପ୍ରଥମ ଅର୍ଘ ରୂପେ ବିବେଚିତ ହୁଏ । ଦେବୀ ମାନଙ୍କଠାରେ ଏହା ଅର୍ପିତ ହେଲା ପରେ ହିଁ ଦଶହରା ପର୍ବର ଅନୁକୂଳ କରାଯାଏ ବୋଲି ଏହାର ଗୁରୁତ୍ୱ ଅଧିକ । ତେବେ ପ୍ରଶ୍ନ ଉଠେ ପାଟସିନ୍ଦୁର କ'ଣ ? କିଏ କାହାକୁ କେତେବେଳେ କେଉଁ ପଦାର୍ଥ କିପରି କାହିଁକି ଅର୍ପଣ କରନ୍ତି ଓ କିଏ ଏହାକୁ କେଉଁ ଅବସ୍ଥାରେ ଗ୍ରହଣ କରନ୍ତି ?

## ପାଟ-ସିନ୍ଦୁର କ'ଣ ?

ପାଟଣାଗଡ଼ସ୍ଥ ସମଲେଇ ମନ୍ଦିରର ରାଠୋର ବଂଶୀୟ ପୂଜକ ଭାଇ ଶ୍ରୀଯୁକ୍ତ ମୀନକେତନ ସିଂହଙ୍କ ମତରେ ପାଟଣା ରାଜ୍ୟର ମହାରାଣୀ (ପାଟରାଣୀ) ସଧବା ଥିବା ପର୍ଯ୍ୟନ୍ତ ଇଷ୍ଟଦେବୀ ମାଁ ପାଟଣେଶ୍ୱରୀ ଓ ସମଲେଇଙ୍କୁ ପାଟ (ବା ସୁତାର କପଡ଼ା) ଏବଂ ସିନ୍ଦୁରକୁ ମନ୍ଦିର ପର୍ଯ୍ୟନ୍ତ ପହଞ୍ଚାଇ ଦେବୀଙ୍କୁ ସମର୍ପଣ କରିବାକୁ ନିର୍ଦ୍ଦିଷ୍ଟ ମାଧ୍ୟମ ଦେଇ ଅର୍ପଣ କରାଯାଏ । ସେହି ଅର୍ପିତ ସିନ୍ଦୁର ଓ ପାଟକୁ ଦେବୀଙ୍କ ପର୍ଯ୍ୟନ୍ତ ପହଞ୍ଚାଇବାକୁ ପରମ୍ପରାର ପାଳନ କରାଯାଏ । ଏହା ନିର୍ଦ୍ଦିଷ୍ଟ ତିଥିରେ (ଆଶ୍ୱୀନ ଅମାବାସ୍ୟା ତିଥିରେ) ଦେବୀଙ୍କ ନିକଟରେ ପହଞ୍ଚେ ଯାହାକି ପାଟଣା ମହାରାଣୀଙ୍କ ସମ୍ପୂର୍ଣ୍ଣ ନିଜସ୍ୱ ଅଧିକାର ରୂପେ ବିବେଚିତ ହୁଏ । ତେଣୁ ପାଟଣା ରାଜ୍ୟର ଅଧିଷ୍ଠାତ୍ରୀ ଦେବୀଙ୍କୁ ପାଟଣା ରାଜ୍ୟର ପାଟରାଣୀଙ୍କ ଦ୍ୱାରା ଅର୍ପିତ ପାଟ ଓ ସିନ୍ଦୁର ହିଁ ପାଟ-ସିନ୍ଦୁର ରୂପେ ବିବେଚିତ ହୁଏ । ଏହି ପାଟ-ସିନ୍ଦୁର ରାଜ ଅନ୍ତପୁରର ସମ୍ପୂର୍ଣ୍ଣ ନିଜସ୍ୱ ଅଧିକାରଭୁକ୍ତ ବିଷୟ ରୂପେ ବିବେଚିତ ହୁଏ । ଅର୍ଥାତ ଏହି ପାଟ-ସିନ୍ଦୁର ବିଷୟରେ ରାଜାଙ୍କ ମଧ କିଛି କହିବାର କିମ୍ବା



କରିବାର ନ ଥାଏ । ଏହା ପାଟରାଣୀ ଓ ଦେବୀ ମାଙ୍କ ମଧ୍ୟରେ ଥିବା ଆଧ୍ୟାତ୍ମିକ ସମ୍ପର୍କ ର ସେତୁ ରୂପେ ବିବେଚିତ ହୁଏ । ରାଜା କେବେ ହେଲେ ହସ୍ତକ୍ଷେପ କରି ନଥିବାର ପରମ୍ପରା ରହିଛି । ସେ ଏହି ବିଷୟ ଜାଣନ୍ତି ନାହିଁ ମଧ୍ୟ । ତେଣୁ ପାଟରାଣୀ ଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ ତିଥିରେ ଯଥାରୀତି ଅର୍ପିତ ପାଟ ଓ ସିନ୍ଦୁର କୁ ହିଁ ପାଟ-ସିନ୍ଦୁର କୁହାଯାଏ ଓ ତାହାର ମାନ୍ୟତା ଦିଆଯାଏ । ଅନ୍ୟକାହାର ଦ୍ୱାରା ଅର୍ପିତ ପାଟ-ସିନ୍ଦୁରକୁ ଦେବୀ ଆଦୌ ଗ୍ରହଣ କରନ୍ତି ନାହିଁ - ଏହା ପରମ୍ପରା ଓ ପ୍ରବାଦରେ ମଧ୍ୟ ଅଛି ।

ପୁଣି ଦେବୀଙ୍କ ପାଇଁ ବର୍ଷେ ପର୍ଯ୍ୟନ୍ତ ଏହି ସିନ୍ଦୁର ଦେଲାପରେ ଅବଶିଷ୍ଟକୁ ସେ ବର୍ଷସାରା ବ୍ୟବହାର କରନ୍ତି ବୋଲି କୁହାଯାଏ । ପୁଣି ଅନେକେ ମହାରାଣୀ ପିନ୍ଧିଥିବା ପାଟର କିଛି ଅଂଶ ଚିରି ଦିଅନ୍ତି ଓ ବ୍ୟବହାର କରିଥିବା ସିନ୍ଦୁରର କିଛି ଦିଅନ୍ତି ବୋଲି ଯାହା କହନ୍ତି ତାହା ଆଦୌ ଯୁକ୍ତି ସଂଗତ ନୁହେଁ । କାରଣ ଦେବୀଙ୍କୁ ପାଟରାଣୀ ନତମସ୍ତକ ହୁଅନ୍ତି । ତେଣୁ, ତାଙ୍କର ବ୍ୟବହାର କରାଯାଇଥିବା ପାଟ ଓ ସିନ୍ଦୁର ତାହା ନ ହୋଇ ସମ୍ପୂର୍ଣ୍ଣ ନୂତନ ପାଟ ଓ ସିନ୍ଦୁର ହୋଇଥାଏ । ଅବଶ୍ୟ ଏବେ ପାଟ ବଦଳରେ ଯେଉଁ କପଡ଼ା ଦିଆଯାଉଛି ତାହା ନିମ୍ନମାନର ବୋଲି ପୂଜାରୀଙ୍କ ଅଭିଯୋଗ ମଧ୍ୟରେ ଯାହା ରହସ୍ୟ ଥାଉନା କାହିଁକି ଏକଥା ସତଯେ ସମ୍ପୂର୍ଣ୍ଣ ନୂତନ ପାଟ ଓ ସିନ୍ଦୁର କୁ ହିଁ ପାଟ-ସିନ୍ଦୁର କୁହାଯାଏ ।

**ଚାଉଳ ଓ ଗୁଆ ଗ୍ରହଣ :**

କୁଆଁରୀ ବସିଥିଲା ବର୍ଷରେ କୁଆଁରୀ ବସୁଥିବା ଯୁବକ ଓ ତା'ର ପିତା ପାଟରାଣୀଙ୍କ ପାଖକୁ ମୂଳା ଅଷ୍ଟମୀ ଦିନ ଯଥାରୀତି ଯାଇ ଗୁଆ ଓ ଚାଉଳ ଗ୍ରହଣ କରନ୍ତି ନିର୍ଦ୍ଦିଷ୍ଟ କ୍ରମରେ ଦଣ୍ଡାୟମାନ ହୋଇ । ପୁଣି ଅନ୍ୟ ବର୍ଷ ମାନଙ୍କରେ ବୁଢ଼େକ ହିଁ ଏହାକୁ ଗ୍ରହଣ କରନ୍ତି ।

**ପାଟ-ସିନ୍ଦୁର କିଏ କିପରି ଗ୍ରହଣ କରନ୍ତି ?**

ଖ୍ରୀ:ପୂ: ୫୪ ବେଳରୁ ହିଁ ପାଟଣାଗଡ଼ରେ "ବଏଲ" ଯାତ୍ରାର ପରମ୍ପରା ଜୀବିତ ଅଛି । ସେତେବେଳେ ସାମନ୍ତ ରାଜା ମାଧବ ଚନ୍ଦ୍ର ଦେବ ରାଜତ୍ୱ କରୁଥିଲେ ଓ ସେହ ସମୟରେ ହିଁ ଦକ୍ଷିଣ କାଳୀ (ମାଁ ଦୁର୍ଗା) ପଉନେଶ୍ୱରୀ ଏଠାକାର ଇଷ୍ଟଦେବୀ



ହେଲେ । ଉତ୍ପାତ କରୁଥିବା ବିଭିନ୍ନ ଆସୁରୀ ଶକ୍ତିକୁ ବର୍ଷେ ପର୍ଯ୍ୟନ୍ତ ଦମନ କରିବା (କିଲଣ ଦେବା) ୀବଂ ସର୍ବସାଧାରଣରେ ଦର୍ଶନ ଦେବା ପାଇଁ ମଧ୍ୟ ବରୁଆ ଦେହରେ ବିଜେ କରିବା ପରମ୍ପରା ସେତେବେଳରୁ ରହିଛି । ଏକ ପୀଢ଼ୀରୁ ଅନ୍ୟ ପୀଢ଼ୀକୁ ବରୁଆ ପରିବର୍ତ୍ତନ କରିବା ବା କୁଆଁରୀବସା ମାଧ୍ୟମରେ ଦୈବୀ କାର୍ଯ୍ୟ ସମ୍ପନ୍ନ କରାଯାଇଥାଏ । ତେଣୁ ଯେଉଁ ଅବିବାହିତ {କୁଆଁରୀ କନ୍ୟାକୁ (ଅପ୍ରାପ୍ତ ବୟସ୍କା କନ୍ୟାକୁ) ଔପଚାରିକ ବିବାହ କଲାପରେ ମଧ୍ୟ ଅବିବାହିତ ପରି ଜୀବନ ଯାପନ କରୁଥିବା ଗଙ୍ଗ-ରାଠୋର ବଂଶୀୟ ବ୍ରହ୍ମଚାରୀ ବରୁଆ} ଯୁବକ ଏବଂ ତାଙ୍କ ପିତାଙ୍କୁ ଅର୍ପିତ ଗୁଆ ଚାଉଳ ଗ୍ରହଣର ଏକ ସପ୍ତାହ ପରେ ଅର୍ଥାତ ମହାଳୟା ଦିନ ବୁଡ଼େକ (ପାଟଣାଗଡ଼ର ଗୌନ୍ତୀଆ) ଦେବୀଙ୍କ ଠାରୁ ଅନୁମତି ନେଇ ପାଟରାଣୀଙ୍କ ଠାରୁ ପାଟ-ସିନ୍ଦୁର ଗ୍ରହଣ କରନ୍ତି ଓ ମନ୍ଦିର ମଧ୍ୟରେ ରଖନ୍ତି । ବର୍ତ୍ତମାନ ଅବସ୍ଥାରେ ମହାରାଣୀ ପୁଷ୍ପଲତାଙ୍କ ଠାରୁ ପାଟ ବୁଡ଼େକ (ପାଟଣାଗଡ଼ର ଗୌନ୍ତିଆ) ତାହା ଗ୍ରହଣ କରି ଆସୁଛନ୍ତି । ତାଙ୍କ ପରେ ଶ୍ରୀମତୀ ସଂଗୀତା କୁମାରୀ ଦେବୀ ତାହା ଅର୍ପଣ କରିବେ ।

ପାଟ-ସିନ୍ଦୁର ପାଟରାଣୀଙ୍କର ସମ୍ପୂର୍ଣ୍ଣ ନିଜସ୍ୱ ଅଧିକାର ଭୁକ୍ତ ଆଧାତ୍ମିକ ବିଷୟ ହେତୁ ଏଥିରେ ମହାରାଜା କିମ୍ବା ସରକାର କୌଣସି ପ୍ରକାରର ହସ୍ତ କ୍ଷେପ କରନ୍ତି ନାହିଁ । ଯଦି କେବେ ଏହି ଅଧିକାରକୁ ଛଳନାରେ ହସ୍ତକ୍ଷେପ କରି ପରମ୍ପରାକୁ ଉଲଂଘନ କରିବାର ଅପଚେଷ୍ଟା କରାଯାଏ, ତେବେ ମାତୃଶକ୍ତିର ପ୍ରଚଣ୍ଡ ଆଘାତରେ ଶାସନକଳ ବ୍ୟତିବ୍ୟସ୍ତ ହୋଇପଡ଼ିବା ସ୍ୱାଭାବିକ ଯାହାକି ଅତୀତରେ କେବେ ଥରେ ସଂଘଟିତ ହୋଇଥିବା କଥା କୁହାଯାଏ ।

## ପାଟ-ସିନ୍ଦୁର କେବେ ?

ଆଶ୍ୱିନ କୃଷ୍ଣ ଅଷ୍ଟମୀ (ମୂଳାଷ୍ଟମୀ) ଦିନ ଗୁଆ-ଚାଉଳ ଓ ତା'ପରେ ପାଟ-ସିନ୍ଦୁର ଅର୍ପଣର ବିଧି ଅଛି । ଯଦି ପାଟରାଣୀ କୌଣସି କାରଣରୁ ସେତେବେଳେ ଶୈଳଶ୍ରୀ ରାଜପ୍ରସାଦରେ ଅବସ୍ଥାନ କରୁନଥିବେ, ତେବେ ମଧ୍ୟ ସେ କୌଣସି ମାଧ୍ୟମରେ ସେଦିନ ହିଁ ବୁଡ଼େକଙ୍କୁ ନିଶ୍ଚୟ ପାଟ-ସିନ୍ଦୁର ହସ୍ତାନ୍ତର କରନ୍ତି । ଏହି ପରମ୍ପରାର ବ୍ୟତିକ୍ରମ ହୋଇନଥିବା କଥା ପୂଜାରୀ ମାନେ କହନ୍ତି ।



ଭାଦ୍ରବ-ଶୁକ୍ଳ-ଅଷ୍ଟମୀ ଠାରୁ ଆଶ୍ୱୀନ୍-ଶୁକ୍ଳ-ଅଷ୍ଟମୀ ପର୍ଯ୍ୟନ୍ତ ଏକମାସ ସମୟକୁ "ଦେବୀ ଶୟନ" କୁହାଯାଏ । ଏହି ସମୟ ମଧ୍ୟରେ ଦେବୀଙ୍କୁ କେବଳ ପୂଜା କରାଯାଉଥାଏ । ତାଙ୍କୁ ଆଶ୍ୱିନ-ଶୁକ୍ଳ-ଅଷ୍ଟମୀ ଦିନ ଉଠାଯାଏ ଏବଂ ଅଷ୍ଟମୀ ପୂଜା କରାଯାଏ । ଅଷ୍ଟମୀ ପୂଜା ପରେ ଦେବୀଙ୍କୁ ଅର୍ପିତ ପାଟ-ସିନ୍ଦୁର ର କିଛି ଅଂଶ ଜରାଗୁଡ଼ା ଗଡ଼ (ଜରାସିଂହା) ଏବଂ ଅନ୍ୟ କେତେ ସ୍ଥାନକୁ ପାଟ-ସିନ୍ଦୁର ପୂଜାରୀ ମାନଙ୍କ ଦ୍ୱାରା ଅର୍ପିତ ହୁଏ । ପୂର୍ବେ "ପାଟ ପଡ଼ିବା" ପରେ ହିଁ ତାହା ପଠାଯିବାର ବିଧିଥିଲା । କିନ୍ତୁ ଏବେ ଅଷ୍ଟମୀ ଦିନରେ ହିଁ ସେହି କାର୍ଯ୍ୟ ସମ୍ପନ୍ନ କରାଯାଉଛି । ପାଟ ସିନ୍ଦୁର ଜରାସିଂହା ଓ ଅନ୍ୟ ସ୍ଥାନକୁ ଗଲେଯାଇ ସେଠାକାର ବଏଲ ଯାତ୍ରା ଆରମ୍ଭ ହେବାରେ ତତ୍ପର୍ଯ୍ୟ ଯାହା ଥାଉନା କାହିଁକି, ଏହି ପରମ୍ପରା ଦୀର୍ଘସ୍ଥାୟୀ ହେବା ହିଁ ବିଚିତ୍ର ଅଟେ ।

## ପାଟ-ସିନ୍ଦୁର କାହିଁକି ?

ଶକ୍ତି ପୀଠ ପାଟଣାଗଡ଼ର ଚତୁର୍ଦ୍ଦିଗକୁ ମୁହଁକରି ଦୁର୍ଗାଙ୍କ ମୁଖ୍ୟ ଚାରି ରୂପର ଅବସ୍ଥାନ ଓ ସେମାନଙ୍କର ସସତର୍କ ଦୃଷ୍ଟି କୋଶଳଗଡ଼ର ଚାରିଦିଗକୁ ନିରୀକ୍ଷଣ ଅଟେ । ମାଁ ଭବାନୀ କୋଶଳେଶ୍ୱର ମହାଦେବଙ୍କ ପାର୍ଶ୍ୱରେ ରହି ପୂର୍ବକୁ ଦୁର୍ଗାଙ୍କ ପ୍ରତୀକ ରୂପେ, ମାଁ ସମଲେଇ ଉତ୍ତରକୁ ଲକ୍ଷ୍ମୀଙ୍କ ପ୍ରତୀକ ରୂପେ ଏବଂ ମାଁ ଦଶମତୀ ପଶ୍ଚିମକୁ ମାଁ ସରସ୍ୱତୀଙ୍କ ପ୍ରତୀକ ରୂପେ ଅବସ୍ଥାପିତା । ଏମାନେ ସମସ୍ତେ ସର୍ବଦା ଚତୁର୍ଦ୍ଦିଗକୁ ସତର୍କ ଦୃଷ୍ଟିରେ ଶତୃକୁ ଭୟଭୀତ କରାଇବାକୁ ଚେଷ୍ଟିତା । ତେଣୁ କୋଶଳ ଗଡ଼ର ମାହାରାଜାଙ୍କୁ ରକ୍ଷା କରିବାକୁ ଏମାନେ ସର୍ବଦା କର୍ମରତ । ମହାରାଜାଙ୍କ ନିମିତ୍ତ ପାଟରାଣୀଙ୍କର ସୌଭାଗ୍ୟ ଉଜ୍ଜିବିତ ରହେ । ତେଣୁ ଶକ୍ତି ସ୍ୱରୂପିଣୀ ମାତୃଶକ୍ତିକୁ ଏହି ଶକ୍ତି ପୀଠରେ ପ୍ରାଧାନ୍ୟ ଦିଆଯାଇଛି । ଶକ୍ତି ପୀଠର "ବଏଲ" ଯାତ୍ର ନିମିତ୍ତ ପାଟ-ସିନ୍ଦୁର କୁ ପାଟରାଣୀଙ୍କ ତରଫରୁ ପାଟବୁଢେକଙ୍କୁ ପ୍ରଦତ୍ତ ଓ ପାଟ ଖଣ୍ଡାରେ ଏହାକୁ ପ୍ରଥମେ ଅର୍ପଣ ପରେ ଅନ୍ୟ ଦୈବୀ କର୍ମ ସମ୍ପନ୍ନରେ ଗୁରୁତ୍ୱ ଅବଶ୍ୟ ରହିଛି । ପରମ୍ପରାର ସୃଷ୍ଟି ଯେଉଁ କାରଣରୁ ଥାଉନା କାହିଁକି ରାଜପରିବାରର ଅନ୍ତଃପୁର ଓ ମାଁ ଦୁର୍ଗାଙ୍କର ସମ୍ପର୍କର ଦୀର୍ଘ ଶତାବ୍ଦୀ ଶତାବ୍ଦୀର ଅକ୍ଷୁର୍ଣ୍ଣତା ହିଁ ଆଶ୍ଚର୍ଯ୍ୟ ଲାଗେ ।



ତେବେ ପାଟ-ସିନ୍ଦୁରର ଗୁରୁତ୍ୱ ଶକ୍ତିପୀଠରେ ନାରୀ ପ୍ରାଧାନ୍ୟତା, ମାତୃଶକ୍ତିର ସ୍ୱାତନ୍ତ୍ର୍ୟତା ଆଦି ମଧ୍ୟରେ ପାଟ-ସିନ୍ଦୁର ଆବଶ୍ୟକତା ଅନିର୍ବାର୍ଯ୍ୟ ମନେ କରାଯାଏ ଏବଂ ଯୁଗ ଯୁଗର ପରମ୍ପରା ଆଧୁନିକ ମାନବକୁ ମଧ୍ୟ ସ୍ତବ୍ଧ କରିଥାଏ ।





# ଏକ ଅମ୍ଳାନ ବ୍ୟକ୍ତିତ୍ୱ

## ସ୍ୱର୍ଗତ ରାଜେନ୍ଦ୍ର ନାରାୟଣ ସିଂହଦେଓ

ଜନ ମାନସ ପଟରେ ଅନେକ ବ୍ୟକ୍ତିତ୍ୱ ସ୍ମୃତିର ଅଲିଭା ରେଖା ଆଙ୍କି ସେମାନେ ନମସ୍ୟ ହେବେ । ସ୍ୱାଭାବିକ ଓ ଚିରାଚରିତ ମଧ୍ୟ ସେହିପରି ଏକ ବ୍ୟକ୍ତିତ୍ୱର ଅଧିକାରୀ ପୂର୍ବତନ ପାଟଣା ରାଜ୍ୟର ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଥିଲେ । ଓଡିଶାର ପ୍ରଥମ ଅଣକଂଗ୍ରେସ ମୁଖ୍ୟମନ୍ତ୍ରୀ ଭାବରେ ସେ ଯେତେ ସ୍ମରଣୀୟ ଥିଲେ, ଜଣେ ମିତଭାଷୀ, ମିଷ୍ଟଭାଷୀ, ସରଳ ବ୍ୟକ୍ତିତ୍ୱ, ନିରଳସ ସାଧକ, ଉଚ୍ଚାକାଂକ୍ଷୀ ଏବଂ ସର୍ବୋପରି ଜଣେ ଦୂରଦ୍ରଷ୍ଟା ଭାବେ ନମସ୍ୟ ଥିଲେ ମଧ୍ୟ । ଅଠରଗଡର ମଉଡମଣି ବୋଲାଉଥିବା ପାଟଣା ମହାରାଜା ସ୍ୱାଧୀନତା ପରେ ନିଜ ରାଜ୍ୟକୁ ସର୍ବ ପ୍ରଥମେ ଅଖଣ୍ଡ ଭାରତ ସହ ମିଶାଇବାରେ ସ୍ୱୀକୃତି ପ୍ରଦାନ କରି ଓ ଅନେକ ଉଚ୍ଚପଦବୀକୁ ପ୍ରତ୍ୟଖ୍ୟାନ କରି ଗଡଜାତ ଅଞ୍ଚଳରେ ସଚେତନତା ଜାଗରଣ କରିବାରେ ପ୍ରୟାସ କରିଥିଲେ । ତାଙ୍କର କେତୋଟି ସ୍ମରଣୀୟ ଐତିହାସିକ କାହାଣୀରୁ ତାଙ୍କୁ ଅନେକ ପ୍ରକାରରେ ଜାଣି ହୁଏ ଯେ-

୧୯୪୭ ଡିସେମ୍ବର ୩୦ । ଭାରତ ତା'ର ସଦ୍ୟ ସ୍ୱାଧୀନତା ପାଇଥାଏ । ସାଧାରଣ ନାଗରିକ ବିଚ୍ ରାସ୍ତାରେ ସ୍ୱାଧୀନତା ଲାଭ କରିଥିବାର ଜଶମ ମନାଉଥାଏ । ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଅସଂଖ୍ୟ ଛୋଟବଡ ଗଡଜାତର ଅସ୍ତିତ୍ୱ ଅଖଣ୍ଡ ଭାରତରେ ଲୀନ କରିବାରେ ଅନେକ ପ୍ରୟାସ କରୁଥାନ୍ତି । ସେ ଓଡିଶାର ୨୬ଟି ଗଡଜାତ ମିଶ୍ରଣ ପ୍ରସ୍ତାବ ପାଇଁ ୨୬ ଜଣ ଯାକ ରାଜାଙ୍କୁ ଆମନ୍ତ୍ରଣ କରିଥାନ୍ତି । ଆମନ୍ତ୍ରଣ ସମସ୍ତଙ୍କ ଦ୍ୱାରା ସ୍ୱୀକୃତ ଥାଏ । ଦେଶୀୟ ରାଜା ଗଣ କଟକରେ ଉପସ୍ଥିତ ଥାଇ ନିଜନିଜର ବାସ ଭବନ କିମ୍ବା ବର୍ଣ୍ଣାଢ୍ୟ ହୋଟେଲ ମାନଙ୍କରେ ଅବସ୍ଥାନ କରୁଥାନ୍ତି । ସମସ୍ତେ ନୂତନ ଭାରତ ସରକାରଙ୍କର ଉଚ୍ଚମାନର ଆତିଥ୍ୟରେ ମସ୍ତଗୋଲ ଥିଲେ । ନିମଜଯାଇ ଥିଲେ ।



ରାଜେନ୍ଦ୍ର ନାରାୟଣ ଚିନ୍ତାମଗ୍ନ । ସମସ୍ତଙ୍କୁ ସେ ଏକ ଗୁପ୍ତ ବୈଠକରେ ଆହ୍ୱାନ କରିଥିଲେ । ଚୂଡ଼ାନ୍ତ ନିଷ୍ପତ୍ତି ନେବା ପୂର୍ବରୁ ସ୍ୱତନ୍ତ୍ର କୋଶଳ ରାଜ୍ୟ ଗଠନର ପ୍ରସ୍ତାବ ଧରି ସର୍ଦ୍ଦାର ବଲ୍ଲଭ ଭାଇଙ୍କ ସମ୍ମୁଖକୁ ଯାଇଥାନ୍ତେ ସେ । ରାଜାଗଣ ମଧ୍ୟ ତାଙ୍କର ଏ ପ୍ରସ୍ତାବରେ ସ୍ୱୀକୃତି ଦେଇ ସାରିଥିଲେ । ସମସ୍ତଙ୍କ ମଧ୍ୟରୁ ଜ୍ଞାନୀ ଓ ବୃହତ୍ତମ ଗଡଜାତର ରାଜା ହିସାବରେ ସ୍ୱତନ୍ତ୍ର ସ୍ଥାନ ଥାଏ ତାଙ୍କର

ସେ ଦିନର ସୂର୍ଯ୍ୟାସ୍ତ ପରେ ରାଜେନ୍ଦ୍ରଙ୍କର ହୃଦସ୍ପନ୍ଦନ ବଢ଼ିଗଲା । ସମସ୍ତ ରାଜାଙ୍କୁ କଟକସ୍ଥିତ ନିର୍ଦ୍ଦିଷ୍ଟ ହଟେଲରେ ଏକତ୍ରୀତ ହେବାର ସ୍ୱତନ୍ତ୍ର ବ୍ୟବସ୍ଥା କରି କାର ଦେଇ ଜଣେ ଘନିଷ୍ଠ ଅଫିସରଙ୍କୁ ଡ୍ରାଇଭର ସହ ପଠାଇଲେ । ସେଦିନର କାରଟି ଦେଖିଲା -

ଅବଶିଷ୍ଟ ୨୫ ଟି ଯାକ ରାଜା ବ୍ୟସ୍ତ - କିଏ ମଦ୍ୟପାନ ରେ ତ କିଏ ଶୟନ କକ୍ଷରେ ନିଦ୍ରାଦେବୀ କୋଳରେ । କିଏ ନିଜର ସ୍ୱାଧୀନତାର ଶେଷ ରାତ୍ରୀଟିକୁ କେତେଜଣ ନବାଗତା ତରୁଣୀ ଗହଣରେ ବିତାଉଥିବା ଅବସ୍ଥାରେ ତ କିଏ ଅନ୍ୟ କୌଣସି ଉଦ୍ଦେଶ୍ୟରେ ଅନ୍ୟତ୍ର ଅବାହୁତା । କାରଟି ନିରାଶ ହୋଇ କାହାରିକୁ ନ ଆଣି ଫେରିବା ପରେ ରାଜେନ୍ଦ୍ର ନାରାୟଣଙ୍କ ବ୍ୟସ୍ତତା ତୀବ୍ରତର ରୂପନେଲା । ସେ ହତାଶ ହେଲେ, ଭାଙ୍ଗି ପଡିଲେ । ସାରା ରାତି ବିଛଣାରେ ଛଟପଟ ହେଲେ । ଓଡିଶାର କୋଶଳୀ ଭାଷାଭାଷୀ ଗଡଜାତ ଓ ମଧ୍ୟପ୍ରଦେଶ ତଥା ବିହାରର କୋଶଳୀ ଭାଷା କହୁଥିବା କେତେକ ଗଡକୁ ମିଶାଇ ସର୍ବ ମୋଟ ୩୬ଟି ଗଡଜାତକୁ ନେଇ ସ୍ୱତନ୍ତ୍ରକୋଶଳ ପ୍ରଦେଶ ଗଠନର ସ୍ୱପ୍ନ ଚୁରମାର ହୋଇଗଲା ତାଙ୍କର ।

ବ୍ୟତିବ୍ୟସ୍ତ ରାଜେନ୍ଦ୍ର ବିବ୍ରତ ହୋଇ ପଡିଲେ । ବିଚିତ୍ର ଏତିକି ଯେ ପରବର୍ତ୍ତୀ ଦିନର ପୂର୍ବାହ୍ନ ପର୍ଯ୍ୟନ୍ତ ଜଣେ ହେଲେ ରାଜା ରାଜେନ୍ଦ୍ରଙ୍କୁ ସାକ୍ଷାତ କରି ନଥିଲେ ।

ରାଜେନ୍ଦ୍ର ପ୍ରତିକ୍ରିୟାଶୀଳ ହୋଇ ଉଠିଲେ । ସ୍ୱତନ୍ତ୍ର କୋଶଳ ପ୍ରଦେଶ ଗଠନ କରିବାର ଆଶା ଛାଡି ଓଡିଶା ସହ ମିଶ୍ରଣକୁ ସ୍ୱୀକାର କରିନେଲେ ସେ ।





ସର୍ବ ପ୍ରଥମେ ସର୍ଦ୍ଦାର ପଟେଲଙ୍କ ନିକଟକୁ ଯାଇ ଗଡଜାତ ହସ୍ତାନ୍ତର କାଗଜରେ ସ୍ୱାକ୍ଷର କଲେ ଓ ତାଙ୍କ ପାଇଁ ଉଦ୍ଦିଷ୍ଟ ଥିବା ଆସନରେ ମ୍ରିୟମାଣ ହୋଇ ହତାଶାରେ ବସି ତାଙ୍କର କୋଶଳ ରାଜ୍ୟ ଗଠନର ଆଶାକୁ ରାଜନ୍ୟବର୍ଗଙ୍କ ଖାମ ଖିଆଲିଆ ଭାବର ଆଶାକୁ କିପରି ଚୁରମାର କରି ଚାଲିଥାଏ, ଆଖିବୁଜି କଳ୍ପନା କରୁଥିଲେ । ତାଙ୍କର ଦୀର୍ଘ ନିଶ୍ୱାସ କୋଶଳ ରାଜ୍ୟ ଗଠନ ପ୍ରସ୍ତାବକୁ ଧୂମିଳିତ କରୁଥାଏ । ଅବଶ୍ୟ ପରବର୍ତ୍ତୀ ସମୟରେ ସ୍ୱାଧୀନ ଭାରତର ରାଜଦୂତ ରୂପେ ଅଷ୍ଟ୍ରେଲିଆରେ ଅବସ୍ଥାନ କରିବାର ନେହେରୁଙ୍କ ପ୍ରସ୍ତାବକୁ ସେ ପ୍ରତ୍ୟାଖ୍ୟାନ କରି ଗଡଜାତର ଜନସାଧାରଣଠାରେ ଗଣତନ୍ତ୍ରର ସଚେତନତାର ପ୍ରଚାର କରିବା ପାଇଁ 'ଗଣତନ୍ତ୍ର ପରିଷଦ' ନାମକ ଏକ ରାଜନୈତିକ ଦଳ ଗଢି ସକ୍ରିୟ ରାଜନୀତି କଲେ ଏବଂ ବିରୋଧି ଦଳର ନେତା ହୋଇ ସମସ୍ତଙ୍କ ଶ୍ରଦ୍ଧାଭାଜନ ହୋଇଥିଲେ ।

ଅନେକ ସମୟରେ ସିଂହଦେଓଙ୍କୁ ବିଭିନ୍ନ କାରଣ ପାଇଁ କଲିକତା ଯିବାକୁ ପଡୁଥାଏ । ସେ ସିଗାରେଟ ର ପ୍ରିୟ ଥିଲେ । କଲିକତାର ଏକ ନିର୍ଦ୍ଦିଷ୍ଟ ଦୋକାନରୁ ସିଗାର ଓ ଟବାକୋ ଆଣୁଥିଲେ, ତାହା ପୁଣି ୪/୫ ମାସ ପାଇଁ । ଅନେକ ଦିନ ସିଗାର କିଣି ମଧ୍ୟ ଦୋକାନୀକୁ ନିଜର ପରିଚୟ ଦେଇ ନଥିଲେ । ତାଙ୍କର ଉଦ୍ରେଚିତ ବ୍ୟବହାର ରାଜକୀୟ ଚେହେରା ଏବଂ ମିତ ଭାଷିତାରେ ପ୍ରୀତ ହୋଇ ଦୋକାନୀ ତାଙ୍କୁ ଆଦର କରୁଥାଏ । କିନ୍ତୁ ତାଙ୍କର ନାମ ଜାଣିବାକୁ ଆଗ୍ରହୀ ଥାଏ । ଦିନେ ସେ ନାମ ପଚାରିବାକୁ ଚାହିଁ ମଧ୍ୟ ସିଧା ସିଧା ପଚାରିବାର ସାହସ କରି ନଥିଲା । କେସ୍ ମେମୋରେ ନାମଟି ଛାଡି ତାଙ୍କୁ ଦୟାକରି କେଉଁ ନାମରେ କାଟିବି ବୋଲି ପଚାରିଥିଲା ଦୋକାନୀ ଜଣକ । ରାଜେନ୍ଦ୍ର ସ୍ୱଭବ ସୁଲଭ ଢ଼ଙ୍ଗରେ ଦରକାର ନାହିଁ ବୋଲି କହି ନିଜର ପରିଚୟ ନଦେଇ ପଳାଇ ଆସିଲେ । କିନ୍ତୁ ପରବର୍ତ୍ତୀ ପାଳିରେ ସେ ଯେତେବେଳେ ଏକାକୀ ଗଲେ, ଦୋକାନୀ ତାଙ୍କୁ ନିଛାଟିଆ ସ୍ଥାନ ପର୍ଯ୍ୟନ୍ତ ଅନୁସରଣ କରି ପରିଚୟ ଦେବାକୁ ଅଳିକରି ଥିଲା ଏବଂ ରାଜେନ୍ଦ୍ର ନିରୁପାୟ ହୋଇ ନିଜର ପରିଚୟ ଦେଇ ତାଙ୍କୁ ସ୍ତମ୍ଭୀଭୂତ କରି ଦେଇଥିଲେ । ସେ ରାଜେନ୍ଦ୍ରଙ୍କର ଚରଣତଳେ ପଡି ତାଙ୍କୁ ନିଜର ଅଜ୍ଞତାକୁ କ୍ଷମାଦେବାକୁ ବାରମ୍ବାର ଅନୁରୋଧ କରିଥିଲା । ତେଣୁ ରାଜେନ୍ଦ୍ର ସବୁବେଳେ ଶ୍ରଦ୍ଧେୟକୁ ଆଦର କରି ସମ୍ମାନର ସ୍ଥାନକୁ ଅଧିକାର କରି ପାରୁଥିଲେ । ରାଜା ହୋଇ ମଧ୍ୟ ସର୍ବସାଧାରଣପରି ଚଳି ଅମ୍ଳସନ୍ତୋଷ ପାଉଥିଲେ ।








ରାଜେନ୍ଦ୍ର ନାରାୟଣଙ୍କର କ୍ଷମାଗୁଣ ମଧ୍ୟ ଅବଶ୍ୟ ଦ୍ରଷ୍ଟବ୍ୟ ଅଟେ । ରାଜେନ୍ଦ୍ର ନାରାୟଣ ସାଂସଦ ଥିବାବେଳେ ଝାରସୁଗୁଡାରୁ ରେଳଯୋଗେ ଦିଲ୍ଲୀରୁ ଯାଉଥିଲେ । ତାଙ୍କୁ ଜଣେ କାର ଯୋଗେ ଝାରସୁଗୁଡାର ରେଳଷ୍ଟେସନ ପର୍ଯ୍ୟନ୍ତ ପହଞ୍ଚାଉ ଥାଏ ଓ ସଂସଦ ଅଧିବେଶନ ଶେଷ ହେଲେ ଫୋନ ପାଇ ତାଙ୍କୁ ଝାରସୁଗୁଡାକୁ ନେଇ ଆସୁଥାଏ ।

ଦିନେ -

ସେଦିନ ରାଜେନ୍ଦ୍ର ଦିଲ୍ଲୀରୁ ଫେରିଲେ । କାରର ଡ୍ରାଇଭର ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ଷ୍ଟେସନରେ ପହଞ୍ଚି ସାରିଥାଏ । କିଏ ଜଣେ ତାକୁ ଭୁଲ ବଶତଃ ଟ୍ରେନଟି ଘଣ୍ଟାଏ ଡେରି ଅଛି ବୋଲି କହିଦେଲା । ଡ୍ରାଇଭର ଜଣକ ସାମାନ୍ୟ ମନୋରଞ୍ଜନ ପାଇଁ ବସ୍ତି ଭିତରକୁ ଯାଇ ଘଣ୍ଟେ କଟାଇବାକୁ ସ୍ଥିର କଲା । କିନ୍ତୁ ଡ୍ରାଇଭର ବସ୍ତିକୁ ଯିବାର କିଛି ସମୟ ପରେ ପରେ ଟ୍ରେନଟି ଷ୍ଟେସନରେ ପହଞ୍ଚିଲା । ସିଂହଦେଓ ଡାଇଭରକୁ ଓ କାରକୁ ସେଠାରେ ନ ଦେଖି କାଳେ କିଛି ଅସୁବିଧା ହେତୁ ଆସିନାହିଁ ବୋଲି ଭାବି ଅନ୍ୟଏକ କାର ଭଡାରେ ନେଇ ବଲାଙ୍ଗିର ଚାଲି ଆସିଥିଲେ । କିନ୍ତୁ ପରେ ଡ୍ରାଇଭର ରେଳ ଷ୍ଟସନରେ ପହଞ୍ଚି ସିଂହଦେଓ ଆସି ଥିବାର ଖବର ପାଇ ବିବ୍ରତ ହୋଇ ବଲାଙ୍ଗିର ଅନୁଧାବନ କରି ମଧ ରାସ୍ତାରେ ନ ଭେଟି ଶୈଳଶ୍ରୀ ରାଜପ୍ରସାଦରେ ପରେ ପହଞ୍ଚି ନିଜର ଭୁଲ ସ୍ୱୀକାର କରିଥିଲା । ଡ୍ରାଇଭର ମାନଙ୍କର ଏହା ଅଭ୍ୟାସ ବୋଲି ସ୍ମିତ ହସି ଏକ ମନ୍ତବ୍ୟ ଦେଲେ ଏବଂ ସବୁ କିଛି ଭୁଲିଯାଇ ପୂର୍ବବତ ତାକୁ ଭଲ ବ୍ୟବହାର କରିଥିଲେ ଏବଂ ଘଟଣକୁ ସଂପୂର୍ଣ୍ଣ ଭୁଲିଗଲେ ।

ପୃଥ୍ୱୀରାଜ ଦେଓଙ୍କର କୌଣସି ସନ୍ତାନ ନଥିଲେ । ତେଣୁ ଷଢେଇକେଲାରୁ ତାଙ୍କ ଝିଆରୀ ପୁଅ ରାଜେନ୍ଦ୍ରଙ୍କୁ ସେ ପୌଷ ପୁତ୍ର କଲେ । ଫଳରେ ପାଟଣା ରାଜସିଂହାସନ ଉପରେ ଲୋଲୁପ ଦୃଷ୍ଟି ରଖିଥିବା କେତେଜଣ ରାଜ ବଂଶୀୟଙ୍କର ଇର୍ଷା ବୃଦ୍ଧି ପାଇଥାଏ । ପୃଥୀରଜ କାଳେ ସେହି ମାନେ ରାଜେନ୍ଦ୍ରଙ୍କର କିଛି କ୍ଷତି କରିପାରନ୍ତି ଭାବି ସଢେଇକେଲାରୁ ହିଁ ରାଜ ସେବକ ଅଣାଇ ରାଜେନ୍ଦ୍ରଙ୍କର ସେବାୟତ କଲେ ।






ରାଜପ୍ରସାଦ ମଧ୍ୟସ୍ଥ ଏକ ଉଦ୍ୟାନର ଏକ ବିଶେଷ ଅଂଶ କେବଳ ନବ ରାଜ ଦମ୍ପତିଙ୍କ ପାଇଁ ଉଦ୍ଦିଷ୍ଟ ରଖିଥିଲେ ପୃଥ୍ୱିରାଜ । ଉକ୍ତ ଉଦ୍ୟାନରେ ଏକ ମାୟା (ପିଜୁଳି) ଗଛ ଥାଏ । ସୁଆଦୁ ଓ ଆକର୍ଷଣୀୟ ମାୟା ରାଜେନ୍ଦ୍ରଙ୍କର ମନକୁ ମୋହି ନେଉଥାଏ । ରାଜ ଦମ୍ପତି ସେହି ଉଦ୍ୟାନରେ ବୁଲି କ୍ଳାନ୍ତିଦୂର କରୁଥିଲେ । ଚତୁର ରାଜେନ୍ଦ୍ର ଗଛର ପ୍ରତ୍ୟେକ ମାୟା ଠାରେ ପରିଚିତ ଥିଲେ। ଅନୁମାନ ତାଙ୍କର ଯଥେଷ୍ଟ ଅଧିକ ଥାଏ । ଦିନେ ଦେଖିଲେ ନିର୍ଦ୍ଦିଷ୍ଟ କେତୋଟି ଲୋଭନୀୟ ମାୟା ଉଭାନ ହୋଇଛି ଏବଂ ମାୟା ଗଛ ତଳେ କେତୋଟି ପଦଚିହ୍ନ ରହୁଛି । କୌତୁହଳ ତାଙ୍କର ବଢିଗଲା ।

କାରଣ ଅନୁସନ୍ଧାନ କଲେ ସେ ।

ଦିନେ ଶୈଳଶ୍ରୀ ପ୍ରାସାଦସ୍ଥ ଶୟନ କକ୍ଷର ଗବାକ୍ଷରୁ ଦେଖିଲେ - ସଢେଇକେଲାରୁ ଅଣାଯାଇ ତାଙ୍କର ସେବାୟତ ଥିବା ଦୁଇଜଣ ତରୁଣତରୁଣୀ ପ୍ରେମାଳାପରେ ବ୍ୟସ୍ତ । ପରସ୍ପର ପରସ୍ପରକୁ ବିଭିନ୍ନ ଭଙ୍ଗିରେ ମାୟା ଖୁଆଉ ଅଛନ୍ତି । ରାଜେନ୍ଦ୍ରଙ୍କ ଆଗ୍ରହ ବଢିଗଲା । ସେ ତାଙ୍କର ଶକ୍ତିଶାଳୀ କେମେରାରେ ସେମାନଙ୍କର ଫଟୋ ଲୁକ୍କାୟିତ ଅବସ୍ଥାରେ ନେଇଗଲେ ।ଏକଥା କାହାରିକୁ ଏପରିକି ରାଣୀଙ୍କୁ ମଧ କହିଲେ ନାହିଁ । ଘଟଣା ସଂପୂର୍ଣ୍ଣ ଗୋପନ ରହିଲା ।

ଦିନେ ରାଜ ପ୍ରାସାଦରେ ସମସ୍ତଙ୍କୁ ଜଣାଇ ଦେଲେ ଯେ ରାଜପ୍ରସାଦର ବୟସ୍କ ମାନଙ୍କୁ ମେଜିକ ଲଣ୍ଠନ ଦେଖାଯିବ । ସେତେବେଳେ ସିନେମା, ଟି.ଭି. କିମ୍ବା ଭିଡିଓ ପରି କୌଣସି ମନୋରଞ୍ଜନର ସାଧନ ବଲାଙ୍ଗିରେ ନଥିବାରୁ ତାହା ଦେଖିବା ପାଇଁ ଲାଳାୟିତ ହୋଇ ସବୁ ବୟସ୍କବ୍ୟକ୍ତି ଆସିଲେ । ଯଥା ସମୟରେ ମେଜିକ ଲଣ୍ଠନରେ ବିଭିନ୍ନ ଫଟୋଚିତ୍ର ସହ ଉକ୍ତ ପ୍ରେମୀ ଯୁବଳଙ୍କର ମଧ ଫଟୋ ଦେଖି ସମସ୍ତେ ସ୍ତମ୍ଭୀଭୁତ ହୋଇଗଲେ । ଉକ୍ତ ଯୁବକ ଯୁବତୀ ଲଜ୍ଜିତ ହେଲେ । ପରବର୍ତ୍ତୀ ସମୟରେ ରାଜେନ୍ଦ୍ର ରାଣୀଙ୍କୁ କହି ପ୍ରେମୀ ଯୁବକ ଯୁବତୀ ଦ୍ୱୟଙ୍କର ବିବାହ ର ବନ୍ଦୋବସ୍ତ କରାଇ ସମସ୍ତ ଖର୍ଚ୍ଚ ଦେଇ ପୁଣି ତାଙ୍କୁ ପୂର୍ବବତ୍ ରାଜସେବାରେ ନିଯୁକ୍ତ କଲେ ।







ସୁତରାଂ ପ୍ରତ୍ୟୁତ୍ପନ୍ନ ମତି ସମ୍ପନ୍ନ ବୁଦ୍ଧିମାନ, ମିଷ୍ଟଭାଷୀ, ସହିଷ୍ଣୁ, କ୍ଷମାଶୀଳ, ଚତୁର ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ବ୍ୟକ୍ତିତ୍ୱ ସ୍ୱତନ୍ତ୍ର କୋଶଳ ପ୍ରଦେଶ ଗଠନ କରିବାକୁ ଯଦିଓ ସଫଳକାମ ହୋଇପାରି ନଥିଲେ, ତଥାପି ସେ ଦିନ ପ୍ରେରଣା ଦେଉଥିଲା ନିଶ୍ଚୟ । ସେତେବେଳ ତାଙ୍କର ଦୂର ଦୃଷ୍ଟି ହେଉ ଅଥବା ଏ ଅଞ୍ଚଳ ପ୍ରତି ଅବହେଳାର ଅପଚେଷ୍ଟା ହେଉ କିମ୍ବା ଏ ଅଞ୍ଚଳର ଦୁର୍ଭାଗ୍ୟ ହେଉ କୋଶଳ ପ୍ରଦେଶ ଗଠନର ପ୍ରଥମ ପ୍ରୟାସ ସ୍ୱାଧୀନତା ପରେ ପରେ ବିଲୁପ୍ତ ହେଲା । ଜଣେ ରାଜା କିପରି ନିଜକୁ ଗଣତନ୍ତ୍ରର କଷଟି ପଥରରେ କଷିପାରେ, ରାଜେନ୍ଦ୍ର ନାରାୟଣ ସିଂହଦେଓ ବୋଧହୁଏ ତାହାରି ନମୁନା ନିଶ୍ଚୟ ।

*ସହାୟତା - ଶ୍ରୀ ଉଦୟନାଥ ଚନ୍ଦନ*



